# ଭଞ୍ଜ କବି

( ଐତିହାସିକ ନାଟକ )

ଶ୍ରୀ ଦେବେନ୍ଦ୍ର କୁମାର ସିଂହ, ବି. ଏ.

# ଭଞ୍ଜ କବି

( ଐତିହାସିକ ନାଟକ )

ଶ୍ରୀ ଦେବେନ୍ଦ୍ର କୁମାର ସିଂହ, ବି. ଏ.

ଲେଖିଛନ୍ତି—

ଶ୍ରୀ ଦେବେନ୍ଦ୍ର କୁମାର ସିଂହ, ବି. ଏ.

ପ୍ରକାଶ କରିଛନ୍ତି—

ଶ୍ରୀ ବ୍ରହ୍ମାନନ୍ଦ ପରିଡ଼ା

ଗ୍ରାମ—କଣ୍ଟିକଣା, ପୋ:—ରାମବାଗ । ଜି:—କଟକ

ଛାପିଛନ୍ତି—

ଶ୍ରୀ ତ୍ରିଲୋଚନ ଦାଶ, ଛାତ୍ରବନ୍ଧୁ ପ୍ରେସ,

କଟକ—୧

ପ୍ରଚ୍ଛଦପଟ—

ମେସାର୍ସ ହିନ୍ଦୁସ୍ଥାନ ଆର୍ଟ ଏନଗ୍ରେଭିଂକୋ,

୨୮, କୋରିସ ଚର୍ଚ୍ଚଲେନ୍, କଲିକତା—୯

ଏକମାତ୍ର ଷ୍ଟକିଷ୍ଟ—

ପୁସ୍ତକ ନିକେତନ, ଗଙ୍ଗାମନ୍ଦିର, କଟକ—୧

ପ୍ରଥମ ମୁଦ୍ରଣ—୧୯୫୦—୧୦୦୦

ଦ୍ୱିତୀୟ ମୁଦ୍ରଣ—୧୯୫୫—୧୦୦୦

— ଉତ୍ସର୍ଗ —

ଭଞ୍ଜଭୂମିର

କୁଲାଡ଼ ଦୁର୍ଗର ଭଗ୍ନ ପ୍ରାଚୀର ତଳେ

ଅଶ୍ରୁଢୋଳା

ଅର୍ଘ୍ୟ

ମୋର

— ଦେବେନ୍ଦ୍ର —

# ନିଜକଥା

**ନାଟକର ଜନ୍ମ ଇତିହାସ**—୧୯୪୭ ସାଲର ଜୁନମାସର ୨୮ ତାରିଖ ଦିନ, ଅବକାରୀ ସବ୍‌ଇନସ୍ପେକ୍ଟର ଭାବରେ, ରସଲକୁଣ୍ଡା ସହିତ ମୋର ପ୍ରଥମ ପରିଚୟ ଘଟିଥିଲା । ତାହା ପୂର୍ବରୁ ମୋର ଅନ୍ଧ ଧାରଣା ଥିଲା ଯେ ଘୁମୁସର ବୋଲି ଗୋଟାଏ ସ୍ୱତନ୍ତ୍ର ସ୍ଥାନ ଅଛି, ଯେଉଁଠାରେ କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ଜନ୍ମ ହୋଇଥିଲା । କିନ୍ତୁ ରସଲକୁଣ୍ଡାରେ କିଛିଦିନ ଅବସ୍ଥାନ କରିବା ପରେ ମୁଁ ଜାଣି ପାରିଲି ଯେ ରସଲକୁଣ୍ଡା ହିଁ ସମଗ୍ର ଘୁମୁସର ଇଲାକାର ଆଧୁନିକ ରାଜଧାନୀ ଓ ଆଧୁନିକ ରସଲକୁଣ୍ଡା ସବଡ଼ିଭିଜନ ହିଁ ପ୍ରାଚୀନ ଘୁମୁସର ରାଜ୍ୟ, ଯାହାକୁ ସମଗ୍ର ଓଡ଼ିଆଜାତି କହେ,—"ଭଞ୍ଜ ଭୂମି" । ଏହି ଭଞ୍ଜଭୂମି ଘୁମୁସର ରାଜ୍ୟର ପ୍ରାଚୀନ ରାଜଧାନୀର ନାମ—କୁଲାଡ଼ ।

କର୍ତ୍ତବ୍ୟର ତାଡ଼ନାରେ, ବିଭାଗୀୟ ମଦ ଦୋକାନ ତନଖି କରିବା ଉଦ୍ଦେଶ୍ୟରେ, ମୁଁ ଅବଶ୍ୟ ପ୍ରତିମାସ କୁଲାଡ଼ ଗ୍ରାମକୁ ଯାଉଥିଲି । କିନ୍ତୁ କୁଲାଡ଼ର କବିଜନଲୋଭନୀୟ ଅପୂର୍ବ ରୂପକୁ ପ୍ରଥମେ ଦର୍ଶନ କରିଥିଲି ଜୁଲାଇ ମାସରେ । ସ୍ଥାନଟି ରସଲକୁଣ୍ଡାଠାରୁ ମାତ୍ର ପାଞ୍ଚମାଇଲ ଦୂର । ଆଧୁନିକ କୁଲାଡ଼ ଗ୍ରାମଟିକୁ ଦେଖିଲେ, କେହି ବିଶ୍ୱାସ କରିବ ନାହିଁ ଯେ ଏହି କୁଲାଡ଼ ଦିନେ ଘୁମୁସରର ଭଞ୍ଜରାଜାମାନଙ୍କର ଲୀଳା ନିକେତନ ଥିଲା । ଓଡ଼ିଆ ଜାତିର ଅତୀତର କୀର୍ତ୍ତିରାଜି ଉପରେ ଧ୍ୱଂସ ଦେବତାଙ୍କର ଅପୂର୍ବ ଅନୁଗ୍ରହ ସବୁ ସ୍ଥାନରେ । ସୁତରାଂ କୁଲାଡ଼ ବା ବାଦ ଯା'ନ୍ତା କିପରି ?

ତଥାପି, କୁଲଡ଼ ଦୁର୍ଗର ଭଗ୍ନାବଶେଷ ଦେଖିବାକୁ ଆଶା ପୋଷଣ କରି, ଆଉ ଥରେ କୁଲଡ଼ ଗ୍ରାମକୁ ଯାଇ ଯାହା ଦେଖିଲି, ତାହା ଆଜ ସୁଦ୍ଧା ପାଶୋରି ପାରି ନାହିଁ । ପର୍ବତର ପାଦଦେଶରେ ଲତାଗୁଳ୍ମଆଚ୍ଛାଦିତ କୁଲଡ଼ ଦୁର୍ଗର ଭଗ୍ନାବଶେଷ ଦୂରରୁ ଅସ୍ପଷ୍ଟରୂପେ ଦେଖାଯାଉଥିଲା । ଯେଉଁ ୨।୩ ଜଣ ସ୍ଥାନୀୟ ଅଧିବାସୀ ମୋର ପଥ ପ୍ରଦର୍ଶକଭାବେ ମୋ ସହିତ ଯାଇଥିଲେ, ସେମାନଙ୍କଠାରୁ ଶୁଣିଲି ଯେ ସେହି ଭଗ୍ନାବଶେଷର ନିକଟକୁ ଯିବାର କୌଣସି ଉପାୟ ନାହିଁ, କାରଣ ତାହା ଜଙ୍ଗଲପରିପୂର୍ଣ୍ଣ ଓ କଣ୍ଟକାକୀର୍ଣ୍ଣ ଏବଂ ହୁଏତ ନାନା ଜୀବଜନ୍ତୁଙ୍କ ଉପସ୍ଥିତି ଯୋଗୁଁ ନାନା ବିପଦର ଆଶଙ୍କା ମଧ୍ୟ ଥାଇପାରେ । ଏ କଥା ଶୁଣି ମୋର ମନରେ ବଡ଼ ଦୁଃଖ ହେଲା । ଉତ୍କଳ—ଜାତିର ଏଡ଼େବଡ଼ ପ୍ରତିଭାଶାଳୀ କବିଙ୍କର ଜନ୍ମସ୍ଥାନ ଆଜ ଆମର ସାରସ୍ୱତ ତୀର୍ଥ ନ ହୋଇ, ହୋଇଛି ଶ୍ୱାପଦମାନଙ୍କର କ୍ରୀଡ଼ାସ୍ଥଳୀ ଏବଂ ସେ ସ୍ଥାନର ପୁଣ୍ୟପୂତ ଧୂଳିକୁ ନିଜର ମସ୍ତକରେ ଧାରଣ କରିବା ଲାଗି ଆମର ଶତଚେଷ୍ଟା ସୁଦ୍ଧା ବିଫଳ ହୋଇ ପଡ଼ିବ । ହାୟରେ ହତଭାଗ୍ୟ ଦେଶ । ଏହି ଯୁଗରେ Shakespeareଙ୍କର ଜନ୍ମସ୍ଥାନ ପୁଣି ସମଗ୍ର ଇଂରାଜ ଜାତିର ଜାତୀୟସମ୍ପତ୍ତି ରୂପେ ପୂଜା ପାଉଛି । ଅଥଚ ଆମ ଦେଶର ଇଂରାଜୀଶିକ୍ଷାଭିମାନୀ ଯୁବକ ବା ଦେଶନେତାଙ୍କର ଏହା ପ୍ରତି ଭ୍ରୂକ୍ଷେପ ନାହିଁ ।

ସୁତରାଂ ଅଶ୍ରୁପୂର୍ଣ୍ଣ ନେତ୍ରରେ, ସେହିଠାରେ ଦୂରରୁ ମୃତ୍ତିକା ଉପରେ ଭୂମିଷ୍ଠ ପ୍ରଣିପାତ କରି ଭଞ୍ଜ ନିକେତନର ମୃତପ୍ରାୟ ଧ୍ୱଂସାବଶେଷକୁ ମୋର କ୍ଷୀଣ ସମ୍ମାନ ମୁଁ ଜଣାଇ ଫେରି ଆସିଲି । ଫେରିବା ପଥରେ ଦେଖିଲି, ବିରାଟ ଜଗନ୍ନାଥ ମନ୍ଦିର । ନୀରବ, ନିର୍ଜନ । ହୁଏତ ଏହି ମନ୍ଦିର ପ୍ରାଙ୍ଗଣ ଉପରେ ଭଞ୍ଜ ରାଜାମାନେ ଥରେ ସ୍ୱଚ୍ଛନ୍ଦଭାବରେ ବିଚରଣ କରିଥିବେ । ଆଜ ସେ ସବୁର କଳ୍ପନା ସୁଦ୍ଧା ପ୍ରାଣକୁ ଦଂଶନ କରେ ମାତ୍ର । ଛ ମାସ କାଳ ରସଲକୁଣ୍ଡାରେ ଥିଲି ଓ ସେହି ସମୟ ମଧ୍ୟରେ ଘୁମୁସର ରାଜ୍ୟର ଅନେକ ଗ୍ରାମ ପରିଭ୍ରମଣ କରିବାକୁ ସୁଯୋଗ ମଧ୍ୟ ମୁଁ ପାଇଥିଲି । ଦେଖି ଆଶ୍ଚର୍ଯ୍ୟ ହେଲି ଯେ ପ୍ରାୟ ପ୍ରତ୍ୟେକ ଗ୍ରାମରେ ଶ୍ରେଷ୍ଠ ହେଉ ବା ବଡ ହେଉ, ଗୋଟିଏ ଗୋଟିଏ ଜଗନ୍ନାଥ ମନ୍ଦିର ରହିଛି । ସୁତରାଂ ନୀଳାଚଳର

ଜଗନ୍ନାଥ ଧର୍ମପ୍ରତି ଘୁମୁସର ରାଜବଂଶର କି ଐକାନ୍ତିକ ଅନୁରକ୍ତି ଥିଲା, ତାହା ଏହି ଘଟଣାରୁ ସ୍ପଷ୍ଟ ଅନୁମିତ ହୁଏ । ଏହି ବିଷୟଟିକୁ ମୁଁ ନାଟକରେ ଯଥାସ୍ଥାନରେ ସନ୍ନିବିଷ୍ଟ କରି ପାରିଛି ।

କୁଲଡ଼ ଜଗନ୍ନାଥ ମନ୍ଦିରର ଗଠନ ପ୍ରଣାଳୀ ଦେଖିଲେ, ତାହା ପୁରୀ ଜଗନ୍ନାଥ ମନ୍ଦିରର ଗୋଟିଏ କ୍ଷୁଦ୍ର ସଂସ୍କରଣ ପରି ମନେ ହୁଏ । ଜଗନ୍ନାଥ ମନ୍ଦିରର ବାମ ପାର୍ଶ୍ୱରେ ଗୋଟିଏ କ୍ଷୁଦ୍ର ମନ୍ଦିର । ତାହାକୁ ଏଠାର ଲୋକେ କହନ୍ତି - ବାଘଦେବୀଙ୍କର ମନ୍ଦିର । ମୋର କାହିଁକି ମନେ ହେଲା, ଏହା ପ୍ରକୃତରେ ବାଗ୍‌ଦେବୀ ମନ୍ଦିର, ଯେଉଁଠାରେ ହୁଏତ ଧନେ କବି ସମ୍ରାଟଙ୍କର ସାହିତ୍ୟ ସାଧନାର ପ୍ରଥମ ଆରମ୍ଭ ହୋଇଥିଲା । କାଳକ୍ରମେ, କର୍ପୂର ଯାଇ କନା ପଡ଼ିଥିଲା ପରି, ଭଞ୍ଜବଂଶର ବାଗ୍‌ଦେବୀ ହୁଏ ତ ଲୋକ ମୁଖରେ ପ୍ରଚଳିତ ହୋଇଛନ୍ତି ବ୍ୟାଘ୍ରଦେବୀରୂପେ । ଯାହା ଦେଖିଲି, ସ୍ଥାନୀୟ ଲୋକେ, ଏହି ସିନ୍ଦୂରଚର୍ଚ୍ଚିତ ମୂର୍ତ୍ତିକୁ ବାଗ୍‌ଦେବୀରୂପେ ମାନିବାକୁ ଏକାବେଳେକେ ନାରାଜ ।

ତାହାପରେ, ସେହି ମନ୍ଦିରର କିଛି ଦୂରରେ ଉଚ୍ଚପର୍ବତର ଦେହରେ ଆଉ ଗୋଟିଏ ମନ୍ଦିର ଥିବାର ମୋର ସଙ୍ଗୀମାନେ ମୋତେ ଜଣାଇଲେ ଓ ସେହି ମନ୍ଦିରହିଁ ପ୍ରକୃତରେ ବାଗ୍‌ଦେବୀଙ୍କର ମନ୍ଦିର ବୋଲି ସେମାନଙ୍କର ମତ । ଅଗତ୍ୟା ତାହାହିଁ ବିଶ୍ୱାସ କଲି । ସେ ମନ୍ଦିର ନିକଟକୁ ଯିବାକୁ ହେଲେ ପର୍ବତ ଆରୋହଣ କରିବାକୁ ପଡ଼ିବ ବୋଲି ମୁଁ ସେ ସ୍ଥାନକୁ ଯାଇ ପାରି ନାହିଁ । କିନ୍ତୁ ମୋଟରବସ୍‌ରେ ବସି ରସଲକୁଣ୍ଡା ଫେରି ଗଲାବେଳେ, ପର୍ବତର ମଧ୍ୟଦେଶରେ ଥିବା ସେହି ମନ୍ଦିରଟିକୁ ଦୂରରୁ ଦେଖି ପାରି ମୋର ନୀରବ ନମସ୍କାର ମାତ୍ର ଜଣାଇ ଥିଲି ।

ମୋଟ ଉପରେ କୁଲଡ଼ ଗ୍ରାମଟିର ଚତୁର୍ଦ୍ଦିଗସ୍ଥ ପ୍ରାକୃତିକ ଦୃଶ୍ୟ ଏତେ ରମଣୀୟ ଯେ ତାହା କ୍ଷଣକାଳ ଲାଗି ମୋ ପରି ଅକବିକୁ ମଧ୍ୟ କବିରେ ପରିଣତ କରି ଦେଇଥିଲା । ଗ୍ରାମର ଏକ ପାର୍ଶ୍ୱରେ ପର୍ବତମାଳା ଓ ଅପର ପାର୍ଶ୍ୱରେ କ୍ଷୁଦ୍ର ନଦୀଟିଏ । ଗ୍ରାମର ଗଠନ ପ୍ରଣାଳୀରେ ଏକ

ପ୍ରକାର ଆଭିଜାତ୍ୟ ଥିଲାପରି ବୋଧହୁଏ । ଜଗନ୍ନାଥ ମନ୍ଦିର ସମ୍ମୁଖରେ ବିରାଟ ବଡ଼ଦାଣ୍ଡ ପରି ଖୁବ୍ ଓସାରିଆ ରାସ୍ତାର ଦୁଇ କଡ଼ରେ ଧାଡ଼ିବନ୍ଧା ହୋଇଥିବା ଗୃହଗୁଡ଼ିକୁ ଦେଖିଲେ, ଗଡ଼ଜାତ ରାଜାମାନଙ୍କର ଗଡ଼ କଥା ମନେ ପଡ଼ିଯାଏ । ଅବଶ୍ୟ ଗ୍ରାମର ଅଧିବାସୀବର୍ଗ ମଧ୍ୟବିତ୍ତ ଓ ଦରିଦ୍ର ଓ ଘରଗୁଡ଼ିକ ସେହିପରି ଆଧୁନିକ ଧରଣରେ ତିଆରି । ପ୍ରାଚୀନ ଐଶ୍ୱର୍ଯ୍ୟର କିଛି ମାତ୍ର ଚିହ୍ନ ନାହିଁ । ଏହି କୁଲଡ଼ ଗ୍ରାମରେ ଥିଲା, ସୁବିଖ୍ୟାତ କୁଲଡ଼ ଦୁର୍ଗ । ଏହି ଗ୍ରାମର ରାଜପଥ କେତେଥର ହୁଏତ କୁଲଡ଼ ସୈନ୍ୟବାହିନୀର ସମ୍ମିଳିତ ପଦଭାରରେ କମ୍ପି ଉଠିଥିବ । ଏହି ଗ୍ରାମର ବାୟୁସ୍ତର ଉପରେ ହୁଏତ ଦିନେ ବୈଦେହୀଶ ବିଳାସର ପ୍ରଥମ ଝଙ୍କାର ଖେଳି ବୁଲିଥିବ । କିନ୍ତୁ ଆଜି ଆଉ ସେ ସବୁ କିଛି ନାହିଁ । ଅତୀତ ଗୌରବର ମୂକସାକ୍ଷୀରୂପେ କେବଳ ଠିଆ ହୋଇ ରହିଛି ବିରାଟ ଜଗନ୍ନାଥ ମନ୍ଦିରଟି, ଆଉ ଅରଣ୍ୟ ପରିବେଷ୍ଟିତ ଭଗ୍ନ ରାଜବାଟୀର ଇତସ୍ତତଃ ବିକ୍ଷିପ୍ତ ପ୍ରସ୍ତରଖଣ୍ଡ । ସମସ୍ତେ କିନ୍ତୁ ଧ୍ୱଂସାଭିମୁଖୀ ।

ଏହିପରି ଭାବରେ ଉପେନ୍ଦ୍ରଙ୍କ ଜନ୍ମସ୍ଥାନ କୁଲଡ଼ ସହିତ ନିଜକୁ ଟିକିଏ ପରିଚିତ କରାଇ ପାରିଥିଲି । ହଠାତ୍ ଦିନେ, ସେହି ୧୯୪୭ ସାଲର ଅକ୍ଟୋବର ମାସର ୨୮ ତାରିଖରେ ରସଲକୁଣ୍ଡାର ଭଞ୍ଜପ୍ରେମୀ ଯୁବକମାନଙ୍କ ଯତ୍ନରେ ଗଠିତ ଭଞ୍ଜ ସାହିତ୍ୟ ପରିଷଦର ଗୋଟାଏ ଅଧିବେଶନରେ ଯୋଗ ଦେବାକୁ ସାଦର ନିମନ୍ତ୍ରଣ ପାଇଥିଲି । ସେହି ସୁଯୋଗରେ ପରିଷଦ ଆଗରେ ମୁଁ ଗୋଟିଏ ପ୍ରସ୍ତାବ ଆଣିଥିଲି ଯେ ଉପେନ୍ଦ୍ରଙ୍କ ଜନ୍ମସ୍ଥାନରେ ଗୋଟିଏ କ୍ଷୁଦ୍ର ସ୍ମୃତି ମନ୍ଦିରର ନିର୍ମାଣ କରାଯିବାର ପ୍ରଚେଷ୍ଟା ହେଉ । ସମସ୍ତ ସଭ୍ୟ ମୋର ପ୍ରସ୍ତାବକୁ ଅନୁମୋଦନ କଲେ ଓ ପ୍ରସ୍ତାବଟି ଗୃହୀତ ହୋଇଗଲା । କିନ୍ତୁ ପରକ୍ଷଣରେ ମୋର ବନ୍ଧୁ ଓ ପରିଷଦର ସମ୍ପାଦକ ଶ୍ରୀ ମାଗୁଣି ଦାସ, ମୋ ଉପରେ ଗୋଟାଏ ଗୁରୁ ଦାୟିତ୍ୱ ଲଦି ଦେଇ ଗୋଟାଏ ପ୍ରସ୍ତାବ ପରିଷଦରେ ପାଶ କରାଇ ନେଲେ । ସେ ପ୍ରସ୍ତାବ ଆଉ କିଛି ନୁହେଁ,—ଉପେନ୍ଦ୍ରଭଞ୍ଜଙ୍କ ବିଷୟରେ ଗୋଟିଏ ନାଟକ ଲେଖିଦେବା ଲାଗି ମୋତେ ଭାର ଦିଆଗଲା । ମୁଁ ପ୍ରଥମରେ ବିସ୍ମିତ ହୋଇ ପଡ଼ିଲି । କିନ୍ତୁ ମୋର ବହୁଦିନର ପରିଚିତ ଘନିଷ୍ଠ ବନ୍ଧୁ ଓ ରସଲକୁଣ୍ଡାର ବିଶିଷ୍ଟ

ନାଟକ ଶ୍ରୀ ବୀର ଲକ୍ଷ୍ମଣ ଦାସଙ୍କର ଯୁକ୍ତ ଓ ସସ୍ନେହ ଅନୁରୋଧକୁ ଏଡ଼ି ପାରିବାର ଶକ୍ତି ବା ସାମର୍ଥ୍ୟ ମୋର ହେଲା ନାହିଁ ।

ସୁତରାଂ, ନାଟକ ଲେଖିବାର ଦାୟିତ୍ୱ ଗ୍ରହଣ କରିବାକୁ ହିଁ ଭରିଲି । କିନ୍ତୁ ମୁଁ ପରିଷଦ ଆଗରେ ଜଣାଇ ଦେଲି ଯେ ମୋତେ ଉପେନ୍ଦ୍ରଙ୍କ ବିଷୟରେ ଯାବତୀୟ ଐତିହାସିକ ଉପାଦାନ ଓ କିମ୍ବଦନ୍ତୀ ଆଦି ଯୋଗାଇ ଦିଆଯାଉ । ସଙ୍ଗେ ସଙ୍ଗେ ମାଗୁଣି ବାବୁ ସେ ଦାୟିତ୍ୱ ଗ୍ରହଣ କରି ମୋତେ ଯଥେଷ୍ଟ ସାହସ ଦେଲେ । କଥା ହେଲା ଯେ, ମୁଁ ନାଟକ ଲେଖିଲାବେଳେ, ପରିଷଦ ଆଗରେ ଥରକୁଥର ତାହା ଶୁଣାଇ, ସଭ୍ୟମାନଙ୍କର ମତାମତ ଓ ଆଲୋଚନାକୁ ଗ୍ରହଣ କରି ଆବଶ୍ୟକୀୟ ସଂଶୋଧନ ଓ ପରିବର୍ତ୍ତନ କରୁଥିବି ।

ଏହିପରି କିଛିଦିନ ଚାଲିଗଲା । ମୋର ଅନୁରୋଧକ୍ରମେ ମାଗୁଣିବାବୁ ମୋତେ ନିମ୍ନଲିଖିତ ବହି କେତେଖଣ୍ଡି ଆଣି ପଢ଼ିବାକୁ ଦେଲେ ଓ ତହିଁରୁ ମୋର ଆବଶ୍ୟକୀୟ କଥାବସ୍ତୁ ଆହରଣ କରିବା ଲାଗି ମୋତେ ମଧ୍ୟ କହିଲେ ।

ଘୁମୁସର ଇତିହାସ—ତାରିଣୀଚରଣ ରଥ କୃତ ।
ଲାବଣ୍ୟବତୀ କାବ୍ୟ ଓ ତାର ବିରାଟ ମୁଖବନ୍ଧ—ମୋର ଗୁରୁ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି ସଂପାଦିତ ।
ଘୁମୁସର କାବ୍ୟ—ଶ୍ରୀ ଚିନ୍ତାମଣି ମହାନ୍ତି ବିରଚିତ ।
ଧନଞ୍ଜୟ ଭଞ୍ଜ ରଚିତ—ଦୁଇଖଣ୍ଡି କାବ୍ୟ ।

ଏଗୁଡ଼ିକ ପଢ଼ି, ତହିଁରୁ ମୋର ଆବଶ୍ୟକୀୟ ଐତିହାସିକ କଥାବସ୍ତୁ ଗୁଡ଼ିକ ମୋର ନୋଟ୍ ବହିରେ ଟିପିନେଲି । ଏହା ଛଡ଼ା, ଅନ୍ୟ କେତେ ଗୁଡ଼ିଏ ପ୍ରବାଦ, ଜନଶ୍ରୁତି ଓ କିମ୍ବଦନ୍ତୀ ମଧ୍ୟ ବନ୍ଧୁ ମାଗୁଣି ବାବୁ ମୋତେ ଯୋଗାଡ଼ ଦେଲେ ।

ଏତିକ କାମ ସରିଛି, ଏହି ସମୟରେ ଡିସେମ୍ବର ୧୯୪୭ରେ ମୋର ବଦଳି ହେଲା ଛତ୍ରପୁରକୁ । ସେଠାରେ ଅତ୍ୟଧିକ କଷ୍ଟାଳ ଯୋଗୁଁ, ଏ

ସବୁ ବିଷୟରେ ଧୀରଭାବରେ କୌଣସି ଚିନ୍ତା କରିବାର ଅବସର ମୁଁ ପ୍ରକୃତରେ ପାଇ ନ ଥିଲି । ବହୁତ ଚେଷ୍ଟା କରିଥିଲି ଟିକିଏ ସମୟ ପାଇବାକୁ କିନ୍ତୁ ପରେ ଦେଖିଲି ଯେ ମୋର ସମୟ ଉପରେ ମୋର କୌଣସି ଆଧିପତ୍ୟ ନାହିଁ । ଏହିପରି ଅବସ୍ଥାର ଗଡ଼ସ୍ରୋତରେ ନିଜକୁ ଭସାଇ ନେଉଥିଲି ୧୯୪୮ ସାଲ ମାର୍ଚ୍ଚ ମାସ ୬୧ ତାରିଖ ପର୍ଯ୍ୟନ୍ତ, ଯେଉଁ ଦିନ ହଠାତ୍ ମୋର ସମ୍ବଲପୁର ଜିଲାର ଖରିଆର ରୋଡ଼କୁ ବଦଳି ହୁକୁମ ହେଲା । ଆଦେଶ ଥିଲା, ୧୯୪୮ ଅପ୍ରେଲ ୧ ତାରିଖ ଦିନ ସେଠାରେ କାର୍ଯ୍ୟଭାର ଗ୍ରହଣ କରିବାକୁ ହେବ । ସୁତରାଂ ମୋର ପ୍ରିୟ ଗଞ୍ଜାମ ଜିଲା, ବିଶେଷତଃ କବି ଉପେନ୍ଦ୍ରଙ୍କ ଗଞ୍ଜାମ ଜିଲାକୁ ମୁଁ ଛାଡ଼ିଲି ୧୯୪୮ ମାର୍ଚ୍ଚ ମାସ ୬୯ ତାରିଖ ରାତିରେ ।

୧୯୪୮ ଅପ୍ରେଲ ପହିଲାରେ ଖରିଆର ରୋଡ଼ରେ କାର୍ଯ୍ୟରେ ଯୋଗ ଦେଲି । ସେଠାରେ ଗସ୍ତ କରିବା କାମ ମୋର ନ ଥିଲା । ମଦ Ware house ରେ ମଦ ଭିଆରି କରି ପଟ୍ଟାଦାରମାନଙ୍କୁ ଯୋଗାଇବା ମାତ୍ର ମୋର କାମ । ସୁତରାଂ ସେତିକ କାମ କରିସାରିଲା ପରେ ମୋତେ ପ୍ରଚୁର ସମୟ ମିଳୁଥିଲା ଅବସରରୂପେ ।

ଏହି ଖରିଆର ରୋଡ଼—ଗୋଟିଏ ବାଣିଜ୍ୟ ବ୍ୟବସାୟର କେନ୍ଦ୍ରସ୍ଥଳୀ ହୋଇ ସୁଦ୍ଧା, ମୋ ପକ୍ଷରେ ହୋଇ ପଡ଼ିଥିଲା ଗୋଟାଏ ନିର୍ଜନ ପ୍ରାନ୍ତର । ସ୍ଥାନୀୟ ଅଧିବାସୀମାନେ ଅଧିକାଂଶ ପ୍ରାୟ ବିଦେଶୀ ମାରୱାଡ଼ି, କଚ୍ଛି ଓ ପଞ୍ଜାବୀ । ଓଡ଼ିଆ ଭାଷା ସହିତ ତାଙ୍କର ସମ୍ପର୍କ ନ ଥାଏ । ସୁତରାଂ ସେମାନଙ୍କ ସହିତ ପରିଚୟ କରିବାକୁ ମୋର ଆଗ୍ରହ ବା ଆକାଙ୍କ୍ଷା ମୋଟେ ନ ଥିଲା । ଜିଲାର ପ୍ରଧାନ ସହର ସମ୍ବଲପୁର, ସେ ସ୍ଥାନରୁ ୧୬୬ ମାଇଲ । ସୁତରାଂ ଖରିଆର ରୋଡ଼ ସମ୍ବଲପୁର ଜିଲା ମଧ୍ୟରେ ଗୋଟାଏ ଅଂଶ ହୋଇ ସୁଦ୍ଧା, (ବର୍ତ୍ତମାନ କଳାହାଣ୍ଡି ଜିଲା) କେବଳ ଦୂରତ୍ୱ ଯୋଗୁଁ ଓଡ଼ିଆ ସଭ୍ୟତାର ଅଂଶ ଆଜିପର୍ଯ୍ୟନ୍ତ ପୁରାପୁରି ରୂପେ ଗ୍ରହଣ କରିପାରି ନାହିଁ ।

ଏହିପରି ସେହି ଖରିଆର ରୋଡ଼ରେ ଅପ୍ରେଲ, ମେ, ଜୁନ ଓ ଜୁଲାଇ ଚାରିମାସ କଟିଗଲା । ହଠାତ୍ ଅଗଷ୍ଟ ମାସର ପ୍ରଥମ ସପ୍ତାହରେ ମୋର

ଗୋଟାଏ ଖିଆଲ ଉଠିଲା ଯେ ଉପେନ୍ଦ୍ର ଭଞ୍ଜ ନାଟକ ଲେଖା ଆରମ୍ଭ କରିବି। ନାନା କଳ୍ପନା ଜଳ୍ପନାର ମଧ୍ୟ ଦେଇ, ୨୭।୮।୪୮ ତାରିଖର ଗୋଟାଏ ଅଳସ ଅପରାହ୍ଣରେ ନାଟକର ଗୋଟାଏ କଙ୍କାଳ ଗଢ଼ି ବସିଲି, ମୋର ନୋଟ ବହିର ସାହାଯ୍ୟରେ। ତହିଁ ପରଦିନ, ଅର୍ଥାତ୍ ୨୭।୮।୪୮ ତାରିଖ ଦିନ ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ। ସୁତରାଂ ସେହି ଦିନ ଗୋଟାଏ ଶୁଭ ଦିବସ ଭାବି, ନାଟକର ପ୍ରସ୍ତାବନାଟିକୁ ଏକ ନିଶ୍ବାସରେ ଲେଖି ପକାଇ, ପ୍ରଥମ ଅଙ୍କର କିଛିଦୂର ରଚନା ମଧ୍ୟ କରି ପକାଇଲି। ସେହି ଦିନଠାରୁ ଧାରାବାହିକ ରଚନାର ଗତି ଗ୍ଭଲିଲା।

ସେପ୍ଟେମ୍ବର ମାସ ୮।୯ ତାରିଖ ବେଳକୁ ପ୍ରଥମ ଅଙ୍କଟି ଶେଷ ହୋଇଗଲା। ଏହି ସମୟରେ ରସଲକୁଣ୍ଡା ଯିବା ଲାଗି ମୋତେ ସରକାରୀ ସମନ ମିଳିଲା। ମୁଁ ରସଲକୁଣ୍ଡାରେ ଥିବା ସମୟରେ କେତୋଟି ଅବକାରୀ ମୋକଦ୍ଦମା ଧରିଥିଲି ଓ ତାର ବିଚାର ଶେଷ ହୋଇ ନ ଥିଲା। ତେଣୁ ସେହି ସମ୍ପର୍କରେ ସାକ୍ଷ ଦେବା ଲାଗି ମୋତେ ରସଲକୁଣ୍ଡାରେ ହାଜର ହେବାକୁ ପଡ଼ିଲା, ଏ ସୁଯୋଗ ମୁଁ ଅବହେଳା କରିପାରିଲି ନାହିଁ। ସୁତରାଂ ସେପ୍ଟେମ୍ବର ୧୫ ତାରିଖରେ ଭଞ୍ଜ ସାହିତ୍ୟ ପରିଷଦ ଆଗରେ ମୋର ପ୍ରଥମ ଅଙ୍କ ପଢ଼ି ଶୁଣାଇବାକୁ ସୁବିଧା କରି ଦେବାକୁ ମୁଁ ଆଗରୁ ବନ୍ଧୁ ମାଗୁଣିବାବୁଙ୍କ ପାଖକୁ ଚିଠି ଲେଖିଲି।

ମାଗୁଣିବାବୁ ମୋର ଚିଠି ଅନୁସାରେ ପରିଷଦର ଅଧିବେଶନ ଡକାଇ ଥିଲେ। ମୁଁ କଚେରୀରୁ ସାକ୍ଷୀ ଦେଇ ସାରି ଆସି ସନ୍ଧ୍ୟାରେ ନାଟକଟିର ପ୍ରସ୍ତାବନା ଓ ପ୍ରଥମ ଅଙ୍କକୁ ସଭ୍ୟମାନଙ୍କ ଆଗରେ ପଢ଼ି ଶୁଣାଇ ସେମାନଙ୍କର ମତାମତ ଲୋଡ଼ିଲି। ନାଟକର ସମଗ୍ର ଯୋଜନାର ଗୋଟାଏ ମୋଟାମୋଟି ବିବରଣ ମଧ୍ୟ ସେଠାରେ ଜଣାଇ ଦେଲି। ସମସ୍ତ ସଭ୍ୟ ମୋର ରଚିତ ଅଂଶଗୁଡ଼ିକ ଶୁଣି ମୋତେ ଅଜସ୍ର ଧନ୍ୟବାଦ ଦେଲେ ଓ ମୋର ବନ୍ଧୁ ସୁଅଭିନେତା ଶ୍ରୀର ଲକ୍ଷ୍ମଣବାବୁ ମୋତେ ବିଶେଷ ଉତ୍ସାହିତ କରି ଗୋଟିଏ ଦୁଇଟି ମୂଲ୍ୟବାନ୍ ଉପଦେଶ ଦେଲେ, ଯାହା ଫଳରେ ନାଟକର କଙ୍କାଳକୁ ମୋତେ ପୁଣି ନୂତନ ରକମର ଖଞ୍ଜିବାକୁ

ପଡ଼ିଲା । ଅଭିନେତା ହିସାବରେ ଓ ପ୍ରକୃତ ସହାନୁଭୂତି ପୂର୍ଣ୍ଣ ହୃଦୟରେ ଦେଇଥିବା ତାଙ୍କର ଉପଦେଶ ନ ମାନିଥିଲେ, ବୋଧହୁଏ ନାଟକଟିର ଗୁରୁତର ଅଙ୍ଗହାନି ହୋଇଥାନ୍ତା । ଏହା ମୁଁ ଆଜ ବୁଝୁଛି । ଅବଶ୍ୟ ତାଙ୍କର ଉପଦେଶକୁ ମୁଁ କେତେଦୂର କାର୍ଯ୍ୟରେ ସଫଳ କରାଇ ପାରିଛି, ତାର ବିଚାର ଆଜି, ନାଟକ ଶେଷ କରିସାରି, ମୁଁ ତାଙ୍କ ଉପରେ ଛାଡ଼ି ଦେଉଛି ।

ତାର ପରଦିନ ସକାଳୁ ମୁଁ ରସଲକୁଣ୍ଡା ଛାଡ଼ି, ଖରିଆର ଗ୍ରୋଡ଼ ଉଦ୍ଦେଶ୍ୟରେ ବାହାରି ପଡ଼ିଲି ଓ ଦ୍ୱିଗୁଣ ଉତ୍ସାହରେ ରଚନା କାର୍ଯ୍ୟରେ ଲାଗିପଡ଼ିଲି । ମୋତେ ଉତ୍ସାହ ଦେବା କାର୍ଯ୍ୟରେ ମାଗୁଣିବାବୁ ଯାହା ସବୁ କରିଛନ୍ତି, ତାହା ମୁଁ ଭୁଲିପାରିବି ନାହିଁ । ରସଲକୁଣ୍ଡାରୁ ଫେରି ଆସିବା ପରେ, ମାଗୁଣିବାବୁ ୨୧।୧।୬୮ ତାରିଖରେ ଖଣ୍ଡେ ଚିଠି ଦେଇଥିଲେ । ତହିଁରେ ଗୋଟିଏ ଜାଗାରେ ଲେଖିଥିଲା, "ଯେ ହେଲେ ମୋତେ ପଚାରୁଛନ୍ତି, ପୂରା ନାଟକ କେବେ ଶେଷ ହେବ ଓ ଫେରି ସେ ବାବୁ କେବେ ଆସିବେ । ବାସ୍ତବିକ, ଇତିହାସରୁ ଉଠିଲେ ନ ଖସି ବାସ୍ତବ କଥାକୁ ନାଟକାକାରରେ ଦେଖାଇବା କମ ସାହସର କଥା ନୁହେଁ । ଆପଣଙ୍କର ସାହସକୁ ଧନ୍ୟବାଦ ନ ଦେଇ ରହିପାରୁ ନାହୁଁ × × × । ଆପଣଙ୍କର କାର୍ଯ୍ୟ ଶୀଘ୍ର ଶେଷ ହେଉ, ଭଗବାନଙ୍କ ନିକଟରେ ଏହି ନିବେଦନ ।" ଏହିପରି ପ୍ରାୟ ୩୦।୪୦ ଖଣ୍ଡି ଚିଠି ସେ ମୋ ପାଖକୁ ଦେଇଛନ୍ତି । ନାଟକ ସମ୍ବନ୍ଧରେ ଅନ୍ୟାନ୍ୟ ବର୍ଣ୍ଣିଥିବା ଆଲୋଚନା ସହିତ ମୋତେ ଉତ୍ସାହ, ପ୍ରେରଣା ଓ ପ୍ରଶଂସା ଦେବାରେ ସେ ଦାମୀ କର୍ତ୍ତୃଙ୍କଠାରୁ ମଧ୍ୟ ବଳି ପଡ଼ିଛନ୍ତି । ସୁତରାଂ ତାଙ୍କର ସେ ସବୁ ଚିଠି ପଢ଼ି, ମୋର ସାହସ ଦ୍ୱିଗୁଣ ଭାବରେ ବଢ଼ିଯାଏ । ତାଙ୍କ ମନରେ ଯେତେବେଳେ ଯେଉଁ କଥା ବା କମ୍ବଦନ୍ତୀର ଉଦୟ ହୋଇଛି, ସେ ତତ୍‌କ୍ଷଣାତ୍ ତାହା ମୋତେ ଚିଠି ଲେଖି ଜଣାଇଛନ୍ତି । ମୁଁ ତାହା ମଧ୍ୟରୁ ବାଛି ବଛାଇ, ମୋର ଦରକାରୀ ଉପାଦାନ ସବୁ ନେଇ ନାଟକରେ ସ୍ଥାନ ଦେଇଛି । ନାଟକର "କଥାବସ୍ତୁ" ପର୍ଯ୍ୟାୟରେ ମୁଁ ଏ ବିଷୟରେ ବିସ୍ତୃତ ଆଲୋଚନା କରିବି ।

ନାଟକ ଲେଖିବାରେ ଆଉଜଣେ ବିଶିଷ୍ଟ ପଣ୍ଡିତ ମୋତେ ବହୁ ସମ୍ବାଦ ଯୋଗାଇ ଯଥେଷ୍ଟ ଉତ୍ସାହିତ କରିଅଛନ୍ତି । ତାଙ୍କର ନାମ ପଣ୍ଡିତ ଶ୍ରୀ ନୀଳକଣ୍ଠ ରଥ । ସେ ସପ୍ତକାନୁପ୍ରାସରେ ଭଞ୍ଜଙ୍କର ବୈଦେଶ୍ବିଶ ବିଳାସ ଶୈଳୀ ଅନୁକରଣ ପୂର୍ବକ ଯେଉଁ ସୀତାପ୍ରେମ ତରଙ୍ଗିଣୀ କାବ୍ୟ ରଚନା କରିଥିଲେ, ତାହା କଳାହାଣ୍ଡିର ବ୍ରଜମୋହନ ସାହିତ୍ୟ ସମିତିର କାବ୍ୟ-ପ୍ରତଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରିଛି ଓ ସେ ଯୋଗୁଁ ସେ ପୁରସ୍କାର ପାଇଛନ୍ତି ଟ୧୦୦୦୨ । ସେ ଭଞ୍ଜ କବିଙ୍କର ଏକପ୍ରକାର ପରଶିଷ୍ୟ ଓ ଭଞ୍ଜଙ୍କ ବିଷୟରେ ଅନେକ ବିବରଣୀ କମ୍ବଦନ୍ତୀ ଓ ଇତିହାସ ସେ ମୋତେ ଯୋଗାଇ ଦେଇଛନ୍ତି । ଏ ସଂପର୍କରେ ତାଙ୍କର ଲମ୍ବା ଲମ୍ବା ଚିଠିଗୁଡ଼ିକ ମତେ ବହୁତ ପ୍ରେରଣା ଦେଇଛି । ସେ ନିଜେ ଜଣେ ସଚ୍ଚା ଭଞ୍ଜପ୍ରେମୀ ସାହିତ୍ୟିକ । କାବ୍ୟ, ନାଟକ, ଉପନ୍ୟାସ, ମୂଲ୍ୟବାନ ଅଭିଧାନ ଇତ୍ୟାଦି ମିଶାଇ ତାଙ୍କର ସମସ୍ତ ପ୍ରକାଶିତ ଅପ୍ରକାଶିତ ରଚନାର ସଂଖ୍ୟା ପ୍ରାୟ ଶତାଧିକ । ଅଥଚ ଦେଶର ଚରମ ଦୁର୍ଭାଗ୍ୟ ଯେ ଏ ଶ୍ରେଣୀର ଉଚ୍ଚ କୋଟିର ଲେଖକ ଆଜି ଗୋଟିଏ ପୁସ୍ତକ ଦୋକାନରେ ଚାକିରୀ କରି ତାଙ୍କର ଜୀବିକା ଅର୍ଜ୍ଜନ କରୁଛନ୍ତି । ତାଙ୍କ ସହିତ ଆଗରୁ ମୋର ସାଧାରଣ ପରିଚୟ ହୋଇଥିଲା ବ୍ରହ୍ମପୁରଠାରେ । ପ୍ରାଚୀନ ସାହିତ୍ୟ ପ୍ରତି ତାଙ୍କର ମମତା ଅଛି, କେବଳ ଏହି ବିଶ୍ୱାସରେ ଭଞ୍ଜଙ୍କ ବିଷୟରେ କିଛି ବିବରଣୀ ମୁଁ ତାଙ୍କଠାରୁ ଚାହିଁଥିଲି, କିନ୍ତୁ ମୁଁ ତାଙ୍କଠାରୁ ଅନେକ କିଛି ଆଦାୟ କରି ସାରିଲା ପରେ ଜାଣିଲି ଯେ ସେ ଅତି ପ୍ରତିଭାଶାଳୀ ସାହିତ୍ୟିକ ।' ତାଙ୍କର ସରଳ ଓ ଅନାଡ଼ମ୍ବର ଜୀବନଯାପନ ପ୍ରଣାଳୀ ଓ ତାଙ୍କର ଅତି ସାଧାରଣ ବେଶଭୂଷାରୁ, ତାଙ୍କୁ କେହି ମନେ କରିବ ନାହିଁ ଯେ ସେ ଜଣେ ଏଡ଼େ ବଡ଼ ପଣ୍ଡିତ ଓ ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ଦାନ ଏତେ ମୂଲ୍ୟବାନ ।

ଏହିପରି ନାନା ଉତ୍ସାହ ମଧ୍ୟରେ, ନାଟକ ଲେଖା ଚାଲିଥିବା ବେଳେ, ଭଞ୍ଜଙ୍କର ପ୍ରକାଶିତ କାବ୍ୟ କବିତାଗୁଡ଼ିକର ବିଶେଷ ଦରକାର ପଡ଼ିଥିଲା । ଏ ସମ୍ପର୍କରେ ମୁଁ ମାଗୁଣି ବାବୁଙ୍କୁ ଅତି ବ୍ୟତିବ୍ୟସ୍ତ କରି ପକାଇଥିଲି । ସେ ମଧ୍ୟ ମୋର ସମସ୍ତ ଅନୁରୋଧ ରକ୍ଷା କରି, ବରାବର

ସାମାନ୍ୟ ଲକ୍ଷଣ ମାତ୍ର ପ୍ରକାଶ ନ କରି, ଅଚିରାତ୍ କରି- ତ୍ରଣାଥର ରେଜିଷ୍ଟ୍ରାର୍ଡ ପାର୍ଶଲ ଦ୍ୱାରା ମୋର ପଠାଇଥିବା ୬୨ ଖଣ୍ଡି ପୁସ୍ତକ, ପରିଷଦର କାଉନ୍ସେଲରୁ ପଠାଇ, ଅନେକ ଅବାଞ୍ଛିତ ଅସୁବିଧାରୁ ମୋତେ ମୁକ୍ତ ଦେଇ ପାରିଛନ୍ତି ।

ସମସ୍ତ ବନ୍ଧୁଙ୍କର ଏହିପରି ଅପରିସୀମ ସ୍ନେହ, ଦୟା, ସହାନୁଭୂତି ଓ ଉତ୍ସାହ ଲାଭକରି କଣଆର ସ୍ରୋତରେ ଅକ୍ଟୋବର ମାସ ମଧ୍ୟରେ ନାଟକର ୪ର୍ଥ ଅଙ୍କ ଶେଷ ହେଲା । ଅକ୍ଟୋବର ୩୦ ତାରିଖ ଦିନ ହଠାତ୍ ହୁକୁମ ଆସିଲା ଯେ ମୋର ପଦୋନ୍ନତି ହେଲା ଓ ମୋତେ ସର୍କଲ ଇନ୍ସପେକ୍ଟର ରୂପେ ପଦ୍ମପୁରକୁ ଯିବାକୁ ହେବ । ସୁତରାଂ ବଦଳିର ନାନା ଅଶାନ୍ତିମୟ ପରିସ୍ଥିତି ଯୋଗୁଁ ନାଟକ ଲେଖା ୪ର୍ଥ ଅଙ୍କ ପରେ ବନ୍ଦ ରହିଲା । ନଭେମ୍ବର ୧୧ ତାରିଖରେ ପଦ୍ମପୁରରେ କାର୍ଯ୍ୟରେ ଯୋଗ ଦେଇ ସତ କହିଲେ ନାଟକ ଲେଖିବାର ମାନସିକ ସ୍ଥିରତା ଓ ସ୍ୱଚ୍ଛନ୍ଦତା ସେ ପର୍ଯ୍ୟନ୍ତ ଆସି ନଥିଲା । ଧୀରେ ଧୀରେ କିଛି ଦିନ ଗଲାପରେ, ନଭେମ୍ବର ୨୦ ତାରିଖ ଠାରୁ ନାଟକର ୫ମ ଅଙ୍କ ସେହି ପଦ୍ମପୁରଠାରେ ଆରମ୍ଭ କଲି ଓ ପରମେଶ୍ୱରଙ୍କର ଅପାର କରୁଣା ବଶତଃ, ଡିସେମ୍ବର ମାସ ୧ ତାରିଖ ଦିନ ପ୍ରାୟ ଅଢ଼େଇ ଘଣ୍ଟା ବେଳେ ନାଟକର ଶେଷ ଦୃଶ୍ୟର ରଚନା ଶେଷ ହେଲା ।

ସୁତରାଂ ମୋଟରେ ଧରିବାକୁ ଗଲେ, ନାଟକର ରଚନା ଆରମ୍ଭ ହୋଇଥିଲା ୧୭-୮-୪୮ ତାରିଖରେ ଓ ସେ ରଚନା ଶେଷ ହେଲା ୧-୧୨-୪୮ ତାରିଖ ଦିନ । ଅର୍ଥାତ ମୋଟରେ ୧୦୫ ଦିନ ବା ୩ ମାସ ପନ୍ଦର ଦିନ ଲାଗିଲା ନାଟକଟିକୁ ପୂର୍ଣ୍ଣ ରୂପରେଖ ଦେବାକୁ । ନାଟକ ଶେଷ ହେବା ଦିନ ମାଗୁଣି ବାବୁଙ୍କୁ ଚିଠି ଲେଖି ଜଣାଇ ଦେଲି ଯେ ଉକ୍ତ ସାହିତ୍ୟ ପରିଷଦ ଯେଉଁ ଦାୟିତ୍ୱ ମୋ ଉପରେ ୨୮-୧୦-୪୭ ରେ ଲଦି ଦେଇଥିଲେ, ସେ ଦାୟିତ୍ୱରୁ ମୁଁ ମୁକ୍ତିଲାଭ କରି ପାରିଛି ।

ସୁତରାଂ "ଭକ୍ତକବି" ନାଟକର ଜନ୍ମ ଇତିହାସ ନେଇ ମୋଟା-ମୋଟି ବିବରଣୀ ଏହି ଏତିକି ମାତ୍ର ।

**ନାଟକର କଥାବସ୍ତୁ**—ସମସ୍ତ ନାଟକଟି ଐତିହାସିକ ଭିତ୍ତି ଉପରେ ଠିଆ ହୋଇଛି, ଏ କଥା କହିଲେ କିଛି ଭୁଲ ହେବ ନାହିଁ । କୁଜଙ୍ଗ ଦୁର୍ଗର ରାଜନୈତିକ ବିବର୍ତ୍ତନ ସମ୍ବନ୍ଧରେ ଯାବତୀୟ ଘଟଣା ଇତିହାସରୁ ସଂଗୃହୀତ । ତାର କିଞ୍ଚିତ ଆଭାଷ ମୁଁ ଆଗରୁ ଦେଇ ସାରିଛି । କଳ୍ପନାର ବିଳାସ ଏ ନାଟକରେ ଅତି ଅଳ୍ପ ! ପ୍ରାୟ ସମସ୍ତ ଚରିତ୍ର ଓ ନାମ ଇତିହାସରୁ ସଂଗୃହୀତ । ଉପେନ୍ଦ୍ରଙ୍କର ଦୁଇ ପତ୍ନୀଙ୍କର ଐତିହାସିକ ନାମ ସନ୍ଧାନ ଲାଗି ବହୁତ ଦିଗରେ ବହୁତ ଚେଷ୍ଟା କରିଥିଲି କିନ୍ତୁ କେଉଁଠାରେ କୃତକାର୍ଯ୍ୟ ହୋଇ ପାରିଲି ନାହିଁ । ତେଣୁ ବାଧ୍ୟ ହୋଇ, ଐତିହାସିକ ଚରିତ୍ର ଦୁଇଟିର କାଳ୍ପନିକ ନାମକରଣ କରିଛି । ଦାସୀ ମାଳତୀ, ଦେଶୀ ମାଧବିକା, ମହାମନ୍ତ୍ରୀ ବୃନ୍ଦାବନ, ଭୃତ୍ୟ ମାଧବ ପ୍ରଭୃତି ନାମଗୁଡ଼ିକ ମୋର ଗଢ଼ା ସତ କିନ୍ତୁ ଇତିହାସରେ ଏମାନଙ୍କର ଅସ୍ତିତ୍ୱ ଅଛି ।

ଭଞ୍ଜ ରାଜବଂଶୀୟଗଣ ଗଣିକାମାନଙ୍କୁ ନିଜ ରାଜ୍ୟରେ ସ୍ଥାନ ଦେଉଥିଲେ । ଏହି ଘଟଣାକୁ ଅବଲମ୍ବନ କରି ମନ୍ତ୍ରଗାଗାର ସୃଷ୍ଟି । ମନ୍ତ୍ରାଦେଶୀ ନିଜର ଉଦ୍ଦେଶ୍ୟ ସିଦ୍ଧି ଲାଗି ନାନା ଅସତ ଉପାୟ ଅବଲମ୍ବନ କରିଥିବାର କଥିତ ଅଛି । ପୁନ ଭଞ୍ଜଙ୍କର ନିର୍ବାସନ ଚକ୍ରାନ୍ତ ତହିଁରୁ ଗୋଟିଏ । ସେହି ଚକ୍ରାନ୍ତକୁ ମୂର୍ତ୍ତିରୂପେ ପରିସ୍ଫୁଟ କରିବା ଲାଗି, ମନ୍ତ୍ରଗାଗାର ଅବତାରଣା କରି ତାକୁ ପାଦପ୍ରଦୀପ ସମ୍ମୁଖରେ ଆଣି ଠିଆ କରାଇ ଅଛି । ଏତଦ୍ୱାରା ଐତିହାସିକ ସତ୍ୟର କିଛି ଅପଲାପ ହୋଇଛି ବୋଲି ମୋର ବିଶ୍ୱାସ ନୁହେଁ ।

କବିସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ ଚରିତ୍ରରେ ବା ଘଟଣାବଳୀରେ ଯାହା ଅଛି, ତାହାର କାରଣ ଇତିହାସ, ଗୁରୁଅଂଶ ମାତ୍ର ମୋର କଳ୍ପନା ପ୍ରସୂତ । ଘୁମୁସର ରାଜବଂଶରେ ଦେବୀ ଉପାସନା, ମନ୍ତ୍ର ସାଧନା ପ୍ରଧାନ ସମ୍ବଳ ଥିବାର କଥା ଇତିହାସ କହେ ଓ ଏହି ସାହାଯ୍ୟରେ ଅତି ଅଦ୍ଭୁତ କାର୍ଯ୍ୟମାନ ଅନେକ ସମୟରେ ସମ୍ପାଦିତ ହୋଇଥିବାର ମଧ୍ୟ କଥିତ ଅଛି । ତେଣୁ, ଏହି ବିଷୟର ସୁଯୋଗ ନେଇ, ମୁଁ ବାଗ୍‌ଦେବୀଙ୍କୁ

ସନ୍ନ୍ୟାସିନୀ କରି ଉପେନ୍ଦ୍ରଙ୍କ ଆଖି ଆଗରେ ଠିଆ କରାଇଛି । ଉପେନ୍ଦ୍ରଙ୍କର କବି ପ୍ରତିଭାର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ଲାଗି ବାଗ୍‌ଦେବୀଙ୍କର ବୀଣାଦାନ ଘଟଣାକୁ ମୁଁ ମନରୁ ଗଢ଼ି, ନାଟକରେ ସ୍ଥାନ ଦେବାର ଲୋଭ ସମ୍ବରଣ କରି ପାରିଲି ନାହିଁ । ଏହି କଳ୍ପନା ଲାଗି ଯଦି କେହି ମୋତେ ନିନ୍ଦା କରନ୍ତି, ତେବେ ସେ ନିନ୍ଦା ମୁଁ ନାଟକକାର ହିସାବରେ ଆନନ୍ଦରେ ମୁଣ୍ଡାଇ ନେବି । ଏହି ଗୋଟିକ ଘଟଣା ବ୍ୟତୀତ, ଉପେନ୍ଦ୍ର ଚରିତ୍ରରେ ଅବାସ୍ତବତାର ସୂଚନା ଅନ୍ୟ କେଉଁଠାରେ ଅଛି ବୋଲି ମୋର ମନେ ହୁଏ ନାହିଁ ।

ଉପେନ୍ଦ୍ରଙ୍କର ନାନା କାବ୍ୟ ରଚନାର ସ୍ଥାନ, କାଳ ଓ କାରଣ ବିଷୟରେ, ଯାହା ଯେତିକି ମୁଁ ପାଇଛି, ତାହା ଯଥା ସ୍ଥାନରେ ସନ୍ନିବିଷ୍ଟ କରିଛି । ପ୍ରେମସୁଧାନିଧି କାବ୍ୟ କାହିଁକି ଲେଖାଗଲା, ଲାବଣ୍ୟବତୀ କାବ୍ୟ ଲେଖିବାର ଉଦ୍ଦେଶ୍ୟ କଣ, କୋଟିବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟ କେଉଁଠି ଲେଖାଗଲା, ବୈଦେହୀଶ ବିଳାସ କାବ୍ୟର ଲେଖା କିପରି ସମ୍ଭବ ହେଲା, ଚିତ୍ର କାବ୍ୟ ବନ୍ଧୋଦୟ କଣ, ଗୀତାଭିଧାନ କାହିଁକି ଲେଖାଗଲା, ଇତ୍ୟାଦି ବିଷୟଗୁଡ଼ିକ ମୁଁ ପ୍ରବାଦ ଓ କିମ୍ବଦନ୍ତୀ ଉପରେ ଭରସା କରି, ନାଟକ ଭିତରେ ସ୍ଥାନ ଦେଇଛି । ଉପେନ୍ଦ୍ର ଚରିତ୍ର ସୃଷ୍ଟି ହେବ, ଏପରି କଳ୍ପନା ମୁଁ କରି ପାରି ନାହିଁ କାରଣ ବିଜୟ ମଜୁମଦାରଙ୍କର ଉକ୍ତି ତ ମୋ ଧମନୀରେ ନାହିଁ । ପରନ୍ତୁ, ଉପେନ୍ଦ୍ରଙ୍କ ମହତ୍ତ୍ୱ ଓ ପବିତ୍ର କରି ଚିତ୍ର କରିବାକୁ, ଯେତେବେଳେ ଯେଉଁ ଇତିହାସ ବା ପ୍ରବାଦ ବା କିମ୍ବଦନ୍ତୀ ମୋ ହାତ ପାଖକୁ ଆସିଛି, ତାହା ମୁଁ ଉଦାର ଓ ସ୍ୱାଧୀନ ଭାବରେ ନାଟକରେ ଖଞ୍ଜି ଦେଇଛି । କଳା କଉତୁକ କାବ୍ୟର ଇତିହାସ ରସପଞ୍ଚକ କାବ୍ୟର ଜନ୍ମ କାରଣ ଓ ରାମ ତାରକ ମନ୍ତ୍ର ଜପ କରିବାର ଯାବତୀୟ କୌଶଳ ଇତ୍ୟାଦି ବିଷୟରେ ସମସ୍ତ ସୂଚନା ଓ ପ୍ରେରଣା ମୁଁ ପାଇଛି, ପୂଜ୍ୟ ପଣ୍ଡିତ ଶ୍ରୀ ନୀଳକଣ୍ଠଙ୍କ ଠାରୁ, ତାଙ୍କରି ସାହାଯ୍ୟରେ ଉପେନ୍ଦ୍ରଙ୍କୁ ଜ୍ୟୋତିଷୀ, ବୈଜ୍ଞାନିକ ଓ ରସିକ ଭକ୍ତ ରୂପରେ ମୋର ଦେଶ ଆଗରେ ମୁଁ ଉପସ୍ଥାପିତ କରି ପାରିଛି । କେବଳ ତେତିକି

ନୁହେଁ, ତାଙ୍କର ନିର୍ଦ୍ଦେଶ ନ ପାଇଥିଲେ, ଦ୍ୱାଦଶାବଧାନୀ ଉପେନ୍ଦ୍ରଙ୍କୁ ମୁଁ ବୋଧହୁଏ କଳ୍ପନା କରି ପାରି ନ ଥାନ୍ତି । ଏହି ସମ୍ବନ୍ଧରେ ପଣ୍ଡିତ ମହାଶୟ ମୋ ପାଖକୁ ଯାହା ଲେଖିଥିଲେ, ତାହାର ଅବିକଳ ନକଲ ଦେଉଛୁ—"କେହି କେହି କହନ୍ତି ଉପେନ୍ଦ୍ର ଦ୍ୱାଦଶାବଧାନୀ ଥିଲେ, ଅର୍ଥାତ୍ ଏକାବେଳେ ବାରଗୋଟି ବିଷୟର ଉତ୍ତର ଦେଉଥିଲେ । ମୋର ଅନୁରୋଧ ନାଟକରେ ଏପରି ଗୋଟିଏ ଦୃଶ୍ୟ ନିଶ୍ଚେ ଦେବ । ଆମ ଜାତିର ଏହା ଗୋଟାଏ ବିଶିଷ୍ଟ କଥା ହେବ । ଉପେନ୍ଦ୍ରଙ୍କର ଏପରି ଗୁଣ ନ ଥିଲେ, ସେ ଅଳ୍ପ ବୟସରେ ଏତେ ବଡ଼ ବଡ଼ କାବ୍ୟ ଲେଖି ପାରନ୍ତେ ନାହିଁ ।" ପଣ୍ଡିତ ମହାଶୟଙ୍କର ଏହି ସୂଚନା ପାଇ, ମୁଁ ଦ୍ୱାଦଶାବଧାନୀ ଯୋଗୀ ଉପେନ୍ଦ୍ରଙ୍କୁ ମଞ୍ଚ ଉପରକୁ ନେଇ ଆସିଛୁ ଓ ମୋର ପୂର୍ଣ୍ଣ ବିଶ୍ୱାସ, ଏଥିରେ କବି ସମ୍ରାଟଙ୍କର ବ୍ୟକ୍ତିତ୍ୱ ଓ ମହତ୍ୱ ବୃଦ୍ଧି ଲାଭ କରିଛୁ । ଏହିପରି ଭାବରେ ସାମୟିକ ଉପଦେଶ ଓ ପ୍ରସ୍ତାବ ପ୍ରଭୃତି ଦେଇ, ପଣ୍ଡିତ ମହାଶୟ ମୋତେ ଚିରଦିନ ଲାଗି ତାଙ୍କ ପାଖରେ ଋଣୀ କରି ବାନ୍ଧି ରଖିଛନ୍ତି ।

ଉପେନ୍ଦ୍ରଙ୍କର ଚରିତ ବିଷୟରେ, ମୋର ପୂଜ୍ୟ ଗୁରୁଦେବ ଅଧ୍ୟାପକ ଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି, ତାଙ୍କ ପ୍ରକାଶିତ 'ଲାବଣ୍ୟବତୀ' କାବ୍ୟର ଭୂମିକାରେ ୧୫-୧୬ ପୃଷ୍ଠାରେ ଯାହା ଲେଖିଛନ୍ତି, ତାହାହିଁ ମୋର ପୁଞ୍ଜି । ନାଟକ ମଧ୍ୟରେ ସେହି ପୁଞ୍ଜିକୁ ନେଇ ମୁଁ ସଉଦା କାରବାର କରିଛୁ ମାତ୍ର ।

ସନ୍ନ୍ୟାସୀ ରଘୁନାଥ, ନୟାଗଡ଼ ମାଲିସାହି ଓ ଓଡ଼ଗାଁର ରଘୁନାଥ ମନ୍ଦିର ଏ ସମସ୍ତ ସହିତ ଉପେନ୍ଦ୍ରଙ୍କର କବି ଜୀବନ ଓତପ୍ରୋତ ଭାବେ ଜଡ଼ିତ ବୋଲି ଇତିହାସ ମଧ୍ୟ କହେ । ମୋଟ ଉପରେ କହିବାକୁ ଗଲେ ମୁଁ ଇତିହାସକୁ ପାଖେ ପାଖେ ରଖି, ଭକ୍ତ କବି ନାଟକର ପ୍ରାଣ ପ୍ରତିଷ୍ଠା କରିଛୁ । ମୋ କଥାକୁ ଅବିଶ୍ୱାସ କଲେ, ମୁଁ ପାଠକ ଓ ଦର୍ଶକମାନଙ୍କୁ ଅନୁରୋଧ କରୁଛୁ ଯେ ସେମାନେ ଦୟାକରି ଥରେ ୬ ତାରିଣୀ ଚରଣ ରଥଙ୍କ କୃତ ଘୁମୁସର ଇତିହାସ ଓ କବିବର ଚିନ୍ତାମଣି ମହାନ୍ତି ବିରଚିତ "ଘୁମୁସର"

କାବ୍ୟକୁ ଆମୂଳଚୂଳ ପଢ଼ିବେ । ତା ହେଲେ, ସମସ୍ତଙ୍କର ସମସ୍ତ ସନ୍ଦେହ ଉନ୍ମୂଳ ହୋଇ ପାରିବ ।

ନାଟକ ମଧ୍ୟରେ ଯେତେଗୁଡ଼ିଏ ହତ୍ୟା ବିଷୟର ଚିତ୍ର ଦିଆଯାଇଛି, ତାହାର ପ୍ରମାଣ ଇତିହାସରେ ଅଛି । ବିଶେଷତଃ, ମହାରାଜ ଧନଞ୍ଜୟ ଭଞ୍ଜ, ଗଙ୍ଗାଧର ଓ ଶତ୍ରୁଘ୍ନଙ୍କର ନିର୍ମମ ହତ୍ୟା, କଠୋର ସତ୍ୟ । କୌଣସି ଯୁକ୍ତି ଦେଖାଇ ଏ ଗୁଡ଼ିକ ଉଡ଼ାଇ ଦିଆଯାଇ ପାରେନା । କେବଳ ନାଟକୀୟ ଭଙ୍ଗୀର ଅନୁସରଣ କରି, ଘାତ ପ୍ରତିଘାତ ସୃଷ୍ଟି କରିବା ଲାଗି, ପରିସ୍ଥିତିକୁ ମାତ୍ର କଳ୍ପନା ସାହାଯ୍ୟରେ ବଦଳାଇ ଦିଆଯାଇଛି ଏବଂ ପ୍ରତ୍ୟେକ ନାଟକକାର ଏପରି କରିବାକୁ ସବୁ ଯୁଗରେ ଓ ସବୁ କାଳରେ License ବା ଛାଡ଼ପତ୍ର ପାଇଥାନ୍ତି । ଏହା ଛଡ଼ା, ଅନ୍ୟାନ୍ୟ ହତ୍ୟାଗୁଡ଼ିକ, ନାଟକୀୟ ସମତା ରକ୍ଷା କରିବା ନିମିତ୍ତ ପରିକଳ୍ପିତ ମାତ୍ର ।

ନାଟକର କଥାବସ୍ତୁ ସମ୍ବନ୍ଧରେ ଏତେ କଥା କହି ସାରିଲା ପରେ ଦେଶବାସୀଙ୍କୁ ମୋର ବିନୀତ ଅନୁରୋଧ ଯେ ସେମାନେ କବି-ସମ୍ରାଟ ଉପେନ୍ଦ୍ରଙ୍କୁ ଶବ୍ଦକଳ୍ପର ପ୍ରିୟ କଣେ ଅଶ୍ଳୀଳ କବି ବୋଲି ଆଉ ଯେପରି ନ କହନ୍ତି । ଜଣେ ସାଧାରଣ ବ୍ୟକ୍ତି ତାରକ-ମନ୍ତ୍ରର ଅଧିକାରୀ ହୋଇ ପାରେନା, ଏ କଥା ସନ୍ନ୍ୟାସୀ ରଘୁନାଥଙ୍କର ଦୈବବାଣୀ ନୁହେଁ । ଏହା ଅତି ନିଷ୍ଠୁର ସତ୍ୟ । ଉପେନ୍ଦ୍ର ଏତେ ବଡ଼ ସାଧନା କରିଥିଲେ, କେବଳ କଳାଶ୍ରୀ ରସମୟ କାବ୍ୟ-ସାହିତ୍ୟ ସୃଷ୍ଟି କରି ଭାଷାକୁ ଜୀବନ୍ତ ଓ ସମୃଦ୍ଧ କରିବାକୁ । ତେଣୁ ଭୁବନେଶ୍ୱରର କାରୁଶିଳ୍ପ ପରି ତାଙ୍କର ଭାଷାରେ ରହିଛି କଳାଶିଳ୍ପର ଆଭିଜାତ୍ୟ ।

**ନାଟକର ଭାଷା ଓ ସଙ୍ଗୀତ**—ମୋର ଜଣେ ବନ୍ଧୁ ମୋତେ ଆକ୍ଷେପ କରି କହିଥିଲେ ଯେ ନାଟକର ଭାଷା ବଡ଼ କଠିଣ ହୋଇ ପଡ଼ିଛି । କିନ୍ତୁ ମୋର ବନ୍ଧୁ ବୋଧହୁଏ ଭୁଲି ଯାଇଛନ୍ତି ଯେ ଏହା ଆଧୁନିକ ପ୍ରଗତିଶୀଳ ଯୁଗର ସାମାଜିକ ନାଟକ ନୁହେଁ । ଏଥିରେ ମଦ ନାହିଁ କି ସିଗ୍ରେଟ୍ ନାହିଁ କି ବେଶ୍ୟାର ଉଲଗ୍ନ ନୃତ୍ୟ ନାହିଁ, କି

ଚଉଖଣ୍ଡିଆ ଇଂରାଜୀର ବନ୍ଧାବୋଲି ସୁଙ୍ଗା ନାହିଁ । ସପ୍ତଦଶ ଶତାବ୍ଦୀର ଉତ୍କଳ ଇତିହାସକୁ ଚିତ୍ର କଲାବେଳେ, ମୋତେ ଯଥାସମ୍ଭବ ସେହି ଯୁଗକୁ ଫେରି ଯିବାକୁ ହେବ । ସୁତରାଂ ଯେଉଁ ସମୟରେ ବୈଦେହୀଶ ବିଳାସ, ରଘୁନାଥ ବିଳାସ ଭଳିଆ ବଳିଷ୍ଠ କାବ୍ୟମାନ ଲୋକସାଧାରଣଙ୍କ ଲାଗି ରଚିତ ହୋଇଥିଲା ସେ ଯୁଗର ଭାଷା କିଞ୍ଚିତ୍ ପରିମାର୍ଜିତ ହୋଇଥିବ, ଏଥିରେ ସନ୍ଦେହ କରିବାର ଅବକାଶ ନାହିଁ । ସୁତରାଂ ମୋ ମତରେ, ଉପେନ୍ଦ୍ର ଭଞ୍ଜଙ୍କ ବିଷୟରେ ନାଟକ ଲେଖିବାବେଳେ, ଭାଷାକୁ ଯଥାସଂଭବ ସରଳ ଓ ଗାମ୍ଭୀର କରିବା ନିତାନ୍ତ ପ୍ରୟୋଜନ । ଆଧୁନିକ ଭାଷା ହୁଏତ ଉପେନ୍ଦ୍ରଙ୍କ ଯୁଗୋପଯୋଗୀ ଭାଷା ନୁହେଁ । ତେଣୁ ଜାଣିଶୁଣି, ମୁଁ ମୋର ସାଧ୍ୟମତେ, ଭାଷାକୁ ଆଧୁନିକ ସରଳତା ଓ ଉଚ୍ଛୃଙ୍ଖଳତାର ଉପର ସ୍ତରକୁ ନେଇଛି ଓ ମୋର ବହୁ ବିଶିଷ୍ଟ ସାହିତ୍ୟିକ ବନ୍ଧୁ, ମୋର ଏହି ଭାଷାକୁ ଆନ୍ତରିକ ଅନୁମୋଦନ କରିଛନ୍ତି ।

ନାଟକର ସଙ୍ଗୀତ ସମ୍ପର୍କରେ ମୋର ବିଶେଷ କିଛି କହିବାକୁ ନାହିଁ, କାରଣ ଗଙ୍ଗା ଜଳରେହିଁ ମୁଁ ଗଙ୍ଗାଦେବୀଙ୍କର ପୂଜା କାର୍ଯ୍ୟ ସମାପ୍ତ କରିଛି । ହୁଏତ, ମୋର ରଚିତ ସଙ୍ଗୀତଗୁଡ଼ିକ ଭଞ୍ଜକବିଙ୍କ ଯୁଗୋପଯୋଗୀ ହୋଇ ପାରି ନ ଥାନ୍ତା । ତେଣୁ ସେ ବିଷୟରେ କୌଣସି ଦୁଃସାହସ ନ କରି, ନାଟକଟିକୁ କବିଙ୍କର ସ୍ୱରଚିତ ସଙ୍ଗୀତଦ୍ୱାରା, ମୁଖରିତ କରିବାକୁ ଚେଷ୍ଟା କରିଛି ମାତ୍ର । ନାଟକର ସ୍ଥାନ, କାଳ ଓ ପାତ୍ର ଉପରେ, ଉପେନ୍ଦ୍ରଙ୍କର ସଙ୍ଗୀତ ଓ ଗ୍ରନ୍ଥ ଆଦି ଯେ ଯଥେଷ୍ଟ ପ୍ରଭାବ ବିସ୍ତାର କରିବ, ଏ ବିଷୟରେ ମୋର କୌଣସି ଦ୍ୱିଧା ଆଦୌ ନାହିଁ ।

**ନାଟକର ଅଭିନୟ**—ଆଧୁନିକ ରଙ୍ଗମଞ୍ଚର ଚାହିଦା ଅନୁସାରେ, ମୋର ଏ ନାଟକଟି ଯେ ଶ୍ରେଷ୍ଠ ହୋଇ ପାରି ନାହିଁ; ଏଥିଲାଗି ମୋର କ୍ଷୁବ୍ଧ ହେବାର କିଛି କାରଣ ନାହିଁ । ରଙ୍ଗମଞ୍ଚରେ ଅଭିନୟଦ୍ୱାରା ନାଟକର ଯଥାର୍ଥ ସାର୍ଥକତା ଉପଲବ୍ଧ ହୁଏ, ଏ କଥା ମୁଁ ଜାଣେ । କିନ୍ତୁ ମୋର ଅନ୍ୟ ଉପାୟ ନ ଥିଲା । କାରଣ ମୁଁ ନାଟକଟିକୁ ଏକାଧାରରେ ନାଟକ ଓ ଖଣ୍ଡେ Documentary literature ଭାବରେ ଗଢ଼ିବାକୁ

ଚେଷ୍ଟା କରିଛୁ । କବି ସମ୍ରାଟଙ୍କ ବହୁଙ୍କରେ ଯେଉଁ ଜନମତ ଆଜି ଆମ ଦେଶରେ ଗଢ଼ି ହୋଇ ଯାଇଛୁ, ସେହି ଜନମତର ମୂଳୋତ୍ପାଟନ କରିବା ଉଦ୍ଦେଶ୍ୟରେ, ଏହି "ଭକ୍ତ କବି" ନାଟକର ସୃଷ୍ଟି । ସୁତରାଂ ଉଦ୍ଦେଶ୍ୟ-ମୂଳକ ନାଟକ ହିସାବରେ ଏହାର କଳେବର ଟିକିଏ ବଢ଼ି ଯାଇଛୁ, ଏହା ମୁଁ ସ୍ୱୀକାର କରୁଛୁ । ତଥାପି ତ ଏହି ଯୁଗରେ, ବଙ୍ଗଳାରେ ଆଲମ୍‌ଗୀର ଓ ଓଡ଼ିଆରେ କେଶରୀଗଙ୍ଗ ଓ ହିନ୍ଦୁ ରମଣୀ ଓ ଚୌଡ଼ ବଜେଇଡା ଭଳି ବଡ଼ ବଡ଼ ନାଟକମାନ ମଧ୍ୟ ଅଛୁ ।

ମୋର ମନେ ହୁଏ, "ଭକ୍ତ କବି" ନାଟକଟି ବଡ଼ ହୋଇଥିଲେ ସୁଦ୍ଧା ଏହାର ଅଭିନୟ ଲାଗି ପାଞ୍ଚ ଘଣ୍ଟାରୁ ଅଧିକ ସମୟ ପ୍ରୟୋଜନ ହେବ ନାହିଁ, ବରଂ ତହିଁରୁ କିଛୁ କମ୍ ହୋଇପାରେ । ତେବେ, ସମୟ ସଂକ୍ଷେପଣାର୍ଥେ, ଅଭିନେତାମାନେ ଇଚ୍ଛା କଲେ, ନାଟକର ଅଙ୍ଗହାନି ନ କରି, କିଛୁ କିଛୁ ଅଂଶ ବାଦ ଦେଇ ଅଭିନୟ କରି ପାରନ୍ତି । ଜଣେ ନଗଣ୍ୟ ଅଭିନେତା ହିସାବରେ, ମୋର ଏ ବିଷୟରେ ଆପତ୍ତି କରିବାର କିଛୁ ନାହିଁ । ଅଭିନୟ ସୂତ୍ରରେ ଏ ନାଟକର ବହୁଳ ପ୍ରଚାର ହେଉ, ଏହା ମୋର ଐକାନ୍ତିକ କାମନା ।

**ନାଟକର ମୁଦ୍ରଣ**—ଆଜି ଯେ ମୁଦ୍ରିତ "ଭକ୍ତ କବି" ନାଟକଟିକୁ ମୁଁ ମୋର ଦେଶ ଓ ଜାତି ଆଗରେ ଠିଆ କରି ପାରିଲି, ଏହି ଘଟଣାର ମୂଳରେ ଅଛନ୍ତି—ମୋର ସୋଦର ପ୍ରତିମ ଅନ୍ତରଙ୍ଗ ବନ୍ଧୁ ଓ ସଖା ଶ୍ରୀଯୁକ୍ତ ମଦନ ସୁନ୍ଦର ଦାସ । ନାଟକଟି ଲେଖା ସରିଲା ପରେ, ସର୍ବପ୍ରଥମେ ମୁଁ ତାହାଙ୍କୁହିଁ, ଏହା ଆମୂଳଚୂଳ ପଢ଼ି ଶୁଣାଇ ଦେଇଥିଲି । ମୁଁ ଦେଖିଛୁ, ନାଟକଟି ପଢ଼ା ହେଉଥିଲାବେଳେ, ତାଙ୍କର ଚକ୍ଷୁଦ୍ୱୟରୁ ବହୁବାର ଅଶ୍ରୁ ଗଡ଼ି ପଡ଼ୁଥିଲା । ନାଟକ ଶୁଣି ସାରିବା ପରେ, ସେହି ବନ୍ଧୁ ମୋର, ନାଟକଟିକୁ ଶୀଘ୍ର ଛପାଇବା ଲାଗି ଜିଦ୍‌ଧରି ବସିଲେ । କିନ୍ତୁ ଏଡ଼େ ବଡ଼ ନାଟକ ଛପାଇବାକୁ ଅର୍ଥର ସମ୍ବଳ ମୋର ନ ଥିବାରୁ, ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇ ପଡ଼ିଲି । ଶେଷରେ ବନ୍ଧୁ ମଦନ ସୁନ୍ଦର ମୋତେ ସାହସ ଦେଇ ଲେଖିଲେ, "ଭକ୍ତେ ରାଜପୂଜ୍ୟ, କାଙ୍ଗାଳ ନୁହନ୍ତି ତେଣୁ ତାଙ୍କର ଟଙ୍କାର ଅଭାବ ହେବ ନାହିଁ ।"

ମୋଟ ଉପରେ, ବନ୍ଧୁ ମଦନସୁନ୍ଦରଙ୍କର ପ୍ରେରଣା, ଉତ୍ସାହ, ସହାନୁଭୂତ ଓ ଉଦ୍‌ଯୋଗ ଆଜି "ଭକ୍ତ କବି" ନାଟକର ପ୍ରକାଶ ଲାଗି ମୁଖ୍ୟତଃ ଦାୟୀ, ଏକଥା କହିବା ଦ୍ୱାରା ମୁଁ ସତ୍ୟର ଟିକିଏ ମାତ୍ର ଅପଲାପ କରୁ ନାହିଁ । ଏହି ସମ୍ପର୍କରେ ଯେତେ ଯେତେ ଚିଠି ପତ୍ର ତାଙ୍କ ସହିତ ମୋର ଦିଆ ନିଆ ହୋଇଛି, ତାହା ଦେଖିଲେ ଜଣାପଡ଼ିବ ଯେ ଏ ନାଟକ ମୁଦ୍ରଣ ଲାଗି, ତାଙ୍କର ଆଶା, ଆଗ୍ରହ ଓ ଆକାଙ୍‌କ୍ଷା କେତେ ? ତେଣୁ ତାଙ୍କ ପାଖରେ କୃତଜ୍ଞତା ଜଣାଇବାକୁ ମୁଁ ସାହସ କରୁ ନାହିଁ, କାରଣ ମୋର ଭୟ ହୁଏ, ଯେ ଗତାନୁଗତିକ ପନ୍ଥା ଅନୁସରଣ କରି ଗୋଟାଏ ମୌଖିକ କୃତଜ୍ଞତା ଜ୍ଞାପନ କରିବା ଦ୍ୱାରା, ମୋର ବନ୍ଧୁଙ୍କର ଉପଯୁକ୍ତ ମର୍ଯ୍ୟାଦା ହୁଏତ ମୁଁ ରକ୍ଷା କରି ପାରିବି ନାହିଁ । "ଭକ୍ତ କବି" ନାଟକକୁ ପୁସ୍ତକ ଆକାରରେ ଦେଖି, ବନ୍ଧୁ ମଦନସୁନ୍ଦର ଯେ ସର୍ବଶ୍ରେଷ୍ଠ ଓ ସର୍ବପ୍ରଥମ ଆନନ୍ଦ ଲାଭ କରିବେ, ଏ କଥା ପ୍ରକାଶ କରିବାର ଦମ୍ଭ ମୋର ଅଛି, କାରଣ ତାଙ୍କର ଉଦ୍ୟମ ଆଜି ଫଳପ୍ରସୂ ।

ଆଉ ଯେଉଁ ବନ୍ଧୁମାନେ ମୋର ସ୍ୱତଃପ୍ରବୃତ୍ତ ହୋଇ, ଏହି ପୁସ୍ତକର ମୁଦ୍ରଣ ନିମନ୍ତେ, ଅଯାଚିତ ଭାବରେ ସେମାନଙ୍କର କାୟିକ, ମାନସିକ ଓ ବାଚିକ ସାହାଯ୍ୟ ଅକାତର ଭାବରେ ଦାନ କରି, ମୋତେ କୃତାର୍ଥ, ଚରିତାର୍ଥ ଓ ଅନୁଗୃହୀତ କରିଛନ୍ତି, ସେମାନଙ୍କ ମଧ୍ୟରୁ ବଛନ୍ଦ ବାବୁ, ରାମ ବାବୁ, ବଳରାମ ବାବୁ, ବ୍ରହ୍ମାନନ୍ଦ ବାବୁ, ନୀଳମଣି ବାବୁ, ବଳଦେବ ବାବୁ, ଭାଗୀରଥୀ ବାବୁ, ବ୍ରଜମୋହନ ବାବୁ, କେଦାର ବାବୁ, ଜଗନ୍ନାଥ ବାବୁ, ପରମେଶ୍ୱର ବାବୁ, ଶରତ ବାବୁ, ଗୁଣନିଧି ବାବୁ, ରାଧାକୃଷ୍ଣ ବାବୁ ଓ ଠାକୁର ପ୍ରସାଦଙ୍କର ନାମ ଉଲ୍ଲେଖଯୋଗ୍ୟ । ସେମାନଙ୍କର ଚେଷ୍ଟା ଓ ଶୁଭେଚ୍ଛା ବ୍ୟତିରେକେ, ଏ ମୁଦ୍ରଣ କାର୍ଯ୍ୟର ମୁକ୍ତି ବୋଧହୁଏ ମିଳିପାରି ନଥାନ୍ତା । ନାଟକ ଲେଖା ଚାଲିଥିବା ସମୟରେ ମୋର ବନ୍ଧୁ ଶ୍ରୀ ବିଶ୍ୱନାଥ ପାଇକରାୟ ବହୁ କଷ୍ଟ ସହି, ନାଟକର ପ୍ରଥମ ପାଣ୍ଡୁଲିପି ପ୍ରସ୍ତୁତ

କରିବାରେ ମୋତେ ଯଥେଷ୍ଟ ସାହାଯ୍ୟ କରିଥିଲେ । ତେଣୁ ମୁଁ ତାଙ୍କ ନିକଟରେ କୃତଜ୍ଞ ।

ଏହି ପୁସ୍ତକର ମୁଦ୍ରଣ ସମ୍ପର୍କରେ ଆଉ ଗୋଟିଏ କଥା ମଧ୍ୟ ମୋର କହିବାକୁ ଅଛି । ଯେଉଁ ବନ୍ଧୁମାନେ ମୋତେ ଏହି ପୁସ୍ତକର ମୁଦ୍ରଣ ଲାଗି ଉଦାର ଭାବରେ ଅର୍ଥ ସାହାଯ୍ୟ କରିଛନ୍ତି, ସେମାନଙ୍କର ଆନ୍ତରିକ ଆଶା ଯେ ଏହି ନାଟକର ବିକ୍ରୟଲବ୍ଧ ଧନକୁ ପୁଞ୍ଜି କରି, ମୁଁ ଯେପରି 'ଉତ୍କଳ ଗଣ୍ଡ ପଦ୍ମମଣି' ଓ 'ପଠାଣି ସାମନ୍ତ' ନାମରେ ଆଉ ଦୁଇଟି ଜାତୀୟ ବୀରଙ୍କ ବିଷୟରେ ନାଟକ ଲେଖି ସେମାନଙ୍କ ହାତରେ ଦେବି । ଅବଶ୍ୟ ଏଥିଲାଗି ମୁଁ ସେମାନଙ୍କୁ ପ୍ରତିଶ୍ରୁତି ଦେଇଛି । ଭଗବାନ କରନ୍ତୁ, ମୁଁ ଯେପରି ଏହି ପ୍ରତିଶ୍ରୁତି ରକ୍ଷା କରିବାକୁ ସକ୍ଷମ ହୁଏଁ । ସତେ କଣ, ଦେଶର ଏହି ପ୍ରତିଭାଶାଳୀ ମନିଷୀ ଦୁଇଜଣ ମୋ ଭଳି ଜଣେ ଅର୍ବାଚୀନର ପୂଜା ଗ୍ରହଣ କରିବାକୁ, ଅତୀତର ଘନ ଅନ୍ଧକାର ଭେଦ କରି, ରକ୍ତ ମାଂସର ଶରୀର ଘେନି ମୋ ସମ୍ମୁଖରେ ବିରାଜମାନ କରିବେ ? କିଏ ଜାଣେ, ଭବିଷ୍ୟତ୍ ଏହାର କପରି ଉତ୍ତର ଦେବ ?

ରସଲକୁଣ୍ଡାର ଭଞ୍ଜ ସାହିତ୍ୟ ପରିଷଦ ମଧ୍ୟ ଏହି ନାଟକର ମୁଦ୍ରଣ କାର୍ଯ୍ୟ ସୁରୁଖୁରୁରେ କରାଇ ନେବେ ବୋଲି, ଅନ୍ୟ ବନ୍ଦୋବସ୍ତ କରି ସାରି ମୋତେ ଜଣାଇ ଥିଲେ । କିନ୍ତୁ ପରିଷଦର ଏହି ବିରାଟ ଅନୁଗ୍ରହ ଲାଭ କରିବା ପୂର୍ବରୁ, ମୋର ପୂର୍ବକଥିତ ବନ୍ଧୁମାନେ, 'ଭଞ୍ଜ କବି'ଙ୍କ, ମୋ ନିକଟରୁ ନେଇ ପ୍ରାୟ ଯନ୍ତସ୍ଥ କରି ସାରିଥିଲେ । ସୁତରାଂ ମୋର ପ୍ରିୟତମ ବନ୍ଧୁମାନଙ୍କର ସାହାଯ୍ୟ ଓ ସହାନୁଭୂତିକୁ ଅବହେଳା ଦେଖାଇ, ତାହାକୁ ପ୍ରଚୁର ଅର୍ଥ ସାହାଯ୍ୟକୁ ମୁଁ ଅନୁମୋଦନ କରି ପାରିଲି ନାହିଁ । ଭଞ୍ଜ ସାହିତ୍ୟ ପରିଷଦ ଏଥିଲାଗି ମୋ ଉପରେ ଅସନ୍ତୁଷ୍ଟ କି ନା, ତାହା ମୁଁ ଜାଣେ ନା । କିନ୍ତୁ ପରିଷଦ୍‌ର ସଭ୍ୟମାନଙ୍କ ନିକଟରେ ସେମାନଙ୍କର ଏହି ବଦାନ୍ୟତା ଯୋଗୁଁ ମୁଁ ଚିରସ୍ଥାୟୀ ଋଣୀ ।

ଆଉ ଜଣେ ପ୍ରିୟ ବନ୍ଧୁ ମୋତେ ବାରମ୍ବାର ଅନୁରୋଧ କରିଛନ୍ତି ଯେ "ନିଜ କଥା" ମଧ୍ୟରେ ଯେପରି ତାଙ୍କର ନାମୋଲ୍ଲେଖ ନ ରହେ । ସେଥିପାଇଁ ସେ ଲେଖିଛନ୍ତି, "ଅନ୍ତତଃ ଆଧୁନିକ ତଥାକଥିତ ଭଦ୍ରତା ଅନୁରୋଧରେ, ମୋ ନାମରେ ଏପରି ଲେଖିବାକୁ ଯାହାକି ଯେ ତୁ ଲାଳାୟିତ, ମୁଁ ବୁଝିପାରୁ ନାହିଁ । ନିଜ କଥାରେ ତୁ ମୋତେ ରାୟସାହେବ ଠାରୁ ଆରମ୍ଭ କରି ଲାଟ ସାହେବ ପର୍ଯ୍ୟନ୍ତ କହି ଲେଖିପାରୁ, ମାତ୍ର ମୋର ନାଁ ସେ ବହିରେ ରହିବ ନାହିଁ । ତାର ପ୍ରଥମ କାରଣ, ସେଥିରେ ମୋର କୌଣସି ଅଧିକାର ନାହିଁ - ମୁଁ ନିଜେ ଏକ ପାହୁଲା ଦେଇ ନାହିଁ ବା ଦେବାର ଶକ୍ତି ମୋର ହେଲା ନାହିଁ । ଦ୍ୱିତୀୟ କଥା ହେଉଛି, ମୋର ନାଁ ସେଥିରେ ରହିଲେ, କେଉଁ ସୁଦୂର ଭବିଷ୍ୟତରେ ମୋର ମନରେ ଗୋଟାଏ ଅହେତୁକ ଅହଂକାର ହେଇପାରେ ଯେ ମୁଁ ଏପରି କରିଥିଲି । ସେହିଟାକୁ ମୁଁ ମୂଳରୁ Scope ଦେବାକୁ ଚାହେଁ ନାହିଁ । ଏହି ହେଲା, ଅତି ସଂକ୍ଷେପରେ ମୋର ଆପତ୍ତିର କାରଣ । ତାହା ଛଡ଼ା, ମୁଁ ଅଯଥାରେ ଲୋକ ଚକ୍ଷୁରେ ବଡ଼ ହେବାକୁ ମୋଟେ ପସନ୍ଦ କରି ପାରୁନି ।" ଆଶାକରେଁ, ମୋର ଏପରି ଜଣେ ସଦାଶୟ ବନ୍ଧୁଙ୍କୁ ଦେଶ ନିଶ୍ଚୟ ଚିହ୍ନିବାକୁ ଚେଷ୍ଟା କରିବ । ତାଙ୍କ ସମ୍ବନ୍ଧରେ ମୋର ଯାହା କହିବାର କଥା, ତାହା ମୁଁ ଯଥା ସ୍ଥାନରେ ମୋ ନିଜର ଅଜ୍ଞାତରେ ପ୍ରକାଶ କରି ସାରିଛି । ତାଙ୍କୁ ଲୁଚାଇ ରଖି ପାରିବାର ସାହସ ମୋର ନାହିଁ ।

କଳିଙ୍ଗ ଭାରତୀ ଅନୁଷ୍ଠାନର କର୍ଣ୍ଣଧାର, ମୋର ମାନନୀୟ ବିଚ୍ଛନ୍ଦ ବାବୁ ଯେଉଁ ମୁଖବନ୍ଧଟି ଲେଖି ଦେଇଛନ୍ତି, ତାହା ତାଙ୍କର ହୃଦୟବତ୍ତାର ପରିଚୟ ଦିଏ । ତାଙ୍କର କର୍ମବହୁଳ ଜୀବନରେ, ବହୁତ ସମୟ ସେ ଖର୍ଚ୍ଚ କରି, ମୋର ଏ ନାଟକଟିକୁ ଆମୂଳଚୂଳ ମୋ ମୁଖରୁ ଶୁଣିଛନ୍ତି ଏବଂ ତାଙ୍କର ମୁଖବନ୍ଧଟିକୁ ମୁଁ ଜ୍ୟେଷ୍ଠଙ୍କ ତାଙ୍କର ସଦୟ ପୁରସ୍କାର ଓ ଶୁଭେଚ୍ଛା ରୂପେ ଗ୍ରହଣ କରିଛି । ଏଥିଲାଗି ମୋର ନମସ୍କାର ମାତ୍ର ତାଙ୍କର ପ୍ରାପ୍ୟ ।

ବଡ଼ ଭାଇର ସ୍ନେହ ଓ ମମତା ନିକଟରେ, ସାନ ଭାଇର କୃତଜ୍ଞତାର ସ୍ଥାନ କାହିଁ ?

ପୁସ୍ତକର ମୁଦ୍ରଣ କାର୍ଯ୍ୟ କରାଯାଇଛି ବ୍ରହ୍ମପୁରର ଗ୍ରନ୍ଥ ଭଣ୍ଡାରରେ, ଉତ୍ତର ଦକ୍ଷିଣର ଜିଲାରେ । ସେହି ସମୟରେ, ମୁଁ ଥିଲି ପ୍ରଦେଶର ଦକ୍ଷିଣ ପ୍ରାନ୍ତବର୍ତ୍ତୀ କୋରାପୁଟ ଜିଲାରେ । ସୁତରାଂ proof ସଂଶୋଧନ କାର୍ଯ୍ୟ ମୋ ପକ୍ଷରେ କରିବା ଅସମ୍ଭବ ହୋଇ ପଡ଼ିଥିଲା; ଅଧିକନ୍ତୁ ସେ ବିଦ୍ୟାରେ ମୋର କିଛିବି ଦକ୍ଷତା ନାହିଁ । ତେଣୁ ସେହି ଗୁରୁତର କାର୍ଯ୍ୟର ଦାୟିତ୍ବ ସ୍ଵେଚ୍ଛାକ୍ରମେ ନେଇଛନ୍ତି, ପଣ୍ଡିତ ଶ୍ରୀ ନୀଳକଣ୍ଠ ରଥ ଓ ବନ୍ଧୁ ଶ୍ରୀ ଶ୍ରୀଧର ମହାପାତ୍ର । ସେଥିପାଇଁ ସେମାନଙ୍କୁ ମାମୁଲି ଧନ୍ୟବାଦ ଦେବାକୁ ମୋର ଇଚ୍ଛା ନାହିଁ କାରଣ ସେମାନେ ଚିରଦିନ ମୋର ସ୍ନେହୀ ବନ୍ଧୁ ଓ ମଙ୍ଗଳାକାଙ୍କ୍ଷୀ ।

**ନାଟକର ପ୍ରଚ୍ଛଦପଟ**—ମୁଁ ଚିତ୍ରଶିଳ୍ପୀ ନୁହେଁ, ଏ କଥା ନିରାଟ ସତ୍ୟ । କିନ୍ତୁ ପ୍ରଚ୍ଛଦପଟର ପରିକଳ୍ପନାଟା ମୋର ନିଜସ୍ୱ । ମୁଁ ପ୍ରଥମେ ଏହି ପରିକଳ୍ପନାଟି ମୋର ସଖା ମଦନସୁନ୍ଦର ଓ ବନ୍ଧୁ ଶ୍ରୀ ରାମଚନ୍ଦ୍ର ମହାନ୍ତିଙ୍କ ଆଗରେ ପ୍ରକାଶ କରିଥିଲି । ସେମାନେ ମୋର ମୌଳିକତାଟାକୁ ଅନୁମୋଦନ କରିଥିଲେ ଏବଂ ଏଥିପାଇଁ ତରୁଣ ଶିଳ୍ପୀ, ସମ୍ବଲପୁରୀ ବନ୍ଧୁ ଶ୍ରୀ ବଳରାମ ବରାଇଙ୍କ ସାହାଯ୍ୟ ଲୋଡ଼ିଥିଲେ । ବଳରାମ ବାବୁ ମଧ୍ୟ ବହୁ କଷ୍ଟ ଓ ଯତ୍ନ ସ୍ୱୀକାର କରି ଚିତ୍ରଟିକୁ ରୂପଦାନ କରିଥିଲେ । କିନ୍ତୁ ମୋର ଚରମ ଦୁର୍ଭାଗ୍ୟ ଯେ, କେତେକ Technical defect ଯୋଗୁଁ, ଏପରି ଚିତ୍ରର ବ୍ଲକ କରାଯାଇ ପାରିବ ନାହିଁ ବୋଲି ମୁଦ୍ରଣାଳୟର ପରିଚାଳକ ମିସ୍ତ୍ରୀର ମନ୍ତବ୍ୟ ପ୍ରକାଶ କଲେ । ଏ ଦିଗରେ ମୋର କୌଣସି ଅଭିଜ୍ଞତା ନ ଥିବାରୁ, ଅଗତ୍ୟା ମୁଦ୍ରଣାଳୟର ପରିଚାଳକଙ୍କ ମତ ମୋତେ ଗ୍ରହଣ କରିବାକୁ ପଡ଼ିଲା ।

ବଳରାମ ବାବୁଙ୍କ ନିର୍ମିତ ଚିତ୍ରଟି ଯେତେବେଳେ ମନୋନୀତ ହୋଇ ପାରିଲା ନାହିଁ, ମୋର ମନ ଫିକା ପଡ଼ିଗଲା । କିନ୍ତୁ ବନ୍ଧୁ ପ୍ରବର

ମଦନ ସୁନ୍ଦର ଦବଟିବାର ଲୋକ ନୁହଁନ୍ତି । ତାଙ୍କର ସନିର୍ବନ୍ଧ ଅନୁରୋଧରେ ଓ ବନ୍ଧୁ ଘନଶ୍ୟାମଙ୍କର ଆନୁକୂଲ୍ୟରେ, ଚିତ୍ରଶିଳ୍ପୀ ଭଗବାନ ବାବୁଙ୍କ ଉପରେ ଭାର ଦିଆଗଲା, ଯେପରି ସେ, ବଳରାମ ବାବୁଙ୍କର ଚିତ୍ରପରି, ମୋର ପରିକଳ୍ପନା ଅନୁଯାୟୀ ଆଉ ଗୋଟିଏ ନିଖୁଣ ପ୍ରଚ୍ଛଦପଟର ଚିତ୍ର ଆଙ୍କି ଦେବେ । ତାହ ହିଁ ହେଲା । ମୋର କଳ୍ପନା ଓ ବଳରାମ ବାବୁଙ୍କର ପ୍ରଥମ ଚିତ୍ର, ଏହି ଦୁଇର ସମ୍ମିଶ୍ରଣରେ ବର୍ତ୍ତମାନର ପ୍ରଚ୍ଛଦପଟଟି ଗଢ଼ା ଯାଇଛି—ଭଗବାନ ବାବୁଙ୍କ ହାତରେ ! ଅବଶ୍ୟ ଚିତ୍ରଟିକୁ ପରିମାର୍ଜିତ କରିବାକୁ ଯାଇ, ଭଗବାନ ବାବୁ ତାଙ୍କର ନିଜର କଳ୍ପନା କିଛି ଅଧିକା ଯୋଖି ଦେଇଛନ୍ତି ।

ବନ୍ଧୁ ବଳରାମଙ୍କର ପ୍ରଚ୍ଛଦପଟଟିକୁ କାରବାର କରି ନ ପାରିବା ଯୋଗୁଁ ଏତିକି ମାତ୍ର ମୋର କୈଫିୟତ୍ ! ସେଥିଲାଗି ମୁଁ ଦୁଃଖିତ ମଧ୍ୟ । ତଥାପି ବଳରାମ ବାବୁଙ୍କର ନିସ୍ୱାପର ସହୃଦୟତାକୁ ମୁଁ ଭୁଲି ପାରିବ ନାହିଁ । ମୋର ଏତିକି ମାତ୍ର ସାନ୍ତ୍ୱନା ଯେ ଚିତ୍ରଟି ମଧ୍ୟରେ 'B' ଅକ୍ଷରଟି ଅଛି ଶିଳ୍ପୀର ନାମ ରୂପେ—ଯାହାର ଅର୍ଥ, ମୋ ନିକଟରେ, ବଳରାମ ଓ ଭଗବାନ ।

ଏତିକିରେ "ନିଜ କଥା" ଶେଷ କଲି ।

ବାକି ଯାହା କଥା ଅଛି, ତାହା ନିଜେ "ଭଗ୍ନ କବି" କହିବେ ।
ଦେଶର ସମ୍ପତ୍ତି ସେ । ଏଣିକି ତାଙ୍କର ଦାୟିତ୍ୱ ନେଉ-ମୋ ଦେଶ ।

କୋରାପୁଟ
ନାଗର ଅମାବାସ୍ୟା
୧୫-୨-୧୯୫୦

ବିନୀତ
—ଦେବେନ୍ଦ୍ର—

# ମୁଖବନ୍ଧ

ଉପେନ୍ଦ୍ର ଭଞ୍ଜ ଓଡ଼ିଆ କବିଙ୍କ ଭିତରେ ସମ୍ରାଟ । କୋଣାର୍କଶିଳ୍ପସ୍ଥାପତ୍ୟର ଯେପରି ପଟାନ୍ତର ନାହିଁ, ଉପେନ୍ଦ୍ରଙ୍କ କବିତାର ସେହିପରି ତୁଳନା ନାହିଁ । ବ୍ରିଟିଶ୍‌ମାନେ ଓଡ଼ିଶାରେ ଯଦି ରାଜତ୍ୱ କରି ନ ଥାନ୍ତେ ଓ ସେମାନଙ୍କ କାବ୍ୟ କବିତାକୁ ଗ୍ରହଣ କରି ରଚିତ ହୋଇଥିବା ବଙ୍ଗଳା କାବ୍ୟ କବିତା ଆଦର୍ଶରେ ଯଦି ଓଡ଼ିଆ କାବ୍ୟ କବିତା ପ୍ରଣୀତ ହୋଇ ନ ଥାନ୍ତା, ତେବେ ଓଡ଼ିଶାର ଉଚ୍ଚଶିକ୍ଷିତ ଲୋକେ ଆଜି ଉପେନ୍ଦ୍ରଙ୍କୁ ନିଜର ଗଣ୍ଠିଧନ କରି ବସିଥାନ୍ତେ । ସାହିତ୍ୟ ଜୀବନର ମୁକୁର । ଉପେନ୍ଦ୍ରଙ୍କ କାବ୍ୟ କବିତାରେ କଳିଙ୍ଗକୃଷ୍ଟି ତାର ପ୍ରକୃତ ସ୍ୱରୂପପାଇଅଛି । କଳିଙ୍ଗ କୃଷ୍ଟି ପ୍ରତି ଯେଉଁମାନେ ବୀତସ୍ପୃହ, କେବଳ ସେହିମାନେ ଆଜି ଉପେନ୍ଦ୍ରଙ୍କ ପ୍ରତି ଓ ତାଙ୍କ କାବ୍ୟ କବିତା ପ୍ରତି ବିମୁଖ ।

ଖ୍ରୀଷ୍ଟିୟାନ୍ ରାଜତ୍ୱର ଅବସାନ ପରେ ଦେଶରେ ଜାତୀୟ ସରକାର ପ୍ରତିଷ୍ଠିତ ହୋଇଅଛି । ଏଣିକି ଜାତୀୟ କୃଷ୍ଟିର ନିଶ୍ଚୟ ପୁନରଭ୍ୟୁଦୟ ଘଟିବ ।

ଆଜି ଆୟୁଷ୍ମାନ୍ ଶ୍ରୀମାନ୍ ଦେବେନ୍ଦ୍ର କୁମାର ସିଂହ, ବି. ଏ. ଉପେନ୍ଦ୍ରଙ୍କର ଜୀବନ ଚରିତ ସହିତ ନିଜ କଳ୍ପନାକୁ ମିଶାଇ "ଭଞ୍ଜ କବି" ନାମକ ଏହି ଯେଉଁ 'ଉପଭୋଗ୍ୟ ସାରସ୍ୱତ ସାମଗ୍ରୀ ପ୍ରସ୍ତୁତ କରି ଅଛନ୍ତି, ତାହା ପୂର୍ବସୂଚିତ ପୁନରଭ୍ୟୁଦୟର ନିଦର୍ଶନ । ଆଗରୁ ଆଉ ଜଣେ ଯୁବକ ନାଟ୍ୟକାର ଶ୍ରୀମାନ୍ ମନୋରଞ୍ଜନ ଦାସ, ବି. ଏ. କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ନାମକ ଖଣ୍ଡିଏ ନାଟକ ପ୍ରଣୟନ କରି "ଓଡ଼ିଶା ଥିଏଟରସ୍"

ରଙ୍ଗମଞ୍ଚରେ ଅଭିନୟ କରାଇ ଥିଲେ । ଉପେନ୍ଦ୍ର ଭଞ୍ଜଙ୍କର ଜାତି ଉପରେ ଏତେକ ଐନ୍ଦ୍ରଜାଲିକ ପ୍ରଭାବ ଯେ, ସତ୍ୟ ହେଉ ବା କଳ୍ପନା ହେଉ, ତାଙ୍କ ନାମରେ ଯାହା ଚଳାଇ ଦେବ, ଜାତି ତାହା ଗ୍ରହଣ କରି ଯିବାକୁ ପ୍ରସ୍ତୁତ । କେତେ କେତେ ମଧ୍ୟ ବିଶ୍ୱାସ କରିବାକୁ ଆରମ୍ଭ କରିଅଛନ୍ତି ଯେ କୌଣସି ଦେବଦାସୀର ଲାସ୍ୟ ସମ୍ଭାର ଉପେନ୍ଦ୍ରଙ୍କ କବିଜୀବନ ପ୍ରେରଣାର ଉତ୍ସ ।

ଯାହା ହେଉ ଶ୍ରୀମାନ୍ ଦେବେନ୍ଦ୍ର କୁମାର ସିଂହ ଉପେନ୍ଦ୍ରଙ୍କୁ ସକଳ ପ୍ରକାର କଳଙ୍କରୁ ମୁକ୍ତ କରି ଆଦର୍ଶ ରାମ-ଭକ୍ତ ମହାକବିରୂପରେ ଚିତ୍ର କରିଅଛନ୍ତି । ଉପେନ୍ଦ୍ର ଭଞ୍ଜ ରାମତାରକ ମନ୍ତ୍ର ସିଦ୍ଧ କରିଥିଲେ । "ତାରକ ମନ୍ତ୍ର ପରସାଦେ. କବିପଣଟି ମୋର ଉଦେ ।" ଅତୀବ ରସାଳ ପ୍ରେମ କାବ୍ୟ ଲେଖି ଅଛନ୍ତି ବୋଲି ସେ କାମପରତନ୍ତ୍ର ଥିଲେ ଏହା ଯେଉଁମାନେ ବିଶ୍ୱାସ କରନ୍ତି ସେମାନେ କଳାଙ୍ଗ ସୃଷ୍ଟିର ସ୍ୱରୂପ ଅବଗତ ନୁହନ୍ତି । ଶ୍ରୀମାନ୍ ଦେବେନ୍ଦ୍ର କୁମାରଙ୍କ ଚରିତ୍ର ଚିତ୍ରଣ ଯଥାର୍ଥ ହୋଇ ଅଛି । କଳାଙ୍ଗ ଭାରତୀଙ୍କର ପରମାନୁଗୃହୀତ ତନୟଙ୍କର ଚରିତ୍ର ଅସୂୟା-ପରବଶ ସମାଲୋଚକମାନଙ୍କ ଦ୍ୱାରା ବିକୃତ ରଙ୍ଗରେ ରଞ୍ଜିତ ହୋଇ ଆସୁଥିବାରୁ, ତାଙ୍କ ପ୍ରତିଭାମୁଗ୍ଧ ବ୍ୟକ୍ତିମାନେ ଯେଉଁ ବ୍ୟଥା ଅନୁଭବ କରୁଥିଲେ, ଏ ନାଟକ ସେ ବ୍ୟଥା ସମ୍ପୂର୍ଣ୍ଣଭାବରେ ଅପନୋଦନ କରିବ ।

ପ୍ରତିଭାଶାଳୀ ବ୍ୟକ୍ତିମାନେ ଜଗତରେ ଅସୂୟାର ପାତ୍ର ହୋଇଥାନ୍ତି । ବଙ୍ଗୀୟ ଅଧ୍ୟାପକ ସ୍ୱର୍ଗତ ବିଜୟଚନ୍ଦ୍ର ମଜୁମଦାର ଉପେନ୍ଦ୍ରଙ୍କ ପ୍ରତିଭା ଓ ବ୍ୟକ୍ତିତ୍ୱକୁ ଖର୍ବ କରି ଚିତ୍ର କରିବାର ପ୍ରୟାସ ରଖି, ତାଙ୍କ ଚରିତ୍ର ସମ୍ପର୍କରେ ନାନା କାଳ୍ପନିକ କଥାର ଅବତାରଣା କରିଅଛନ୍ତି । ଏ ନାଟକ ପାଠ କଲେ ବା ଅଭିନୟ ହେବାର ଦେଖିଲେ, ଉପେନ୍ଦ୍ର ଭଞ୍ଜଙ୍କ ଚରିତ୍ର ସମ୍ବନ୍ଧରେ ଏ ସୂତ୍ରରେ ପୋଷିତ ଧାରଣା ନିଶ୍ଚୟ ଅପସୃତ ହୋଇଯିବ । ସବୁ ବିଷୟର ପ୍ରକୃତ ତଥ୍ୟ "ଲୋକହୃଦୟକୁ ଜାଳ"ଙ୍କୁହିଁ ଜଣା । କିନ୍ତୁ ଏହା ନିଃସନ୍ଦେହ ଯେ ସ୍ୱର୍ଗତ ବିଜୟଚନ୍ଦ୍ର ମଜୁମଦାର ଓ ତାଙ୍କ ଶିଷ୍ୟମାନେ ଜାଣିଶୁଣି ସତ୍ୟର ଅପଲାପ କରିଅଛନ୍ତି । ତାଙ୍କ ସମାଲୋଚନା ଯେ ବିଦ୍ୱେଷ ଓ ଅଜ୍ଞତାର ଉଦ୍‌ଗାର, ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଶ୍ରୀମାନ୍ ଦେବେନ୍ଦ୍ର କୁମାରଙ୍କ ଭାଷା କମନୀୟ ଓ ବହୁସ୍ଥଳରେ କବିତାର ରସାଣରେ ମନୋହର । ମୁଁ ନାଟକଟିକୁ ଆମୂଳଚୂଳ ତାଙ୍କ ପାଟିରୁ ଶୁଣିଛି । ଭାଷାରେ କୁତ୍ରାପି ବର୍ଜ୍ଜନୀୟତା ଦେଖିବାକୁ ପାଇନାହିଁ ।

ନାଟକଟି ଦୀର୍ଘ ଏବଂ ନାଟକର ବର୍ଣ୍ଣନା ପୁଷ୍କଳ । ଆଧୁନିକ ନାଟକମାନଙ୍କ ପରି ଅଢ଼େଇ ବା ତିନିଘଣ୍ଟା ଭିତରେ ଏହାର ଅଭିନୟ ସରିଯିବା ସମ୍ଭବ ନୁହେଁ, ତେଣୁ ଏହା ପାଠ୍ୟ ସାହିତ୍ୟ ହେବା ନିମନ୍ତେ ଅତ୍ୟନ୍ତ ଉପଯୋଗୀ । ଏହାକୁ ଦୃଶ୍ୟ ସାହିତ୍ୟ କରିବାକୁ ହେଲେ, ଏଥିରୁ କେତେକ ଅଂଶ ବାଦ୍ ଦେବାକୁ ହେବ । ପାଞ୍ଚଟି ଅଙ୍କ ବିଶିଷ୍ଟ ଏ ନାଟକରେ ଛବିଶଟି ଦୃଶ୍ୟ ରହିଅଛି ।

ତାରିଣୀଚରଣ ରଥଙ୍କ ଘୁମୁସର ଇତିହାସ ଓ କବିବର ଚିନ୍ତାମଣି ମହାନ୍ତିଙ୍କ ଘୁମୁସର କାବ୍ୟରୁ ନାଟକର କଥାବସ୍ତୁ ପ୍ରଧାନତଃ ସଂଗୃହୀତ ହୋଇଛି । କଳ୍ପନାର ବିଳାସ ଯେ ନାହିଁ, ଏହା ନୁହେଁ । କିନ୍ତୁ ଐତିହାସିକ ସତ୍ୟର ବିଶେଷ ଅପଳାପ ଘଟି ନାହିଁ । ଏ ଧରଣର ନାଟକ ଲେଖିବାକୁ ହେଲେ କିମ୍ବଦନ୍ତୀର ଆଶ୍ରୟ ନେବାକୁହିଁ ପଡିଥାଏ । ପୁନଶ୍ଚ ଦୀନକୃଷ୍ଣ ଯଥାର୍ଥ କହିଅଛନ୍ତି – "କବି ଯେ ସତ ମିଛ କରି କହନ୍ତି,

କବିତା ଗୁରୁତ୍ୱରେ ମନ ମୋହନ୍ତି ।"

ଏଥିରେ ପତ୍ନୀଙ୍କ ଅନୁରାଗର ପରୀକ୍ଷା ନିମନ୍ତେ ଉପେନ୍ଦ୍ର ଯାହା କରିଥିବାର ବର୍ଣ୍ଣିତ ଅଛି, ଅଭିମନ୍ୟୁଙ୍କ ସମ୍ପର୍କରେ ଠିକ୍ ତାହା ଲୋକମୁଖରେ ଶୁଣାଯାଇଥାଏ । ଏ ଧରଣର ସାହିତ୍ୟ ଲୋକଶ୍ରୁତି ଦ୍ୱାରା ପ୍ରଭାବିତ ଓ ରଞ୍ଜିତ ହେବା ଏକାନ୍ତ ସ୍ୱାଭାବିକ । ଉପେନ୍ଦ୍ର ଭଞ୍ଜଙ୍କର ଦୁଇ ସ୍ତ୍ରୀ, କସ୍ତୁରିକା ଓ ମାଳବିକା ବୋଲି ନାଟ୍ୟକାର ପ୍ରତିପାଦିତ କରିଅଛନ୍ତି । ନାମ ଦୁଇଟି କାଳ୍ପନିକ ।

ନାଟକର ଚରିତ୍ର ଚିତ୍ରଣ ଦକ୍ଷ ଭାବରେ ସମ୍ପାଦିତ ହୋଇଅଛି । ଉପେନ୍ଦ୍ର ଭଞ୍ଜଙ୍କ ସମସାମୟିକ ଘଟନାବଳୀ ଦୈବାତ୍ ଏତେ ବିଚିତ୍ର ଯେ ନାଟକ ପାଇଁ ତହିଁରୁ ନାୟକ, ଉପନାୟକ, ନାୟିକା ଓ ଉପନାୟିକା,

ଆଦ ସଗନ୍ଧ କଶବା ଆଦୌ କଷ୍ଟକର ନୁହେଁ । ନାଟକର ସୈନ୍ତାନମାନେ ମଧ୍ଯ ସହଜପ୍ରାପ୍ୟ ହୋଇ ଅଛନ୍ତି । ନାଟ୍ୟକାରଙ୍କ ଏଥିପାଇଁ କଳ୍ପନାର ସାହାଯ୍ୟ ନେବାକୁ ହୋଇନାହିଁ । ନାଟକୀୟ ବ୍ୟକ୍ତିମାନଙ୍କ ଭିତରୁ ପ୍ରାୟ ସମସ୍ତେ ଐତିହାସିକ ପୁରୁଷ ବା ସ୍ତ୍ରୀ । ମନ୍ତ୍ରୀଣୀ ବେଶ୍ୟା ପଶ କେତେ କେତେ କାଳ୍ପନିକ ସୃଷ୍ଟି ହୋଇପାରନ୍ତି । ଇତିହାସରେ ମଣ୍ଡା, ଚମ୍ପାନାମୀ ଓ ଦାସୀଙ୍କର ଉଲ୍ଲେଖ ରହିଅଛି ।

**ଉପେନ୍ଦ୍ର ଭଞ୍ଜ**—ଘୁମୁସର ରାଜବଂଶ ରୂପକ ପଙ୍କିଳ ସରୋବରର ସେ ଅମଳ ତାମରସ । ଭଞ୍ଜବଂଶର ଯାବତୀୟ କବିପ୍ରତିଭା ଧୈର୍ଯ୍ୟ,ପରାକ୍ରମ ଓ ଔଦାର୍ଯ୍ୟର ସେ ପ୍ରତିମୂର୍ତ୍ତି । ବିମଳ ଦାମ୍ପତ୍ୟପ୍ରେମ ଓ ରାମଭକ୍ତିରେ ତାଙ୍କ ବିଶାଳ ହୃଦୟ ପରିପୂର୍ଣ୍ଣ ଥିଲା । ତୁଚ୍ଛ ସିଂହାସନ-ମୋହ କ୍ଷଣକ ପାଇଁ ହେଲେ ସୁଦ୍ଧା ତାଙ୍କ ହୃଦୟରେ ଛାୟାପାତ କରି ନାହିଁ । ବାରମ୍ବାର ଅର୍ପିତ ହୋଇଥିଲେ ସୁଦ୍ଧା କଳିଙ୍ଗର ହୃଦୟ-ସମ୍ରାଟ ଘୁମୁସରର କଣ୍ଟକିତ ମୁକୁଟ ପରିଧାନ କରି ନିଜକୁ ଖର୍ବ କରି ନାହାନ୍ତି । ବୈଦେହୀଶ ବିଳାସ, ଲାବଣ୍ୟବତୀ ଓ ପ୍ରେମସୁଧାନିଧିର କବି ହେବାର ଗୌରବ ଆଗରେ ସିଂହାସନ ଯେ କେତେ ତୁଚ୍ଛ, ତାହା ସେ ଜାଣିଥିଲେ । ତେଣୁ କଳିଙ୍ଗ ଭାରତୀଙ୍କ ପ୍ରଦତ୍ତ ମହାର୍ଘ ମୁକୁଟ ଲାଭ କରି ଘୁମୁସର ଲକ୍ଷ୍ମୀଙ୍କ ଅର୍ପିତ ତଥାକଥିତ ସୌଭାଗ୍ୟକୁ ସେ ଜୁଗୁପ୍ସା ସହକାରେ ପ୍ରତ୍ୟାଖ୍ୟାନ କରିଥିଲେ । ନାଟ୍ୟକାର କବିସମ୍ରାଟଙ୍କର ଅନ୍ତିମ ଜୀବନକୁ ଆଧ୍ୟାତ୍ମିକ ଗୌରବରେ ଯେପରି ଉଜ୍ଜ୍ୱଳ କରି ଚିତ୍ର କରିଅଛନ୍ତି, ତାହା ଏକାନ୍ତ ସମୀଚୀନ ବୋଧ ହେଉଅଛି । ଦ୍ୱାଦଶାବଧାନିତ୍ୱର ଚରମ ପରାକାଷ୍ଠା ତାଙ୍କରି ପ୍ରତିଭା ପକ୍ଷରେ କେବଳ ସମ୍ଭବ । ଇଂରାଜ କବିଙ୍କ ଭାଷାରେ କୁହା ଯାଇପାରେ—

"So sepulchred and in such pomp dost lie,
That kings for such a tomb would wish to die."

**Milton on Shakespear.**

କିନ୍ତୁ ଗ୍ରାମଭିକ୍ତିର ପରିଣତ ଜଡ଼ଦାୱା ଇଂରେଜ କବିଙ୍କ ଦୁରଧିଗମ୍ୟ ! ତାଙ୍କ ଭାଷାରେ କବିଙ୍କ ପାର୍ଥିବ ଯଶ ମାତ୍ର ପ୍ରକଟିତ ହୋଇଅଛି । ଏ ଉକ୍ତିକୁ ଉପେନ୍ଦ୍ରଙ୍କ ପ୍ରତି ପ୍ରଯୁଜ୍ୟ କଲେ ମଧ୍ୟ, ସେ ଯେଉଁ ପରଗତ ଲାଭ କରିଥିବାର ସମ୍ଭବ, ତାର କ୍ଷୀଣ ସୂଚନା ମଧ୍ୟ ଏଥିରେ ଦିଆଯାଇ ପାରିବ ନାହିଁ ।

**କସ୍ତୁରୀକା ଓ ମାଳବିକା**—ଏ ଦୁଇ ପତ୍ନୀ ଯଥାକ୍ରମେ 'ପ୍ରେମ ସୁଧାନିଧି' ଓ 'ଲାବଣ୍ୟବତୀ' ପାଇଁ ଉପେନ୍ଦ୍ର ଭଞ୍ଜଙ୍କୁ ପ୍ରେରଣା ଦେଇ ଥିବା ଖୁବ ସମ୍ଭବ । ଭଞ୍ଜଙ୍କ ପ୍ରେମ କବିତା କାଳିଦାସଂକ କୃତିକୁ ମଧ୍ୟ ମ୍ଳାନ କରିଦେଇ ଅଛି । ବିଶ୍ୱସାହିତ୍ୟର ଏ ଅନୁପମ ସମ୍ଭାରର ସୃଷ୍ଟି ପାଇଁ, କସ୍ତୁରିକା ଓ ମାଳବିକା କବିଙ୍କ ଜୀବନରେ ପ୍ରେମର ମନ୍ଦାକିନୀ ଛୁଟାଇ ଦେଇଥିଲେ । କବି ବିରହର ମୁମୁର୍ର ଦାହରେ ଦଗ୍ଧ ହୋଇ ନ ଥିଲେ, ଏ ଧରଣର ବିଶ୍ୱବନ୍ଦ୍ୟ ପ୍ରେମକାବ୍ୟକବିତା ଲେଖି କବିସମ୍ରାଟ ଆଖ୍ୟା ଅର୍ଜନ କରି ପାରି ନ ଥାନ୍ତେ । ନାଟ୍ୟକାରଙ୍କ ବର୍ଣ୍ଣନାନୁଯାୟୀ ମାଳବିକା ଯଦି ପ୍ରକୃତରେ ଅକାଳରେ ପ୍ରାଣ ହରାଇଥାନ୍ତି, ତାହାହେଲେ କାବ୍ୟତତ୍ତ୍ୱାର୍ ଗ୍ଳାନିତ ହୋଇ ଭଞ୍ଜ ମହାକବି ଯେ ବିଶ୍ୱବରେଣ୍ୟ ହେବାକୁ ନିଜର ପଥ ନିଜେ ପରିଷ୍କାର କରି ଦେଇଥିଲେ, ଏଥିରେ ସନ୍ଦେହର ଅବକାଶ ନାହିଁ ।

**ଧନଞ୍ଜୟ ଭଞ୍ଜ**- "ରଘୁନାଥ ବିଳାସ" କବିଙ୍କର ପରିଚୟ ଅନାବଶ୍ୟକ । ଉପେନ୍ଦ୍ର ଏହାଙ୍କର ଯୋଗ୍ୟ ଦାୟାଦ । ରଘୁନାଥ ବିଳାସ ପରମ୍ପରାର ଅପରିହାର୍ଯ୍ୟ ପରିଣତ ବୈଦେହୀଶ ବିଳାସ । ଧନଞ୍ଜୟ ଏଡ଼େ ବଡ଼ କବି ହୋଇ ମଧ୍ୟ ସୁଶାସକ ଭାବରେ କମ୍ ଯଶସ୍ୱୀ ନ ଥିଲେ । ମନ୍ତ୍ରୀ ଚ୍ରଣୀଙ୍କ ଚକ୍ରାନ୍ତ ଫଳରେ ସେ ନିଜର ଉତ୍ତରାଧିକାରୀ ନିର୍ବାଚନ କରି ନ ପାରି ସର୍ବନାଶର ସମ୍ମୁଖୀନ ହୋଇଥିଲେ । ପରିଶେଷରେ ମନ୍ତ୍ରୀଙ୍କ ବିଷ ପ୍ରୟୋଗରେ ସେ ପ୍ରାଣ ହରାଇଲେ ଏବଂ ଘୁମୁସର ଇତିହାସ ଦୁନପନେୟ କାଳିମାରେ ଅପାର କାଳକୁ କଳଙ୍କିତ ହେଲା । ଧନଞ୍ଜୟଙ୍କର ଶାସକୋଚିତ କଠୋରତା ଥିଲେ ମଧ୍ୟ, ଜିଗୀଷାଶୀଳ ମନୋଭାବ ନ ଥିଲା । ଘନ ଭଞ୍ଜଙ୍କ ନିର୍ବାସନ ସପକ୍ଷରେ ମତ ଦେଇ ସେ ଯେଉଁ ମହା ବିଭ୍ରାଟର ବୀଜ ପ୍ରୋଥିତ କଲେ, ତହିଁରୁ ଉତ୍ଥିତ ମହୀରୁହର ବିଷମୟ ଫଳ ଘୁମୁସରର

ଧ୍ୱଂସ ଆନୟନ ନଲ୍ଲ ଏବଂ ଧନଞ୍ଜୟ୍ନ ନଜେ ତହିଁରୁ ନସ୍ତାର ଲ୍ଭ କର ପାରଲେ ନାହିଁ । ମଣ୍ଡାଙ୍କ ପ୍ରତ ଆଶକ୍ତିରୁ ଜନତ ଦୁର୍ବଳତା ଶେଷକୁ ତାଙ୍କର କାଲ ହେଲ୍ଲ । ତଥାପି ତାଙ୍କର ବାଣୀ ସେବା, ଯୋଗ୍ୟ ପୌତ୍ର ଉପେନ୍ଦ୍ରଙ୍କ ପ୍ରତ ପ୍ରଗାଢ଼ ଅନୁରାଗ ଓ ରସମୟ ହୃଦୟ, ସ୍ୱତଃ ସମସ୍ତଙ୍କୁ ତାଙ୍କ ପ୍ରତ ଆକୃଷ୍ଟ କରେ । ତାଙ୍କ ଦୁର୍ବଳତା ମଧ୍ୟ ପାଠକକୁ ତାଙ୍କ ପ୍ରତ ସହାନୁଭୂତଶୀଳ କରେ ।

**ମଣ୍ଡା**—'ନାରୀ ତୁ ନରକସ୍ୟ ଦ୍ୱାରଂ' ପୂର୍ବକୋରଙ୍କ ଏ ଉକ୍ତି ଏହ ମଣ୍ଡା ରାଣୀଙ୍କ ତୁଲ୍ୟ ନାରୀମାନଙ୍କ ପ୍ରତହିଁ ପ୍ରଯୁଜ୍ୟ । ଘୁମୁସର ଗଗନରେ ମଣ୍ଡା ପ୍ରଳୟର ଧୂମକେତୁ । ଆପାତ ଦୃଷ୍ଟିରେ ଦେଖିଲେ ପୁତ୍ର ନୀଳକଣ୍ଠଙ୍କ ପ୍ରତ ବାତ୍ସଲ୍ୟପରାୟଣା ହୋଇ ସେ ପତଘାତନୀ ହୋଇ ଥିଲେ । କନ୍ତୁ ଏ ପାତକ ମୂଳରେ ପ୍ରକୃତରେ ଥିଲ୍ଲ ତାଂକର ରାଜମାତା ହେବାର ଦୁର୍ବାର ଅଭିଲାଷ । ନଜ ଅଙ୍କ ସଙ୍କେତରେ ଅପଦାର୍ଥ ନୀଳକଣ୍ଠଙ୍କୁ ଚାଳତ କର ଘୁମୁସରର ସର୍ବେସର୍ବା ହେବା ଥିଲ୍ଲ ତାଂକର ପ୍ରକୃତ ପ୍ରୟାସ । ତାଂକର ଚକ୍ରାନ୍ତର ଫଳରେ ଘନଭଞ୍ଜ ନର୍ବାସିତ ହେଲେ ଏବଂ ଗଙ୍ଗାଧର ହେଲେ ସିଂହାସନ ତ୍ୟାଗୀ । ଧନଞ୍ଜୟଙ୍କ ହତ୍ୟା ପରେ ନୀଳକଣ୍ଠ ନଜକୁ ଅକଣ୍ଟକ କରବା ନମନ୍ତେ ଯେଉଁ ନର୍ମମ ରକ୍ତାକ୍ତ କାଣ୍ଡର ଅନୁଷ୍ଠାନ କଲେ, ତାହା ମଧ୍ୟ ଏହ ପତଘାତନୀ ପାପୀୟସୀର ପ୍ରରୋଚନାରେ । ନୀଳକଣ୍ଠଙ୍କ କପାଳରେ ନଜ ହାତରେ ମଣ୍ଡା, ଗଙ୍ଗାଧର ଓ ତାଙ୍କ ପୁତ୍ରର ଛନ୍ନ ମସ୍ତକର ରକ୍ତଟୀକା ଅଂକନ କର ଆତ୍ମପ୍ରସାଦ ଲ୍ଭ କରଥିଲେ । ଏ କଳଂକନୀକୁ ଇତହାସ ଭୁଲ୍ଲ ଯାଇଥିଲେ ଭଲ ହୋଇ ଥାନ୍ତା । ଏ ପାତକନୀର ନାମୋଚ୍ଚାରଣରେ ମଧ୍ୟ ପାପ ସଞ୍ଚାର ହେବାର ଭୟ ରହଅଛ । ବଧାତା ଏହାର ସ୍ୱପ୍ନକୁ ବେଶୀଦନ ସାର୍ଥକ କଲେ ନାହିଁ । ନଜ ହାତର ସ୍ୱର୍ଗ ମୁଦ ଚୂର୍ଣ୍ଣ କର, ମଣ୍ଡା ରୌରବକୁ ପ୍ରସ୍ଥାନ କଲ୍ଲ । ମହାକବ ରାମ ଭକ୍ତ ଉପେନ୍ଦ୍ର ଯେ ମଣ୍ଡାର ପୌତ୍ର ଏ କଥା କଳ୍ପନାକୁ ସୁଦ୍ଧା ଆଣି ହୁଏ ନାହିଁ । ଚମ୍ପା ଓ ଦୁରନ୍ତ ଦନ୍ତା ରୌରବ ପଥରେ ମଣ୍ଡାର ସହଯାତ୍ରୀ ।

**ଚନ୍ଦ୍ରା**—ସୈତାନ୍ ମୂର୍ତ୍ତି ଧରି ଜନ୍ମ ହେଲେ ଯାହା ହେବାର କଥା, ଚନ୍ଦ୍ରା ଠିକ୍ ତାହା । ମଣ୍ଡା ଓ ନୀଳକଣ୍ଠଙ୍କ ଡାହାଣ ହାତ ହୋଇ କାମ କରିବା ତା ପକ୍ଷରେ ଏକାନ୍ତ ସ୍ୱାଭାବିକ ।

**ମଞ୍ଜରିକା**—ଅର୍ଥଲୋଭିନୀ ଗଣିକାର ଅସାଧ୍ୟ ପାପ ସଂସାରରେ ଦୁର୍ଲ୍ଲଭ । ଘନ ଭଞ୍ଜଙ୍କ ନିର୍ବାସନ ଏହି ଦସ୍ୟୁତାନୀର ଛଳନାରେ ସମ୍ପାଦିତ ହୋଇଥିଲା । ମୋହିନୀ ରୂପରେ ମଞ୍ଜରିକା ପାପର ପ୍ରତିମୂର୍ତ୍ତି । ତାହାର ଦୁଷ୍ଟି ସ୍ୱାଳୁ ବୃଦ୍ଧି ପରିଣତି ଯଥାର୍ଥ ହୋଇଛି ।

**ଗଙ୍ଗାଧର**—ସଂସାରରେ ଆଲୋକ ଅନ୍ଧକାରର ଯୁଗପତ୍ ବିଳାସ ଏବଂ ପାପ ପୁଣ୍ୟର ମଧ୍ୟ ଯୁଗପତ୍ ବିହାର । ଦୁର୍ବୃତ୍ତ ନୀଳକଣ୍ଠଙ୍କ ଭ୍ରାତା ପୁଣି ଦେବୋପମ ଗଙ୍ଗାଧର !!! ଗଙ୍ଗା ଓ କର୍ମନାଶାଙ୍କର ଏକତ୍ରାବସ୍ଥିତି । ପିତୃଭକ୍ତ ଗଙ୍ଗାଧର ସ୍ୱେଚ୍ଛାରେ ସିଂହାସନତ୍ୟାଗୀ । ତାଙ୍କ ତୁଲ୍ୟ ପୁତ୍ର, ଭ୍ରାତା ଓ ସ୍ୱଦେଶ ପ୍ରେମିକ କଳିକାଳରେ ଦୁର୍ଲ୍ଲଭ । ଅଥଚ ଏହି ପୁଣ୍ୟାତ୍ମାଙ୍କର ରକ୍ତ ହେଲା, ନୀଳକଣ୍ଠଙ୍କ କପାଳରେ ମାତୃଦତ୍ତ ରାଜଟୀକା । ମୋର ମନେ ହୁଏ, ଏହାଙ୍କର ପବିତ୍ର ରକ୍ତରେ ରଞ୍ଜିତ ହେବା ଫଳରେ ଘୁମୁସର ଚିରକାଳକୁ ହତଶ୍ରୀ ହେଲା ଏବଂ ଘୁମୁସର ରାଜଲକ୍ଷ୍ମୀ ପରେ ଚିର ନିର୍ବାସନ ବରଣ କଲେ ।

**ଗୋବିନ୍ଦ ଭଞ୍ଜ**—ଏହାଙ୍କ ପୁତ୍ର ଘନ ଭଞ୍ଜଙ୍କ ନିର୍ବାସନ ପରେ ମଣ୍ଡିଙ୍କ ଚକ୍ରାନ୍ତ ମନ୍ତ୍ରବୃକ୍ଷ ଫଳ ଧରି ଘୁମୁସରକୁ ଛାରଖାର କରିଥିଲା । ପିତା ହୋଇ ମଧ୍ୟ ରାଜଧର୍ମର ଗୌରବ ରକ୍ଷା ନିମନ୍ତେ ଏ ପୁତ୍ରଙ୍କୁ ନିର୍ବାସନ ଦଣ୍ଡ ଦେବାକୁ କୁଣ୍ଠିତ ହୋଇ ନ ଥିଲେ । ସହୋଦର ଧନଞ୍ଜୟଙ୍କର ଏ ଥିଲେ ଡାହାଣ ହାତ । ଏହାଙ୍କ ରାଜତ୍ୟାଗ ପରେ ଘୁମୁସର ପତନର ପଥ ପରିଷ୍କୃତ ହୋଇଥିଲା । ଏହାଙ୍କ ଚରିତ୍ରରେ କଠୋରତା ଓ କୋମଳତାର ଅପୂର୍ବ ସମାବେଶ ।

ଘନ ଭଞ୍ଜଙ୍କ କର୍ତ୍ତୃତ୍ୱରେ ଘୁମୁସର ଇତିହାସ ଯେପରି ପରିବର୍ତ୍ତିତ ଗତି ଧରିଲା ଏବଂ ଭଗ୍ନ ମନୋରଥ ଦୁର୍ବୃତ୍ତ ନୀଳକଣ୍ଠ ଯେପରି ଅନୁତାପ

ଭୋଗି ପରିଶେଷରେ ଉପେନ୍ଦ୍ରଙ୍କ ଆଶ୍ରୟରେ ଶେଷ ଜୀବନ କଟାଇ ନିଜର ପାପ ପ୍ରକ୍ଷାଳନର ଆଶ୍ୱାସ କଲେ, ନାଟ୍ୟକାର ତାହା ଖୁବ୍ ଚମତ୍କାର ଭାବରେ ବର୍ଣ୍ଣନା କରିଅଛନ୍ତି । ଘୁମୁସରର ରକ୍ତାକ୍ତ ଇତିହାସ ରୂପକ କଣ୍ଟକିତ ଉପବନରେ ଉପେନ୍ଦ୍ର ରୂପକ ଯେଉଁ ଦିଗଦିଗନ୍ତ ଆମୋଦକାରୀ ପାରିଜାତ ପ୍ରସ୍ଫୁଟିତ ହୋଇଥିଲା, ତହିଁର ଦିବ୍ୟ ସୁରଭିରେ ନାଟ୍ୟକାର ଶ୍ରୀମାନ୍ ଦେବେନ୍ଦ୍ର କଳିଙ୍ଗ ଭାରତୀଙ୍କ ଭବନକୁ ସୁରଭିତ କରି ଅଛନ୍ତି । ତାଙ୍କର ଏ କୃତି ତାଙ୍କୁ ଅକ୍ଷୟ ଯଶ ପ୍ରଦାନ କରିବ । ତାଙ୍କ ଲେଖନୀ ଧନ୍ୟ ହୋଇଛି । ସେ ଧନ୍ୟ ହୋଇ ଅଛନ୍ତି । ମୁଁ 'ଭଞ୍ଜ କବି' ନାମକ ଏ ଅମୂଲ୍ୟ କୃତିର ମୁଖବନ୍ଧ ଲେଖିବାର ଗୌରବ ପ୍ରଦତ୍ତ ହୋଇ ଧନ୍ୟ ହୋଇଅଛି, କାରଣ ଉପେନ୍ଦ୍ର ହିଁ କବି ଜୀବନରେ ମୋର ଗୁରୁ । ମୁଁ ତାଙ୍କୁ ଲକ୍ଷ୍ୟ କରି ଲେଖିଛି—

"ଭଞ୍ଜ କଞ୍ଜ ଚରଣ ମୋ ମଉଳି ଶରଣ
ଥିଲି ଉତ୍କଳ ତୀର୍ଥ ପୂର୍ଣ୍ଣ୍ୟ,
ନେତ୍ର ନୀରେ ପଖାଳି- କବିତା ପୁଷ୍ପାଞ୍ଜଳି
ତହିଁ ଅରପି ହେବି ଧନ୍ୟ,
ହେ ବାଗୀଶ୍ୱର,
ସେ ରାଜରାଜେଶ୍ୱର ମୋର,
କରଦ ପ୍ରଜା ମୁଁ ମାତର;
କୋଣ୍ଠିର ହେବା ଯୋଗ କରିଅ ବାରେ ଶ୍ଳେଶ
ଗଡ଼ କୁଳଡ଼ ଅଭ୍ୟନ୍ତର,
ହେ ବାଗୀଶ୍ୱର !

**ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକ**

କଳିଙ୍ଗ ଭାରତୀ ଭବନ, କଟକ

୭-୪-୪୯

# ଭଞ୍ଜ ସାହିତ୍ୟ ପରିଷଦ, ରସଲକୁଣ୍ଡାର
# ମତାମତ

"ଓଡ଼ିଶାର ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଏବଂ ଅଭିନେତା ଶ୍ରୀ ଦେବେନ୍ଦ୍ର କୁମାର ସିଂହଙ୍କର ପତ୍ରାବଳୀ ଆଜି ଏ ସଭାରେ ପଠନ କରାଗଲା । ଦେବେନ୍ଦ୍ର ବାବୁ ଘୁମୁସରର ଅତୀତ ଘଟଣାବଳୀକୁ ନିପୁଣ ଭଙ୍ଗୀରେ ଯେଉଁ ଅଭିନବ ରୂପରେଖ ଦେଇ "ଭଞ୍ଜ କବି" ନାଟକର ପ୍ରାଣ ପ୍ରତିଷ୍ଠା କରି ପାରିଛନ୍ତି, ସେଥିପାଇଁ ଏ ସଭା ଦେବେନ୍ଦ୍ର ବାବୁଙ୍କୁ ହୃଦୟର ଗମ୍ଭୀରତମ ପ୍ରଦେଶରୁ କୃତଜ୍ଞତା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ଶତ ଧନ୍ୟବାଦ ନ ଦେଇ ରହିପାରୁ ନାହିଁ । ଘୁମୁସର ଇତିହାସରେ ଦେବେନ୍ଦ୍ର ବାବୁଙ୍କ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ, ଏହା ସ୍ୱୀକାର କରିବା ବାହୁଲ୍ୟ ମାତ୍ର । "ଭଞ୍ଜ କବି" ନାଟକ ଦୃଶ୍ୟକାବ୍ୟ ନୁହେଁ, ଏହା ଗୋଟିଏ ମଣି ମାଣିକ୍ୟ ! ଉତ୍କଳ ସାରସ୍ୱତ ଭଣ୍ଡାରକୁ, ଦେବେନ୍ଦ୍ର ବାବୁଙ୍କର ଏହା ଗୋଟିଏ ଅମୂଲ୍ୟ ଦାନ ।"

**ଶ୍ରୀ ମାଗୁଣି ଦାସ**
ସମ୍ପାଦକ
ଭଞ୍ଜ ସାହିତ୍ୟ ପରିଷଦ

# କୁଶୀଳବ

## ପୁରୁଷ-

ଶ୍ରୀ ରଘୁନାଥ — — ଛତ୍ରବେଣୀ ଓଡ଼ଗାଁର ରଘୁନାଥ ବା ରାମଚନ୍ଦ୍ର ।
ଶ୍ରୀ ଦିବ୍ୟସିଂହ ଦେବ — ଉତ୍କଳର ଗଜପତି ସମ୍ରାଟ ।
ପୁରୁଷୋତ୍ତମ ମାନ୍ଧାତା — ନୟାଗଡ଼ର ରାଜା ଓ କବି ଉପେନ୍ଦ୍ରଙ୍କର ଶାଳକ ।
ରାମଚନ୍ଦ୍ର ସିଂହ ଦେବ — ଧରାକୋଟର ସାମନ୍ତ ରାଜା
ଧନଞ୍ଜୟ ଭଞ୍ଜ — — ଘୁମୁସରର ବୃଦ୍ଧ ରାଜା ଓ କବି ।
ଗୋବିନ୍ଦ ଭଞ୍ଜ — — ଧନଞ୍ଜୟଙ୍କର କନିଷ୍ଠ ଭ୍ରାତା ଓ ଆଟରାଜା ।
ଗଙ୍ଗାଧର — — ଘୁମୁସରର ଜ୍ୟେଷ୍ଠ ରାଜକୁମାର ।
ଜଗନ୍ନାଥ ଓ ହରିଶରଣ — ଗଙ୍ଗାଧରଙ୍କର କନିଷ୍ଠ ଭ୍ରାତା ଦ୍ୱୟ ।
ନୀଳକଣ୍ଠ — — ମଣ୍ଡାରାଣୀଙ୍କ ଗର୍ଭଜାତ ଘୁମୁସର ରାଜକୁମାର ଓ କବି ଉପେନ୍ଦ୍ରଙ୍କର ପିତା ।
ଘନ ଭଞ୍ଜ — — ଗୋବିନ୍ଦ ଭଞ୍ଜଙ୍କର ପୁତ୍ର ।
ଶତ୍ରୁଞ୍ଜୟ — — ପାଟଦେଈ ଓ ଗଙ୍ଗାଧରଙ୍କର ଜ୍ୟେଷ୍ଠପୁତ୍ର ।
ଉପେନ୍ଦ୍ର — — ନୀଳକଣ୍ଠଙ୍କର ପୁତ୍ର ଓ କବିସମ୍ରାଟ । (କେନାମଣି)
ରଣ ଭଞ୍ଜ — — ପାଟଦେଈ ଶତ୍ରୁଞ୍ଜୟଙ୍କର ଶିଶୁପୁତ୍ର ।
ଦନ୍ତା ଦସ୍ୟୁ — — ନୀଳକଣ୍ଠଙ୍କର ବିଶ୍ୱସ୍ତ ସହଚର ଓ ପରେ ସେନାପତି ।
ବୃଷଭାନୁ — — ଘୁମୁସର ରାଜ୍ୟର ବୃଦ୍ଧ ମହାମନ୍ତ୍ରୀ ।
ଅଶ୍ୱତ୍ଥାମା — — ଯୋଗୀ ଓ ଭବିଷ୍ୟଦ୍ ବକ୍ତା ।
ଭୂପତି ପଣ୍ଡିତ — — ଗଜପତି ସମ୍ରାଟଙ୍କର ସଭାକବି ।
ନିରଞ୍ଜନ — — ଧରାକୋଟ ରାଜାଙ୍କର ପାର୍ଶ୍ୱଚର ।
ମାଧବ — — ଉପେନ୍ଦ୍ରଙ୍କର ବିଶ୍ୱସ୍ତ ଭୃତ୍ୟ ।

ଗାଲେଗ୍ର ମୂଠାର କନ୍ଧ ସର୍ଦ୍ଦାର, ଘୁମୁସରର ଗୁପ୍ତଚର, ଧଗ୍ରକୋଟର ଗୁପ୍ତଚର, ପ୍ରହରୀଗଣ, ସୈନିକଗଣ, ବାଦ୍ୟକାରଗଣ, କନ୍ଧ ପାଇକଗଣ, ନାଗରିକ ଗଣ, ଭିକ୍ଷୁକ, ରାଜ ଅନୁଚରଗଣ, ବଡ଼ ପଣ୍ଡା, ମନ୍ଦିର ଶ୍ରୀକରଣ, ପଢ଼ିଆରୀ, ଘାତକ ଦ୍ୱୟ, ଉତ୍କଳ ଦୂତ, ଜନତା, ବାର ଜଣ ପଣ୍ଡିତ, ରାଜ କବିରାଜ, ରାଜଗୁରୁ, ଦେହରକ୍ଷୀଗଣ ।

## ସ୍ତ୍ରୀ

ସନ୍ନ୍ୟାସିନୀ — — ଛଦ୍ମବେଶିନୀ ବାଗ୍‌ଦେବୀ ।

ମଣ୍ଡା ଦେବୀ — — ରାଜା ଧନଞ୍ଜୟଙ୍କର ପ୍ରେୟସୀ ଓ ନୀଳକଣ୍ଠଙ୍କ ଜନନୀ ।

ମାଳବିକା — — ବାଣପୁର ରାଜକେମା ଓ ଲକ୍ଷ୍ମୀନ୍ଦ୍ରଙ୍କର ଦ୍ୱିତୀୟା ପତ୍ନୀ ।

ମାଧବିକା — — ପାଟଦେଇ ଶତ୍ରୁଞ୍ଜୟଙ୍କର ପତ୍ନୀ ଓ ରଣ-ଭଞ୍ଜଙ୍କ ଜନନୀ ।

ମଞ୍ଜରୀକା — — ଘୁମୁସରର ରାଜନର୍ତ୍ତକୀ ।

ଚମ୍ପା — — ବିଧବା ବ୍ରାହ୍ମଣୀନାମ୍ନୀ—ପାତକୀ ।

ନର୍ତ୍ତକୀ — — ଧଗ୍ରକୋଟ ଦରବାରର ନର୍ତ୍ତକୀ ।

ହୀରାବତୀ — — ବିଦୁଷୀ ମାଳୁଣୀ, କବି ଉପେନ୍ଦ୍ରଙ୍କର ଭଗ୍ନୀ-ସମ୍ପର୍କୀୟା ।

ପରିଗ୍ରାହିକାଗଣ, ବ୍ୟଜନଧାରିଣୀଗଣ ।

ପୁରନାରୀଗଣ ।



## —ତୃତୀୟ ଯୁବକ—

ସ୍ୱରଟେ, ନବୀନ ଉତ୍କଳର ପ୍ରଣାମ ଗ୍ରହଣ କର। ଆଜ ତୁମେ ଆମର ଆଖି ଖୋଲି ଦେଇଛ। ଆମେ ଦୁଇଜଣ ଓଡ଼ିଆ ପର୍ଯ୍ୟଟକ ସତ। କିନ୍ତୁ କୁଳଙ୍ଗ ଗଡ଼ର ଏହି ଅବହେଳିତ ଅରଣ୍ୟ ମଧ୍ୟରେ ଏପରି ଗୋଟାଏ ଅଦ୍ଭୁତ ସ୍ୱରଣକୁ ଦେଖିବୁ ବୋଲି ଆଶା ନ ଥିଲା ଆମର। ଆମ ଜାତିର ଶ୍ରେଷ୍ଠ ରାଜର୍ଷିଙ୍କୁ ଉପଯୁକ୍ତ ସମ୍ମାନ ଯେ ଆମେ ଏ ପର୍ଯ୍ୟନ୍ତ ଦେଇପାରି ନାହୁଁ, ସେଥିପାଇଁ ଆମେ ଯଥେଷ୍ଟ ଅନୁତପ୍ତ। ବୃଦ୍ଧ ତୁମେ, ତୁମର ଏ ଛନ୍ଦୋବଦ୍ଧ ବିଳାପ ଆଜ ଆମର ମର୍ମଭେଦ କରିଛି। ତେଣୁ ଆଜ ତୁମର ପଦସ୍ପର୍ଶ କରି ଶପଥ କରୁଛୁଁ ଯେ ତୁମର ଏ କରୁଣ ରାଗିଣୀର ମୂର୍ଚ୍ଛନାକୁ ଆମେ ଆମ ଦେଶର ଜାଗ୍ରତ ଯୁବଶକ୍ତି ନିକଟକୁ ବହିନେବୁ। ପ୍ରତ୍ୟେକ ଓଡ଼ିଆ ଯେପରି ଏଠାକୁ ଆସି ତାର ଜାତିର କବି ସମ୍ରାଟଙ୍କୁ ତାଙ୍କର ଉପଯୁକ୍ତ ସମ୍ମାନ ଦେଇପିବ, ତା'ର ବନ୍ଦୋବସ୍ତ ଆମେ ନିଶ୍ଚୟ କରିବୁ। ଯେ ଦେଶର ଜଣେ ବୃଦ୍ଧ ସ୍ୱରଟେ, ତାର ଜୀବନର ଶେଷାବସ୍ଥାରେ ତାର ଜାତିର କବି ପ୍ରତି ଏତେ ମମତା ଦେଖାଇ ପାରେ, ସେହି ଦେଶର ତରୁଣ ଆମେ, ସେହି ସ୍ୱରଣର ବାଣୀକୁ ନିଶ୍ଚୟ ଅକ୍ଷରେ ଅକ୍ଷରେ ପାଳନ କରିବୁଁ, ହୃଦୟର ଶେଷ ରକ୍ତ ବିନ୍ଦୁ ଦେଇ। ଏହି ଆମର ପ୍ରତିଜ୍ଞା।

## —ବୃଦ୍ଧ—

(ଆନନ୍ଦରେ) ଏତିକିରେ ମୁଁ ମହାତୃପ୍ତ ବାବା। ମାର୍କଣ୍ଡେୟଙ୍କ ପରମାୟୁ ହେଉ ବତ୍ସବୃନ୍ଦ ତୁମ୍ଭେମାନେ। ଜାତିର ବର ପୁତ୍ରମାନଙ୍କୁ ଚିହ୍ନି, ସେମାନଙ୍କର ପୂଜା କରି, ଜଗତକୁ ଦେଖାଇ ଦିଅ ଯେ ତୁମ୍ଭେମାନେ ଓଡ଼ିଆ ବୀରମାନଙ୍କର ଅଯୋଗ୍ୟ ଦାୟାଦ ନୁହଁ। ମୋର ଆଶା, କୁଳଙ୍ଗ ଗଡ଼ର ଏହି ଧ୍ୱଂସାବଶେଷଟା ଯେପରି ଜାତିର ସାରସ୍ୱତ ତୀର୍ଥ ହୋଇ ଉଠେ। ବୁଝିଲ ବାବା ? ଏଣିକି ଏ ସ୍ଥାନ, ଯେପରି ବ୍ୟାଘ୍ର ଭଲ୍ଲୁକର କ୍ରୀଡ଼ାସ୍ଥଳୀ ନ ହୋଇ ଉତ୍କଳର ଗୁଣୀଗଣାଗ୍ରଗଣ୍ୟ ସାହିତ୍ୟ ରଥୀମାନଙ୍କର ପୂଜା ମନ୍ଦିରରେ ପରିଣତ ହେଉ। ଏହି ଏତିକହିଁ ଏହି ବୃଦ୍ଧ ସ୍ୱରଣର କାମନା ଓଡ଼ିଆ ଜାତି ନିକଟରେ।

—୧ମ ଯୁବକ—

ତୁମର ଏହି ମର୍ମବାଣୀକୁ ଆଜଠାରୁ ଜାତି ନିକଟରେ ପ୍ରଚାର କରିବାର ଭାର ନେଲୁ ଆମ୍ଭେମାନେ । ବିଦାୟ—ନମସ୍କାର ।

—ବୃଦ୍ଧ—

[ ହାତ ଉଠାଇ ନମସ୍କାର କରି, ଯୁବକ ଦୁହିଁଙ୍କୁ ଆଲିଙ୍ଗନ କରି, ଅଶ୍ରୁ ବୋଳା କଣ୍ଠରେ କୁଳାଡ଼ଗଡ଼ ଆଡ଼େ ଚାହିଁ, ପୁଣି ଗାଇ ଉଠିଲେ । ]

ଧୀରେ ଚାଲ ପାନ୍ଥ ଏହି ବନ ପଥେ,
ରହିଯାଅ ଏଥି କ୍ଷଣେ,
ନତ କର ମଥା ଏ ଜାତିର କଥା
ଉପେନ୍ଦ୍ର ଭଞ୍ଜ ଚରଣେ,
ବୋଳି ହୁଅ ଅଙ୍ଗେ ଏହି ପଥ ଧୂଳି
କବିର ସମ୍ମାନ ପାଇଁ,
ଭୁଲି ଯାଅ ଶାନ୍ତି ନେତ୍ର ନୀର ଏଥି
ଏହି ଭଙ୍ଗା ଗଡ଼େ ଚାହିଁ ।

[ ଯୁବକ ଦ୍ୱୟ ସେଠାରେ ନତଜାନୁ ପୂର୍ବକ ସେହି ସ୍ଥାନର ଧୂଳିକୁ ନେଇ ମସ୍ତକରେ ବୋଳି ହେଉଥିବା ସମୟରେ ଧୀରେ ଧୀରେ ଯବନିକା ପଡ଼ିଲା ]

---

# —ପ୍ରଥମ ଅଙ୍କ—

## ୧ମ ଦୃଶ୍ୟ

[ ସୁବିଶାଳ କୁଲଡ଼ ଦୁର୍ଗ ଅଭ୍ୟନ୍ତରସ୍ଥ ସୁସଜ୍ଜିତ ମନ୍ତ୍ରଣା କକ୍ଷ । ସମୟ—ଅପରାହ୍ଣ । କକ୍ଷର ମଧ୍ୟଭାଗରେ ଖଣ୍ଡେ ଗଜଦନ୍ତ ନିର୍ମିତ ପଲ୍ୟଙ୍କ ଉପରେ ଦୁଗ୍ଧଫେନର ବୃଦ୍ଧ ରାଜା ଧନଞ୍ଜୟ ଭଞ୍ଜ ଅର୍ଦ୍ଧଶାୟିତ । ସେହି ପଲ୍ୟଙ୍କର ଶିରୋଦେଶରେ ଗୋଟିଏ ରୌପ୍ୟନିର୍ମିତ ଆଧାର ଉପରେ ପୁରୀ ଜଗନ୍ନାଥ ମନ୍ଦିରର ଗୋଟିଏ କ୍ଷୁଦ୍ର ପ୍ରସ୍ତର ସ୍ୱସ୍ତରେଣ ରଖା ଯାଇଛି । କକ୍ଷର ମଧ୍ୟଦେଶରେ ଅନ୍ୟ ଗୋଟିଏ ସୁସଜ୍ଜିତ ଆଧାର ଉପରେ ତାଳପତ୍ର ପୋଥି ଗୁଡ଼ାଏ ଥିବାର ଦେଖା ଯାଉଥିଲା । ପଲ୍ୟଙ୍କର ଅଗ୍ରଭାଗରେ କକ୍ଷର ଦୁଇ ପାର୍ଶ୍ୱର ଦେଓ୍ୱାଲକୁ ଲାଗି ମଖମଲ ଗଦିଯୁକ୍ତ ଅନେକ ରୌପ୍ୟନିର୍ମିତ ଆସନ ଧାଡ଼ି ଧାଡ଼ି ହୋଇ ରଖାଯାଇଛି । ତହିଁରୁ ଗୋଟିକରେ ରାଜାଙ୍କର କନିଷ୍ଠ ଭ୍ରାତା ଗୋବିନ୍ଦ ଭଞ୍ଜ ଆସୀନ । ପଲ୍ୟଙ୍କର ପାଦଦେଶରେ ଜଣେ ପରିଚାରିକା, ବିନୀତ ଭାବରେ କାରୁକାର୍ଯ୍ୟ ଖଚିତ ଗୋଟିଏ ବ୍ୟଜନ ପରିଚାଳନା କରି ରାଜାଙ୍କୁ ଗ୍ରୀଷ୍ମର ସନ୍ତାପରୁ ରକ୍ଷା କରୁଅଛି । ଦ୍ୱାରଦେଶରେ ଦୁଇ ଜଣ ସଶସ୍ତ୍ର ପ୍ରହରୀ ନୀରବରେ ଦଣ୍ଡାୟମାନ । କକ୍ଷର ଗୋଟାଏ କୋଣରେ ଅନ୍ୟ ଗୋଟିଏ ଛୋଟ ରୌପ୍ୟନିର୍ମିତ ଆଧାର ଉପରେ ଧାତୁନିର୍ମିତ ଧୂପଦାନରୁ ଅଗୁରୁର ମୃଦୁଗନ୍ଧ ଧୀରେ ଧୀରେ ଭାସି ବୁଲୁଥିଲା । ପଲ୍ୟଙ୍କର ଠିକ୍ ପଶ୍ଚାଦ୍ଦେଶରେ ଗୋଟିଏ ବାତାୟନ । ସେହି ବାତାୟନ ଭିତର ଦେଇ ଅପରାହ୍ଣର ସ୍ୱର୍ଣ୍ଣରବି-କରୋଦ୍ଭାସିତ କୁଲଡ଼ ଗିରିମାଳାର ଅସ୍ପଷ୍ଟ ପ୍ରତିଛବି ଦେଖା ଯାଉଥିଲା ।]

ଧନ । (ଅର୍ଦ୍ଧଶାୟିତ ଅବସ୍ଥାରେ ଗୋବନ୍ଦଙ୍କ ପ୍ରତି) କନ୍ତୁ, ମୁଁ ତ ତୁମର କୌଣସି ଆପତ୍ତି ଶୁଣିବାକୁ ପ୍ରସ୍ତୁତ ନୁହେଁ. ଗୋବନ୍ଦ ! ମୁଁ ଯେତେବେଳେ ଅନେକ ଭବ ଚନ୍ତ ତୁମ ହାତରେ ରାଜ୍ୟ ପରଚାଳନା ଭାର ନ୍ୟସ୍ତ କରବାକୁ ଯାଉଛ, ସେତେବେଳେ, ଅନ୍ତତଃ ଜଣେ ରାଜଭକ୍ତ ପ୍ରଜା ହସାବରେ, ମୋର ସେହ ନଷ୍ପତ୍ତିକୁ ତୁମର ମାନ ନେବା ଉଚତ । ବଶେଷତଃ— ତୁମେ ଯେ ମୋର କନଷ୍ଠ ଭ୍ରାତା—ସୁତରାଂ—

ଗୋବନ୍ଦ । ମୁଁ ସେ ସମସ୍ତ ବୁଝି ପାରୁଛ ମହାରାଜ । କନ୍ତୁ ରାଜକୁମାର-ମାନଙ୍କ ମଧ୍ୟରୁ କାହାକୁ ଜଣକୁ ଏ ଗୁରୁଦାୟିତ୍ୱ ଭାର ଦେଲେ, ବୋଧହୁଏ ରାଜ୍ୟର ଅନେକ କଛ ମଙ୍ଗଳ ସାଧିତ ହୁଅନ୍ତା । କାରଣ, ସେହମାନଙ୍କ ମଧ୍ୟରୁ ଜଣେ କେବେହେଲେ ଦନେ ପୁଣି ଏହ ସିଂହାସନର ନ୍ୟାଯ୍ୟ ଅଧିକାରୀ ହେବ । ମୁଁ କାହିଁକ ଅନର୍ଥକ ସେମାନଙ୍କ ପଥରେ କଣ୍ଟକ ରୂପେ ଠିଆ ହେବ ?

ଧନ । ଗୋବନ୍ଦ ଭଞ୍ଜ ! ଚାହିଁ ଦେଖ, ଏହ ଭଞ୍ଜଭୂମିକୁ—ସୁଜଳା ସୁଫଳା ଶସ୍ୟଶ୍ୟାମଳା ମୋର ଏହ ଘୁମୁସର ଜନନୀକୁ । ଏ ରାଜ୍ୟର ଶାସକ ହେବାକୁ ବହୁତ କଛ ଯୋଗ୍ୟତା ଦରକାର । ଏ ରାଜ୍ୟର ଶାସକକୁ ବଜ୍ରାଦପି କଠୋର ଓ କୁସୁମାଦପି ସୁଶୀତ ହେବାକୁ ହେବ । ଚାହିଁ ଦେଖ ଗୋବନ୍ଦ ! ଭଞ୍ଜ ଭୂମିର ଏହ ଶ୍ୟାମାୟମାନ ଗମ୍ଭୀର ଗିରଶ୍ରେଣୀ, ଏହାର ହାସ୍ୟମୟୀ ଚରଯୌବନା ବଭବମୟୀ ପ୍ରକୃତ, ଏହାର ସହସ୍ର ଗିରନର୍ଝର ଝଂକୃତ ବସ୍ତୀର୍ଣ୍ଣ ଶସ୍ୟପ୍ରାନ୍ତର, ଆଉ ସର୍ବୋପରି ଏହାର ସୁନ୍ଦର, ସୌମ୍ୟ, ଶାନ୍ତ ଓ ତୃପ୍ତ ଅଧିବାସୀବର୍ଗ । ଏ ସବୁ କ ଗୋଟାଏ ଅପରଣାମଦର୍ଶୀ, ଅତ୍ୟାଚାରୀ, ଉଚ୍ଛୃଙ୍ଖଳ ହାତରେ ଛାଡ଼ ଦଆଯାଇପାରେ ? ନା—ନା—ନା ! ଶୁଣ ଗୋବନ୍ଦ ! ମୁଁ ରାଜ୍ୟଶାସନରେ ବର୍ତ୍ତମାନ ସୁଦ୍ଧା ଅଷମ ନୁହେଁ । ଧନଞ୍ଜୟ ଭଞ୍ଜ ଆଜ ବୃଦ୍ଧ ସତ, କନ୍ତୁ ଏହ ଧନଞ୍ଜୟ ଭଞ୍ଜ ଆଜ ପର୍ଯ୍ୟନ୍ତ ଏହ ଘୁମୁସରକୁ ଏପର ଭାବରେ ଶାସନ କର ଆସିଛ ଯେ, ଆଜ ଏହ ବୃଦ୍ଧର ଗୋଟାଏ ସାମାନ୍ୟ ମାତ୍ର

ଅହ୍ୱାନରେ ସମଗ୍ର ଭଞ୍ଜଭୂମି, ତାର ରାଜାର ଆଦେଶ ପାଳନ କରିବାକୁ ସେମାନଙ୍କର ଜୀବନ ମରଣ ପଣ କରି ଏହି ସିଂହାସନ ନିକଟକୁ ଧାଇଁ ଆସିବେ । କିନ୍ତୁ ଗୋବିନ୍ଦ ! ବୃଦ୍ଧ ମୁଁ—ମୁଁ ବର୍ତ୍ତମାନ ଚାହେଁ ଟିକିଏ ବିଶ୍ରାମ । ଏହି ଘୁମୁସରର ପ୍ରାକୃତିକ ବୈଭବ ମୋତେ ଆଜ ପାଗଳ କରି ଦେଉଛି । ମୋର ଘୁମୁସର ରାଜ୍ୟ ଗୋଟାଏ ପ୍ରକାଣ୍ଡ କବିତା । ସେଥିଲାଗି ଧନଞ୍ଜୟ ଭଞ୍ଜ ଆଜ ରାଜା ନ ହୋଇ, କବି ହେବାକୁ ବ୍ୟାକୁଳ । ତେଣୁ ମୋର ଅନୁରୋଧ, ତୁମେ ଆଜଠାରୁ ଏ ରାଜ୍ୟର ଅାଂଶୀରାଜା ହୋଇ, ରାଜ୍ୟର ଶାସନ-ରଶ୍ମି ହାତକୁ ନିଅ । ତୁମର ବୃଦ୍ଧ କବି ଧନଞ୍ଜୟକୁ ଟିକିଏ ସାହାଯ୍ୟ କର, ଟିକିଏ ବିଶ୍ରାମ ଦିଅ ।

ଗୋବିନ୍ଦ । କିନ୍ତୁ—

ଧନ । ଆଃ—ଚୁପ କର ଗୋବିନ୍ଦ । ତୁମରି ସମ୍ମୁଖରେ ଥିବା ସେହି ସ୍ତୂପୀକୃତ ତାଳପତ୍ର ଫେଦାକୁ ଚାହିଁ ଦେଖ । ମୁଁ ଚାହେଁ, ଏହି ଲେଖନୀ ମୁନରେ ସେହି ତାଳପତ୍ର ଫେଦା ମଧ୍ୟରେ ଘୁମୁସର ପ୍ରକୃତିକୁ ଅମର କରି ରଖି ଦେଇ ଯିବାକୁ । ଦୀର୍ଘ ଷାଠିଏ ବର୍ଷ କାଳ ରାଜ୍ୟଶାସନ ମଧ୍ୟରେ ଏହି କାବ୍ୟ ସାହିତ୍ୟକୁ ମୁଁ ତାର ପୂର୍ଣ୍ଣ ପ୍ରାପ୍ୟ ଦେଇପାରି ନାହିଁ । ତେଣୁ ମୋର ଅନୁରୋଧ, ମୋତେ ଟିକିଏ ସମୟ ଦିଅ । ରାଜ୍ୟ ଚିନ୍ତାରୁ ଟିକିଏ ମୁକ୍ତ ମିଳିଲେ, ମୋର କାବ୍ୟ ସାହିତ୍ୟ ଚର୍ଚ୍ଚାର ବାସନାକୁ ପୂର୍ଣ୍ଣ କରି ପାରିବି ।

ଗୋବିନ୍ଦ । ଘୁମୁସରର ଜଣେ ରାଜଭକ୍ତ ପ୍ରଜା ହିସାବରେ, ମହାରାଜାଙ୍କର ଆଦେଶକୁ ମୁଁ ନିଜର ରକ୍ତ ଦେଇ ଅକ୍ଷରେ ଅକ୍ଷରେ କର୍ତ୍ତବ୍ୟ ପାଳନ କରିବି । କିନ୍ତୁ ତତ୍ପୂର୍ବରୁ ମୋର ଗୋଟିଏ ବିନୀତ ନିବେଦନ ଅଛି ମହାରାଜ ।

ଧନ । କି ନିବେଦନ ଗୋବିନ୍ଦ ?

ଗୋବିନ୍ଦ । ରାଜକୁମାର ନୀଳକଣ୍ଠ ଅତ୍ୟାଚାରୀ ଓ ଦୁର୍ବିନୀତ ସତ; କିନ୍ତୁ ଜ୍ୟେଷ୍ଠ ରାଜକୁମାର ଗଙ୍ଗାଧରଙ୍କ ଉପରେ ଶାସନ ପରିଚାଳନାର

ଙ୍କର ତ ସ୍ୱଚ୍ଛନ୍ଦରେ ଦିଆଯାଇ ପାରନ୍ତା । ପୁଣି, ନ୍ୟାୟତଃ, ସେ ଏହି ରାଜ ସିଂହାସନର ଉପଯୁକ୍ତ ଅଧିକାରୀ ।

ଧନ । କିନ୍ତୁ ଗୋବିନ୍ଦ, କେବଳ ଗୋଟାଏ ଉନ୍ମାଦନାରେ ଘୁମୁସରର ଭବିଷ୍ୟତ ଭାଗ୍ୟକୁ ଭୁଲିଗଲେ ଚଳିବ ନାହିଁ । ମୁଁ ଚାହେଁ ନା ଯେ ଘୁମୁସର ରାଜ୍ୟରେ ମୋର ଜୀବିତ ଅବସ୍ଥାରେ ଭ୍ରାତା ଭ୍ରାତା ମଧ୍ୟରେ ଗୋଟାଏ ରକ୍ତର ହୋଲି ଖେଳିଯାଉ, ହିଂସାର ଯୂପକାଷ୍ଠ ତଳେ ଘୁମୁସରର ଶାନ୍ତିକୁ ବଳି ଦିଆଯାଉ । ମୋର ପକ୍ଷାଘାତ ଜର୍ଜରିତ ସ୍ନେହାନ୍ଧ ବପୁର ଯୋଗୁଁ ଗୋଟାଏ ଅଯଥା ଶୋଣିତ ପ୍ଲାବନରେ ଶସ୍ୟଶ୍ୟାମା ଘୁମୁସର ଧରଣୀକୁ ରଞ୍ଜିତ କରିବାକୁ ମୋର ଆଦୌ ଇଚ୍ଛା ନୁହେଁ । ମୋର ଶାନ୍ତିପୂର୍ଣ୍ଣ ଦୀର୍ଘ ରାଜତ୍ୱର ଶେଷଭାଗରେ ମୁଁ ଜାଣି ପାରିଛି ଯେ, ମୋର ପ୍ରିୟତମ କୁଳାଡ଼ ଦୁର୍ଗରେ ଅଭ୍ୟନ୍ତରୀଣ ପାରିବାରିକ ଜୀବନ ମୋର ଶାନ୍ତିପୂର୍ଣ୍ଣ ବାୟୁମଣ୍ଡଳ ମଧ୍ୟରେ ନାହିଁ । ତେଣୁ ମୋର ଏ ବ୍ୟବସ୍ଥା ।

ଗୋବିନ୍ଦ । କିନ୍ତୁ—

ଧନ । (ବାଧା ଦେଇ) ଦ୍ୱିରୁକ୍ତି କରନା ଗୋବିନ୍ଦ ! ଘୁମୁସର ରାଜାଙ୍କ ସମ୍ମୁଖରେ ତାଙ୍କର ଆଦେଶର ପ୍ରତିବାଦ କରିବାଟା, ଅନ୍ତତଃ ଭଞ୍ଜଭୂମିର ଜଣେ ରାଜବଂଶୀ ପ୍ରଜା ପକ୍ଷରେ ଶୋଭନୀୟ ବା ମାର୍ଜନୀୟ ନୁହେଁ । ବୁଝିଲ—ହିଁ—ନିଅ, ଏହି ମୋର ନାମାଙ୍କିତ ପରଓ୍ୱାନା ଦେଉଛି । ଆଜିଠାରୁ ତୁମେ ଏ ରାଜ୍ୟର ପାଟରାଜା ! ଶାସନର ସମସ୍ତ ଦାୟିତ୍ୱ ଆଜିଠାରୁ ତୁମ ଉପରେ । ଅବଶ୍ୟ ଧନଞ୍ଜୟ ଭଞ୍ଜର ଦୀର୍ଘ ଷାଠିଏ ବର୍ଷର ରାଜନୈତିକ ଅଭିଜ୍ଞତା ତୁମକୁ ପଦେ ପଦେ ସାହାଯ୍ୟ ଓ ସାମର୍ଥ୍ୟ ଦାନ କରିବ । ଭୟ ନାହିଁ । ଏ ରାଜ୍ୟରେ ମୋର ଅସ୍ତିତ୍ୱ ଥିବା ପର୍ଯ୍ୟନ୍ତ, ତୁମର ଶାସନ କାର୍ଯ୍ୟରେ ପ୍ରତିଦିନ ତୁମେ ଉପଯୁକ୍ତ ପ୍ରେରଣା ଓ ସମର୍ଥନ ପାଇବ · କବି ଧନଞ୍ଜୟଠାରୁ—ରାଜା ଧନଞ୍ଜୟଠାରୁ ନୁହେଁ ।

( ସହସା ଉତ୍ତେଜିତ ଭାବରେ ରାଣୀ ମଣ୍ଡା ଦେବୀଙ୍କର ପ୍ରବେଶ )

ମଣ୍ଡା । କିନ୍ତୁ ଗୋବିନ୍ଦ, ମନେରଖିବ ଯେପରି, ବୃଦ୍ଧ ରାଜାଙ୍କର ଏ ଅଦ୍ଭୁତ କଳ୍ପନାକୁ ଘୁମୁସରର ରାଜରାଣୀ ସମର୍ଥନ କରି ପାରିବେ ନାହିଁ ।

ଧନ । (ଉଠିବସି) ରାଣି ! ଭଞ୍ଜଭୂମିର ଅସୂର୍ଯ୍ୟଂପଶ୍ୟା ରାଜରାଣୀ ତୁମେ । ତୁମର ସ୍ଥାନ ଅନ୍ତଃପୁର ମଧ୍ୟରେ ସୀମାବଦ୍ଧ । ରାଜନୈତିକ କୂଟ ପରାମର୍ଶ ଭିତରେ ନିଭୃତ ମନ୍ତ୍ରଣା କକ୍ଷରେ ତୁମର ଏପରି ଆକସ୍ମିକ ଆବିର୍ଭାବ ବାଞ୍ଛନୀୟ ନୁହେଁ । ତା ପର ଧନଞ୍ଜୟ ଭଞ୍ଜର କାର୍ଯ୍ୟାବଳୀକୁ ସମାଲୋଚନା କରିବାକୁ ଯିବାର ସ୍ପର୍ଦ୍ଧା ତୁମର ଅମାର୍ଜନୀୟ । ବୋଧହୁଏ, ରାଜା ଧନଞ୍ଜୟ ଏପରି ସ୍ପର୍ଦ୍ଧାକୁ କ୍ଷମା କରିବାକୁ ବା ଅନୁମୋଦନ କରିବାକୁ ଏକାନ୍ତ ଅନଭ୍ୟସ୍ତ । ସାବଧାନ !

ମଣ୍ଡା । କିନ୍ତୁ ମହାରାଜ ! ରାଜନୈତିକ କାରଣରୂପେ ରାଜକୁମାର ନୀଳକଣ୍ଠଙ୍କୁ ତାଙ୍କର ନ୍ୟାଯ୍ୟ ଦାବୀରୁ ବଞ୍ଚିତ କରିବାଟା ରାଜନୀତି ନୁହେଁ । ଆଜି ଛାମୁଙ୍କର ପ୍ରିୟତମା ମହାରାଣୀ ମଣ୍ଡା ଦେବୀଙ୍କର ସେହି ଅନ୍ୟାୟର ପ୍ରତିରୋଧ କରିବାକୁ ଯଥେଷ୍ଟ ଦାବୀ ଅଛି ବୋଧହୁଏ ।

ଧନ । (ବିଦ୍ରୂପ କରି) ନ୍ୟାୟ ଅନ୍ୟାୟର ଭାଗବଣ୍ଟା କରିବାକୁ ଆସିଛ ରାଣୀ ! କିନ୍ତୁ, କାହିଁ ତୁମର ନ୍ୟାୟ ? ନ୍ୟାୟତଃ ଏ ରାଜ-ସିଂହାସନ ଜ୍ୟେଷ୍ଠ ରାଜକୁମାର ଗଙ୍ଗାଧରଙ୍କର ପ୍ରାପ୍ୟ । କିନ୍ତୁ ତାକୁ ମଧ୍ୟ ବଞ୍ଚିତ କରାଯାଇଛି । କାହିଁ, ଗଙ୍ଗାଧର ଲାଗି ତୁମର ତ କୌଣସି ଅଭିଯୋଗ ନାହିଁ ? ତୁମେ କେବଳ ଚାହୁଁ ନିଜ ପୁତ୍ରର ମଙ୍ଗଳ, ନୁହେଁ ?

ମଣ୍ଡା । କେଉଁ ନାରୀ ତାର ନିଜ ପୁତ୍ରର ମଙ୍ଗଳ ନ ଚାହେଁ, ମହାରାଜ ?

ଧନ । କିନ୍ତୁ ରାଜା ଧନଞ୍ଜୟ ପକ୍ଷରେ, ତାର ପ୍ରିୟତମ ଭୂମିର ରାଜ୍ୟର ଲକ୍ଷ ଲକ୍ଷ ପୁତ୍ରର ମଙ୍ଗଳ ଚାହିଁବାଟା ନିତାନ୍ତ ଅବହେଳାର ବସ୍ତୁ ନୁହେଁ । ମନେ ରଖିବ ରାଣି ! ଧନଞ୍ଜୟ ନିକଟରେ ପ୍ରଥମେ ସ୍ଥାନ ପାଏ, ତାର ଜନ୍ମଭୂମି, ତା ପର ତାର ପୁତ୍ରୋପମ ପ୍ରଜା ଏବଂ ଶେଷରେ ତାର ନିଜର ଆତ୍ମୀୟ ବା ପୁତ୍ର ।

ମଣ୍ଡା । କିନ୍ତୁ ପିତା ହିସାବରେ ପୁତ୍ର ପ୍ରତି କି ଆପଣଙ୍କର କୌଣସି ଦାୟିତ୍ୱ ନାହିଁ, ମହାରାଜ ?

ଧନ । ନିଶ୍ଚୟ ଅଛି ! କିନ୍ତୁ ତାହା ରାଜ୍ୟପ୍ରତି ଦାୟିତ୍ୱର ଉପରେ ନୁହେଁ । ସେଥିଲାଗି ତ ଏ ବ୍ୟବସ୍ଥା । ଆପାତତଃ ଆତ୍ମଜ ଗୋବିନ୍ଦ ଭଞ୍ଜ ଏ ରାଜ୍ୟର ବର୍ତ୍ତମାନ ଶାସକ । ତାହାବୋଲି ମୁଁ ରାଜ୍ୟ ପରିଚାଳନା ଭାର ଚିରଦିନ ଲାଗି ପରିତ୍ୟାଗ କରୁନାହିଁ । ମୁଁ ଚାହେଁ, କ୍ଷଣିକ ଅବସର । ଶାସକର ବାସ୍ତବ ଚକ୍ଷୁରେ ଘୁମୁସରର ପ୍ରତ୍ୟେକ ସ୍ଥାନ ଦେଖି ଦେଖି, ଆଜି ମୁଁ ବଡ଼ କ୍ଳାନ୍ତ, ରାଣି ! ତେଣୁ ଥରେ ଘୁମୁସରର କବିଜନ-ଲୋଭନୀୟ ପ୍ରାକୃତିକ ବିଭବକୁ କବିଜନସୁଲଭ କଳ୍ପନାର ଚକ୍ଷୁରେ ଦେଖି, ମୋର ପରପାର ଯାତ୍ରାପଥକୁ ଟିକିଏ ରସମୟ କରି ନେବାଲାଗି ମୋର ଆଶା । ତୁମେ ଏ ରାଜ୍ୟର ଲକ୍ଷ୍ମୀସ୍ୱରୂପା ରାଣି ! ଆଶାକରେ, ତୁମେ ମଧ୍ୟ ମୋର ସହାୟତା କରିବ ।

ମଣ୍ଡା । ନିଶ୍ଚୟ ସହାୟ ହେବି ମହାରାଜ । କିନ୍ତୁ ମୋର ଅନୁରୋଧ, ଏ ରାଜ୍ୟର ଶାସନ ଭାର କୁମାର ନୀଳକଣ୍ଠ ଯେପରି ଗ୍ରହଣ କରନ୍ତି, ତାହାର ବ୍ୟବସ୍ଥା କରନ୍ତୁ । ତେତିକିରେ ମୁଁ ତୃପ୍ତ ହେବି ମହାରାଜ ।

ଗୋବିନ୍ଦ । ମୁଁ ବର୍ତ୍ତମାନ ବିଦାୟ ନେଉଛି ମହାରାଜ ।

ଧନ । ନା ଆତ୍ମଜ ! ତୁମର ଉପସ୍ଥିତି ଏଠାରେ ଡେର ପ୍ରୟୋଜନ । ଐଶ୍ୱର୍ଯ୍ୟର କି ମହାଯୁଗୀ ଶକ୍ତି, ତାହାର ପ୍ରତ୍ୟକ୍ଷ ପ୍ରମାଣ ଏ ସ୍ଥଳରେ ଯେପରି ଦେଖି ପାରିବ, ଅନ୍ୟ କୁହାପି ସେପରି ଦେଖିବାର ସୌଭାଗ୍ୟ ତୁମକୁ ମିଳିବ ନାହିଁ । ଅପେକ୍ଷାକର, ଦେଖ । ଆଜି ମୁଁ ତୁମକୁ ଅନେକ କିଛି ଲୋଭନୀୟ ଦୃଶ୍ୟ ଦେଖାଇବା ଲାଗି, ଏହି ମନ୍ତ୍ରଣା କକ୍ଷକୁ ଆହ୍ୱାନ କରିଛି ।

ମଣ୍ଡା । (ଅସ୍ଥିର ଭାବେ) କୁମାର ନୀଳକଣ୍ଠଙ୍କର କି ବ୍ୟବସ୍ଥା କରୁଛନ୍ତି ମହାରାଜ ?

ଧନ । (ଗମ୍ଭୀର ଭାବେ) ଘୁମୁସରର ରାଜା ତାଙ୍କର ପ୍ରତ୍ୟେକ କାର୍ଯ୍ୟ ନିମିତ୍ତ ତାଙ୍କର ପ୍ରତ୍ୟେକ ପ୍ରଜା ନିକଟରେ କୈଫିୟତ୍ ଦେବାକୁ ବାଧ୍ୟ ନୁହନ୍ତି, ମହାରାଣି ! ଆପାତତଃ, ଏତିକି ତୁମକୁ ଜଣାଇ ଦିଆଯାଇପାରେ ଯେ, କୁମାର ଗଙ୍ଗାଧର, କୁମାର ନୀଳକଣ୍ଠ ଓ କୁମାର ଘନଭଞ୍ଜ ଆଜିଠାରୁ

ଥାଟରାଜା ଗୋବିନ୍ଦ ଭଞ୍ଜଙ୍କ ଅଧୀନରେ ରହି ରାଜ୍ୟଶାସନର ବନ୍ଦିଲ ପ୍ରଣାଳୀ ଶିକ୍ଷା କରିବେ ।

ମଣ୍ତା । ତାହେଲେ ମୋର ଏ ଇଚ୍ଛା କି ନିଷ୍ଫଳ ? କୁମାର ନୀଳକଣ୍ଠଙ୍କର ଜନନୀରୂପେ, ଏ ରାଜ୍ୟର ରାଜମାତା ହେବାର ଗୌରବ କି ମୋର ନାହିଁ ?

ଧନ । ଘୁମୁସର ରାଜା ଧନଞ୍ଜୟଙ୍କର ପ୍ରିୟତମା ପ୍ରଣୟିନୀ ହେବାର ଗୌରବ ବହନ କରି ତୁମେ ଦିନେ ଏ କୁଳାଡ଼ ଦୁର୍ଗ ମଧ୍ୟକୁ ପ୍ରବେଶ କରି ପାରିଥିଲ ରାଣି ! ଆଜି ନିଜକୁ ଭାଗ୍ୟବତୀ ମନେ କରି ସେହି ଚିର ଆକାଂକ୍ଷିତ ଗୌରବରେ ତୁମର ସନ୍ତୁଷ୍ଟ ରହିବା ଉଚିତ । ମଣ୍ତାଦେବି ! ରାଜଜୀବନର କୁଟିଳତା ମଧ୍ୟରେ ପଶି ତୁମର ଅନାବିଳ ପ୍ରେମକୁ ଏପରି ଭାବରେ ହତ୍ୟା କରି ଦିଅନାହିଁ । ରସିକ ଧନଞ୍ଜୟ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ତୁମର ଅତି ବିଶ୍ୱସ୍ତ ଓ ଅନୁଗତ ପ୍ରେମିକରୂପେ, ତୁମର ପ୍ରେମ ଓ ପ୍ରୀତି ଭିକ୍ଷା କରୁଥିବ । କିନ୍ତୁ ଯେଉଁ ଧନଞ୍ଜୟ ନାମରେ ଘୁମୁସରରେ ଜଣେ ଅବିବେକୀ ରାଜା ଥିଲେ, ଏ କଳଙ୍କର ବୋଝ ବହନ କରିବାକୁ ମୁଁ ଏକାନ୍ତ ଅସମର୍ଥ ।

[ କୁମାର ନୀଳକଣ୍ଠଙ୍କର ପ୍ରବେଶ । ବୟସ ପ୍ରାୟ ୪୨ । ରାଜୋଚିତ ଗାମ୍ଭୀର୍ଯ୍ୟର ଏକାନ୍ତ ଅଭାବ । ହଠାତ୍ ଆସି ଏଠାରେ ଜନନୀ ମଣ୍ତା-ଦେବୀଙ୍କୁ ଏପରି ଉତ୍ତେଜିତ ଭାବରେ ଦେଖିବେ ବୋଲି ଆଶା କରି ନ ଥିଲେ । ଏକ ପାର୍ଶ୍ୱରେ ପିତୃବ୍ୟ ଗୋବିନ୍ଦ ଭଞ୍ଜଙ୍କୁ ନୀରବରେ ବସିଥିବାର ଦେଖି, ତାଙ୍କର ସନ୍ଦେହ କିପରି ଟିକିଏ ବଢ଼ିଲା । ସୁତରାଂ ଅତି ବ୍ୟସ୍ତଭାବରେ ରାଜାଙ୍କ ନିକଟକୁ ଚାଲିଯାଇ ଠିଆ ହେଲେ । ]

ନୀଳ । ପିତା ! ଦୁର୍ଗର ବାହାରେ ଯେଉଁ ଜନରବ ଶୁଣି ଆସିଲି ତାହା କି ସତ୍ୟ ?

ଧନ । କି ଜନରବ କୁମାର ?

ନୀଳ । ରାଜ୍ୟ ପରିଚାଳନା ଭାର, ଆପଣ ପିତୃବ୍ୟ ଗୋବିନ୍ଦ ଭଞ୍ଜଙ୍କ ହସ୍ତରେ ଅର୍ପଣ କରି ତାଙ୍କୁ ଥାଟରାଜା ପଦବୀରେ ଭୂଷିତ କରିଛନ୍ତି ?

ଧନ । ହଁ, କୁମାର ! ରାଜକାର୍ଯ୍ୟରୁ କ୍ଷଣିକ ବିଶ୍ରାମ ନେବା ନିମିତ୍ତ ଏହି ବ୍ୟବସ୍ଥା ମୁଁ କରିଛି । ଆଉ କୁମାର ଗଙ୍ଗାଧରଙ୍କ ସହିତ ତୁମେ ଓ କୁମାର ଘନଭଞ୍ଜ ମଧ୍ୟ, ତାଙ୍କଠାରୁ ଯେପରି ରାଜ୍ୟ ପରିଚାଳନାର ଗୁରୁ ଦାୟିତ୍ୱ ଶିକ୍ଷା କରି ପାରିବ, ତାର ବ୍ୟବସ୍ଥା ମଧ୍ୟ କରିଛି ।

ନୀଳ । କିନ୍ତୁ ମୁଁ ଏହି ଅନ୍ୟାୟ ବ୍ୟବସ୍ଥା ବିରୁଦ୍ଧରେ ପ୍ରତିବାଦ ଜଣାଉଛି ପିତା ।

ଚଣ୍ଡୀ । ଶୁଣ ନୀଳକଣ୍ଠ ! ଏ ପ୍ରତିବାଦର କୌଣସି ମୂଲ୍ୟ ଆଉ ନାହିଁ । ମହାରାଜ ତାଙ୍କର ମତାମତ ମୋତେ ବହୁ ପୂର୍ବରୁ ଜଣାଇ ଦେଇ ସାରିଲେଣି । ମୁଁ ମଧ୍ୟ ଆସିଥିଲି, ଟିକ୍ ତୁମର ଅଭିଯୋଗ ନେଇ । କିନ୍ତୁ ମୋର ସମସ୍ତ ଯୁକ୍ତି ବିଫଳ ହେଲା । ଏ ରାଜ୍ୟର ରାଜସିଂହାସନରେ ତୁମର କୌଣସି ଦାବୀ ନାହିଁ, ବତ୍ସ ।

ନୀଳ । କାହିଁକି ? ମୁଁ କଣ ଏ ରାଜ୍ୟ ଶାସନରେ ଅସମର୍ଥ ? ମୋର କଣ ରାଜ୍ୟ ଶାସନର ଯୋଗ୍ୟତା ନାହିଁ ଯେ ପିତୃବ୍ୟଙ୍କ ନିକଟରୁ ଏଣିକ ତାହା ପୁଣି ଶିକ୍ଷା କରିବାକୁ ହେବ ? ମୁଁ ଏ ଆଦେଶ ମାନିବାକୁ ନାରାଜ ପିତା ।

ଧନ । (ଗମ୍ଭୀର ଭାବେ) ପିତା ନୁହେଁ, ମହାରାଜ ।

ନୀଳ । (ଅସନ୍ତୁଷ୍ଟ ହୋଇ) ଅଚ୍ଛା, ମହାରାଜ । ମୁଁ ଆପଣଙ୍କର ଏ ଅନ୍ୟାୟ ଆଦେଶ ପାଳିବାକୁ ପ୍ରସ୍ତୁତ ନୁହେଁ ।

ଧନ । (କ୍ରୋଧେ) ରାଜାଦେଶର ବିରୋଧ କଲେ, ଯେଉଁ ରାଜଦଣ୍ଡ ଭୋଗିବାକୁ ହୁଏ, ଦୁର୍ଭାଗ୍ୟବଶତଃ ରାଜକୁମାର ମଧ୍ୟ ସେହି ଦଣ୍ଡରୁ ଅବ୍ୟାହତି ପାଇ ପାରିବେ ନାହିଁ, ଏତିକ ସ୍ମରଣ ଅଛି ତ ନୀଳକଣ୍ଠ ? ଥାଟରାଜ ! ବନ୍ଦୀକର ଏହି ଉଚ୍ଛୃଙ୍ଖଳ ଯୁବକକୁ । ଏପରି ଉଦ୍ଧତ ରାଜପୁତ୍ରର ସ୍ଥାନ ଏ କୁଲାଡ଼ ଦୁର୍ଗରେ ନୁହେଁ ।

ଗୋବିନ୍ଦ । କ୍ଷମା କରନ୍ତୁ ମହାରାଜ ! କୁମାର ନୀଳକଣ୍ଠ ବୋଧହୁଏ ବର୍ତ୍ତମାନ ପ୍ରକୃତିସ୍ଥ ନୁହନ୍ତି । ମୋର ବିଶ୍ୱାସ, ସେ ରାଜାଦେଶର ଅବମାନନା

କରିବାକୁ ଭବିଷ୍ୟତରେ ଆଉ କେବେ ସାହସୀ ହେବେ ନାହିଁ । ଏଥରକ ତାଙ୍କୁ କ୍ଷମା ଦିଅନ୍ତୁ, ମହାରାଜ ।

ନୀଳ । (ନିଜକୁ ଟିକିଏ ସଂଯତ କରି, ଅଭିମାନ ଜଡ଼ିତ କଣ୍ଠରେ) କ୍ଷମା କରନ୍ତୁ ମହାରାଜ, ପ୍ରକୃତରେ ବହୁତ ଦୂର ଅଗ୍ରସର ହୋଇ ଯାଇଥିଲି ମୁଁ । ଏତେଦୂର ଅଗ୍ରସର ହେବାଟା ବୋଧହୁଏ ମୋର ଉଚିତ ହୋଇ ନାହିଁ । ରାଜ୍ୟ ଆପଣଙ୍କର, ସୁତରାଂ ତାର ଶାସନଭାର ଯାହା ତାହା ହସ୍ତରେ ନ୍ୟସ୍ତ କରି ପାରିବାର ଅଖଣ୍ଡ ଅଧିକାର ଆପଣ ରଖି ପାରନ୍ତି, ଏହା ମୁଁ ଭୁଲି ଯାଇଥିଲି ।

ମଣ୍ତ୍ରୀ । (ଅଭିମାନ ସ୍ୱରେ) ଦୁଃଖ କର ପୁଅ ଯେ, ରାଜ୍ୟର ପ୍ରଧାନା ମହିଷୀଙ୍କର ଗର୍ଭଜାତ ସନ୍ତାନ ତୁମେ ନୁହଁ । ସୁତରାଂ ରାଜ ସିଂହାସନର ଆଶା ତୁମକୁ ତ୍ୟାଗ କରିବାକୁ ହେବ ।

ଧନ । ବନ୍ଦକର ରାଣି ! ଐଶ୍ୱର୍ଯ୍ୟ ମଦ ଗର୍ବିତା ଜଣେ ସାଧାରଣ ନାରୀପରି ତୁମେ ଯେ ଏତେ ତଳକୁ ଖସିଯାଇ ପାର, ଏହା ମୋର ଧାରଣା ସୁଦ୍ଧା ନ ଥିଲା । ପ୍ରହରି ! ରାଜକୁମାର ଗଙ୍ଗାଧର (ଇଙ୍ଗିତ କଲେ)

( ଜଣେ ପ୍ରହରୀ ଚାଲିଗଲା )

ନୀଳ । ମା, ଏହି ମନ୍ତ୍ରଣା କକ୍ଷରେ ପିତୃବ୍ୟ ଆଠଗଡ଼ରାଜାଙ୍କର କରୁଣା ପ୍ରତ୍ୟାଶୀ ହୋଇ ରହିବାଟାକୁ ମୁଁ ଅପମାନଜନକ ମନେକରେ । ବିଶେଷତଃ, ସନ୍ତାନ ସମ୍ମୁଖରେ ମାତୃ ନିନ୍ଦା, ଏହା ରାଜନୀତି ଅନୁମୋଦିତ ହୋଇପାରେ, କିନ୍ତୁ ଏହା ସମାଜନୀତି ବିରୁଦ୍ଧ । ସୁତରାଂ ମୋର ଏଠାରେ ରହିବା ଅନାବଶ୍ୟକ । ଆପଣଙ୍କର ଯଦି ଇଚ୍ଛା ହୁଏ, ଯାଆନ୍ତୁ ଅନ୍ତଃପୁର ମଧ୍ୟରେ ଅରଣ୍ୟ ରୋଦନ କରି ନିଜର ଦୁଃଖ-ଭାର ଲଘବ କରିବାକୁ ଚେଷ୍ଟା କରନ୍ତୁ । ବିଦାୟ ଦିଅନ୍ତୁ ମହାରାଜ । ଅନଧିକାରଚର୍ଚ୍ଚା ଯୋଗୁଁ ମୋତେ ମାର୍ଜ୍ଜନା କରନ୍ତୁ । ( ପ୍ରସ୍ଥାନୋଦ୍ୟତ )

ଧନ । ଅପେକ୍ଷା କର କୁମାର ନୀଳକଣ୍ଠ । ମୋର ବକ୍ତବ୍ୟ ଶେଷ ହୋଇ ନାହିଁ ।

[ ଏହି ସମୟରେ କୁମାର ଗଙ୍ଗାଧର ଧୀର ପଦ ବିକ୍ଷେପରେ କକ୍ଷ ମଧ୍ୟକୁ ପ୍ରହରୀ ସହିତ ପ୍ରବେଶ କଲେ । ବୟସ ପ୍ରାୟ ୪୫ । ପ୍ରହରୀ ତାର ପୂର୍ବ ସ୍ଥାନରେ ଦଣ୍ଡାୟମାନ ହେଲା । କୁମାର ରାଜାଙ୍କୁ ଅଭିବାଦନ କରି ଆଦେଶ ଅପେକ୍ଷାରେ ଏକ ପାର୍ଶ୍ୱରେ ଠିଆ ହୋଇ ରହିଲେ । ]

ଧନ । କୁମାର ଗଙ୍ଗାଧର ! ଦୀର୍ଘକାଳ ଧରି ରାଜ୍ୟଶାସନରେ ବ୍ୟସ୍ତ ରହି, ବୃଦ୍ଧ ମୁଁ, ଆଜି ପରିଶ୍ରାନ୍ତ । ତେଣୁ ରାଜକାର୍ଯ୍ୟରୁ କିଛିଦିନ ଅବସର ନେଇ, ସାହିତ୍ୟ ଚର୍ଚ୍ଚା କରିବା ଆଶାରେ, ମୁଁ ତୁମର ପିତୃବ୍ୟ ଗୋବିନ୍ଦ ଭଞ୍ଜଙ୍କ ହାତରେ ରାଜ୍ୟର ରଶି ଛାଡ଼ିଦେବାକୁ ମନସ୍ଥ କରିଛି ଓ ତାଙ୍କୁ ଆଠଗଡ଼ାର ଗୌରବ ଦାନ କରିବାକୁ ଯାଉଛି । ବୟୋଜ୍ୟେଷ୍ଠ ରାଜକୁମାର ତୁମେ, ତୁମର ଏଥିରେ ଅଭିମତ କଅଣ ?

ଗଙ୍ଗା । ଏହି ସୁବିସ୍ତୀର୍ଣ୍ଣ ଘୁମୁସର ରାଜ୍ୟର ବୟୋବୃଦ୍ଧ ଓ ଜ୍ଞାନବୃଦ୍ଧ ମହାରାଜାଙ୍କର ଅଭିଜ୍ଞତାପୂର୍ଣ୍ଣ ପ୍ରସ୍ତାବ ଉପରେ, ମୋ ଭଳି ଜଣେ ସାଧାରଣ ରାଜଭକ୍ତ ପ୍ରଜାର ଅଭିମତ ଯେ ଲୋଡ଼ା ହୋଇ ପାରେ, ଏହା ଭାବି ମୁଁ ନିଜକୁ ଅତି ଗୌରବାନ୍ୱିତ ମନେ କରୁଛି । କିନ୍ତୁ ପିତା ! ଚିରଦିନ ଆପଣଙ୍କର ଚରିତ୍ର ଉପରେ ମୋର କିଛି ସ୍ୱତନ୍ତ୍ର ଅଭିମତ ନ ଥିଲା ଓ ଆଜି ମଧ୍ୟ ନାହିଁ । ମୁଁ ଜାଣେ, ଘୁମୁସରର ଯଥାର୍ଥ ଗୌରବ ଆପଣ । ଏ ଦେଶର ଅମଙ୍ଗଳ ବା ଅକଲ୍ୟାଣ ସ୍ୱପ୍ନରେ ସୁଦ୍ଧା ଆପଣ କଳ୍ପନା କରି ପାରନ୍ତି ନାହିଁ । ଆଜିକୁ ଦୀର୍ଘ ଷାଠିଏ ବର୍ଷ କାଳ ଆପଣ ଯେପରି ସୁଦକ୍ଷ ଭାବରେ ଏହି ଘୁମୁସର ରାଜ୍ୟକୁ ଶାସନ କରି ଆସିଛନ୍ତି, ତାହା ଭଞ୍ଜଭୂମିରେ ଅଲୌକିକ, ଅଭୂତପୂର୍ବ । ଅଗଣିତ ପ୍ରଜାପୁଞ୍ଜ ଆଜି ଆପଣଙ୍କର ଏକାନ୍ତ ଅନୁରକ୍ତ । ସମଗ୍ର ଘୁମୁସର ଆଜି ଗୋଟାଏ ବିରାଟ ଶାନ୍ତି ଓ ତୃପ୍ତିର ନିଃଶ୍ୱାସ ମାରୁଛି । କାହିଁ, ଏହି ଦୀର୍ଘ ଷାଠିଏ ବର୍ଷର ରାଜତ୍ୱ ମଧ୍ୟରେ ଦିନେ ହେଲେ ତ ମୋ ଭଳି ଜଣେ ଅର୍ବାଚୀନର ଅଭିମତର ପ୍ରୟୋଜନ ପଡ଼ି ନ ଥିଲା । ଆଜି କାହିଁକି ଯେ ତାର ପ୍ରୟୋଜନ ପଡ଼ିଲା, ଏ ରହସ୍ୟ ମୁଁ ତ କିଛି ବୁଝିପାରୁ ନାହିଁ । ଚିରଦିନ ଏହି ଦେଶର ଜଣେ ରାଜଭକ୍ତ ପ୍ରଜାରୂପେ

ନିଜକୁ ମୁଁ ମନେ କରି ଆସିଛି । କହନ୍ତୁ, ଆଜି କଣ ମୋଠାରେ ରାଜ-ବିଦ୍ରୋହର କୌଣସି ସାମାନ୍ୟ ଲକ୍ଷଣ ସୁଦ୍ଧା ପ୍ରକାଶ ପାଇଛି ମହାରାଜ ?

ଧନ । ଶୁଣ ଥାଅରାଜ ! ଶୁଣିଲ କୁମାର ନୀଳକଣ୍ଠ ? ମୋ ପ୍ରଶ୍ନର କି ଉତ୍ତର ଦେଲେ କୁମାର ଗଙ୍ଗାଧର । ମଣ୍ଡାଦେବ ! ଘୁମୁସର ରାଣି ! ଏପରି ରାଜକୁମାରଙ୍କୁ ତୁମେ ଜନ୍ମଦେଇ ପାରି ନାହିଁ ବୋଲି କଣ ତୁମର ଟିକିଏ ଲଜ୍ଜା ହୁଏନାହିଁ ? ପ୍ରହରି ! ରାଜକୁମାର ଧନଭଞ୍ଜ--(ଇଙ୍ଗିତକଲେ)

(ଜଣେ ପ୍ରହରୀ ଚାଲିଗଲା) କି ରାଣି ! ନୀରବ ରହିଲ ଯେ ? କୁମାର ନୀଳକଣ୍ଠ ! ଯଦି ପାର, ନିଜକୁ କୁମାର ଗଙ୍ଗାଧରଙ୍କ ସହିତ ତୁଳନା କରି ଦେଖିନିଅ, ତୁମର ସ୍ଥାନ କେଉଁଠି ।

ନୀଳ । (ଅଭିମାନଭରେ) ମହାରାଜ ! ମୁଁ ତ କହୁଛି, ରାଜ୍ୟ ଶାସନ-ଭାର ନେବାକୁ ନ୍ୟାୟତଃ ମୋର କୌଣସି ଦାବୀ ନାହିଁ ।

ଧନ । ଉତ୍ତମ ! ଯଦି ଭବିଷ୍ୟତରେ କେବେ ଦାବୀ କରିବାର ଆଶା ରଖ, ତେବେ ଆଜଠାରୁ ନିଜକୁ କୁମାର ଗଙ୍ଗାଧରଙ୍କର ଆଦର୍ଶରେ ଗଢ଼ିବାକୁ ଚେଷ୍ଟାକର । ରାଜାହେବାର ଯୋଗ୍ୟତା ଅର୍ଜନ କରି ପାରିଲେ, ରାଜତ୍ୱ ଆପେ ଆପେ ଆସି ତୁମ ହାତରେ ଧରାଦେବ । ବୃଥା ଦମ୍ଭ ଓ ଦର୍ପ ମାତ୍ର ପୁଞ୍ଜି କରି କେହି କେବେ ରାଜ୍ୟଶାସନ ବ୍ୟବସାୟ କରି ପାରି ନାହିଁ ।

ଗଙ୍ଗା । ନୀଳକଣ୍ଠ-ଭାଇ ! ପିତା ଓ ପିତୃବ୍ୟ ଉଭୟଙ୍କର ବର୍ତ୍ତମାନରେ ଆମର ଏପରି ଦାବୀ କରିବାଟା ନିତାନ୍ତ ଗର୍ହିତ । ରାଜ୍ୟ ଓ ରାଜତ୍ୱ କି ଜୀବନର ଶ୍ରେଷ୍ଠ ଲକ୍ଷ୍ୟ ଭାଇ ! ମନୁଷ୍ୟତ୍ୱ ନିକଟରେ, ରାଜବଂଶୋଚିତ ମର୍ଯ୍ୟାଦା ନିକଟରେ, ଏ ସବୁ ପାର୍ଥିବ ଲାଭ ଯେ ଅତି ନଗଣ୍ୟ ।

[ ଏହି ସମୟରେ ପ୍ରହରୀସହ ଧନଭଞ୍ଜଙ୍କର ପ୍ରବେଶ । ବୟସ ପ୍ରାୟ ୩୨ । ପ୍ରହରୀ ନିଜର ସ୍ଥାନକୁ ଚାଲିଯିବା ପରେ, ଧନ ରାଜାଙ୍କୁ ଅଭିବାଦନ କରି ଏକ ପାର୍ଶ୍ୱରେ ଠିଆ ହୋଇ ରହିଲେ । ]

ଧନ । କୁମାର ଧନଭଞ୍ଜ ! ଦୁର୍ଗର ବାହାରେ କିଛି ଚମକପ୍ରଦ ନୂତନ ସମ୍ବାଦ ଶୁଣି ପାରିଛ କି ?

ଘନ । ଗୋଟାଏ ସମ୍ବାଦ ଶୁଣିଛି ମହାରାଜ ! କିନ୍ତୁ ସତ୍ୟ ମିଥ୍ୟା ପରୀକ୍ଷା କରିବାକୁ ଅବସର ପାଇ ନାହିଁ ।

ଧନ । କି ସେ ସମ୍ବାଦ ?

ଘନ । ମହାରାଜ ଧନଞ୍ଜୟ ଭଞ୍ଜ ରାଜକାର୍ଯ୍ୟରୁ ଅବସର ନେଉଛନ୍ତି । ତାଙ୍କ ସ୍ଥାନରେ ପିତା ଗୋବନ୍ଦ ଭଞ୍ଜ ଆଠରାଜା ହୋଇ ଘୁମୁସର ରାଜ୍ୟ-ଶାସନ ଚଳାଇବେ । ଏହି ସମ୍ବାଦ ମାତ୍ର ।

ଧନ । ହଁ, ଏ ସମ୍ବାଦ ସତ୍ୟ ରାଜକୁମାର । ଏଥିରେ ତୁମର କିଛି କହିବାର ଅଛି ?

ଘନ । ମୋର ! ଆଶ୍ଚର୍ଯ୍ୟ, ଘୁମୁସର ରାଜ୍ୟର ଜଣେ ଅତି ନଗଣ୍ୟ ଦେଶସେବୀ ଓ ରାଜଭକ୍ତ ପ୍ରଜା, ଏହି ଏତିକିହିଁ ମୋର ସର୍ବଶ୍ରେଷ୍ଠ ପରିଚୟ ମହାରାଜ ! ରାଜ୍ୟର ମଙ୍ଗଳଚନ୍ତାହିଁ ମୋର ଏକମାତ୍ର କାମ୍ୟ । ସୁତରାଂ ରାଜା ଓ ରାଜତ୍ୱ ନେଇ କିଛି କଳ୍ପନା କରିବା ବା ସମାଲୋଚନା କରିବା, ମୋର ଦୃଷ୍ଟିରେଖାର ଏକାବେଳକେ ବାହାରେ । ଘୁମୁସର ରାଜା ଓ ଘୁମୁସର ରାଜ୍ୟର ମଙ୍ଗଳ ହେଉ, ଏହି ଏତିକିହିଁ ମୋର ସବୁବେଳେ ସବୁସ୍ଥାନରେ ବକ୍ତବ୍ୟ । ଏହା ଅପେକ୍ଷା ଅଧିକ କିଛି ଜାଣିବାକୁ ମୋର ଅଭିରୁଚି ପର୍ଯ୍ୟନ୍ତ ନାହିଁ ।

ପ୍ରହରୀ । ଦ୍ୱାର ଦେଶରେ ମହାମନ୍ତ୍ରୀ ଅପେକ୍ଷା କରିଛନ୍ତି, ମହାରାଜ !

[ ରାଜାଙ୍କର ଇଙ୍ଗିତରେ ପ୍ରହରୀ ମହାମନ୍ତ୍ରୀଙ୍କୁ ଭିତରକୁ ଆସିବାକୁ ଇଙ୍ଗିତ କଲା । ମହାମନ୍ତ୍ରୀ ବୃଷଭାନୁଙ୍କର ପ୍ରବେଶ ଓ ଅଭିବାଦନ । ]

ଧନ । କି ସମ୍ବାଦ ମହାମନ୍ତ୍ରି । ଆଜି ଏ ଅସମୟରେ ହଠାତ୍ ଆପଣଙ୍କର ଆଗମନର କାରଣ କଣ ?

ବୃଷ । ମହାରାଜ, ମୋର ଆଗମନ ଦ୍ୱାରା ରାଜ ପରିବାରର ବିଶ୍ରମ୍ଭାଳାପରେ ଯଦି କୌଣସି ଅସୁବିଧା ଜାତ ହୋଇଥାଏ, ତେବେ ମୋତେ କ୍ଷମା କରନ୍ତୁ ।

ଧନ । (ଉଠି ଯାଉଛନ୍ତି ନେଇ) ନା—ନା—ମହାମନ୍ତ୍ରି । ଘୁମୁସର ରାଜ୍ୟର ପ୍ରବୀଣ ବିଶ୍ୱସ୍ତ ରାଜକର୍ମଚାରୀ ଆପଣ । ଆପଣଙ୍କଠାରେ ରାଜ-ପରିବାରର କୌଣସି କଥାତ ଗୋପନୀୟ ନାହିଁ । ତେବେ ମୋର କହିବାର ଉଦ୍ଦେଶ୍ୟ ଏହି ଯେ,ବର୍ତ୍ତମାନ ଆପଣଙ୍କର ଏଠାକୁ ଆସିବାର ତ କୌଣସି ପ୍ରୟୋଜନୀୟତା ନ ଥିଲା ?

ବୃଷ । ଯୋଗୀରାଜ ଅଶ୍ୱତ୍ଥାମାଙ୍କ ଆପଣ ସମ୍ବାଦ ଦେଇଥିଲେ । ସେ ବର୍ତ୍ତମାନ ଦୁର୍ଗଦ୍ୱାରରେ ଅପଣଙ୍କର ଦର୍ଶନ ଅପେକ୍ଷା କରୁଛନ୍ତି ।

ଧନ । (ସୋତ୍ସାହେ) ଯୋଗୀରାଜ ଅଶ୍ୱତ୍ଥାମା । ଆପଣ ଯାଉନ୍ତୁ ମହାମନ୍ତ୍ରି, ଶୀଘ୍ର ସମାଦର କରି ତାଙ୍କୁ ଏହି ସ୍ଥାନକୁ ନେଇ ଆସନ୍ତୁ ।

(ମହାମନ୍ତ୍ରୀଙ୍କ ପ୍ରସ୍ଥାନ)

ଗୋବିନ୍ଦ । କିଏ ଏହି ଅଶ୍ୱତ୍ଥାମା ମହାରାଜ ?

ଧନ । ସୁବିଖ୍ୟାତ ଭବିଷ୍ୟତ୍‌ବକ୍ତା ଓ ଜ୍ୟୋତିଷୀ ଯୋଗୀରାଜ ଅଶ୍ୱତ୍ଥାମା । ମୋର କେତୋଟି ପ୍ରଶ୍ନ ଗଣନା କରିବା ନିମିତ୍ତ ତାଙ୍କ ନିକଟକୁ ସମ୍ବାଦ ପଠାଇଥିଲି । ସୁଖର କଥା ଯେ, ଯୋଗୀରାଜ ଆଜି ଠିକ୍ ସମୟରେ ଠିକ୍ ସ୍ଥାନରେ ଉପସ୍ଥିତ ହୋଇ ପାରିଛନ୍ତି । ତୁମମାନଙ୍କ ସମ୍ମୁଖରେ ଏପଣି ଗୋଟାଏ କଠିନ ସମସ୍ୟାର ସମାଧାନ ହୋଇଯିବ ।

[ ମହାମନ୍ତ୍ରୀଙ୍କ ସହିତ ଯୋଗୀରାଜଙ୍କର ପ୍ରବେଶ । ରାଜା ଆସନ ତ୍ୟାଗ କରି ଅଶ୍ୱତ୍ଥାମାଙ୍କୁ ଅଭିନନ୍ଦନ କଲେ ଓ ତାଙ୍କୁ ରୌପ୍ୟ ନିର୍ମିତ ଆସନ ଗ୍ରହଣ କରିବାକୁ ଇଙ୍ଗିତରେ ଅନୁରୋଧ କଲେ । ]

ଧନ । ଯୋଗୀରାଜ । ମୁଁ ଜାଣେ ଅପଣ ଜଣେ ଅଦ୍ୱିତୀୟ ଜ୍ୟୋତିଷୀ ଓ ଭବିଷ୍ୟଦ୍‌ବକ୍ତା । ମୁଁ ଗୋଟିଏ କଠିନ ସମସ୍ୟାର ସମାଧାନ କରି ନ ପାରି, ଆପଣଙ୍କର ସାହାଯ୍ୟ ଭିକ୍ଷାକରି ସମ୍ବାଦ ପଠାଇଥିଲି । ତେଣୁ ଆଜି ମୋର ସୌଭାଗ୍ୟ ଯେ,ଆପଣ ମୋର ଅନୁରୋଧ ରକ୍ଷାକରି, ମୋତେ ଅନୁଗୃହୀତ କରିଛନ୍ତି ।

ଅଶ୍ୱ । ମହାରାଜ ଧନଞ୍ଜୟ ଭଞ୍ଜ ! ପ୍ରକୃତରେ ଆପଣଙ୍କର ସୌଜନ୍ୟରେ ମୁଁ ମୁଗ୍ଧ । କହନ୍ତୁ, ଆପଣଙ୍କର କି ସମସ୍ୟା ? ଯଦି ପାରେ, ତେବେ ତାହାର ସମାଧାନ ଦିଗରେ ମୁଁ ଆପଣଙ୍କୁ ସାହାଯ୍ୟ କରିବି ।

ଧନ । ଯୋଗୀରାଜ, ମୋର କୁମାରମାନଙ୍କ ମଧ୍ୟରୁ, ମୋ ପରେ କିଏ ଏ ରାଜ୍ୟର ରାଜା ହେବ, ତାହାହିଁ ମୋର ବର୍ତ୍ତମାନ ପ୍ରଧାନ ସମସ୍ୟା । ବହୁତ ଆଲୋଚନା କରି ସୁଦ୍ଧା, ଏ ପର୍ଯ୍ୟନ୍ତ କୌଣସି ଗୋଟିଏ ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇ ପାରୁନାହିଁ । ଏହି ସମସ୍ୟାର ଭଞ୍ଜନ ନିମନ୍ତେ ମୁଁ ଆଜି ଆପଣଙ୍କ ଉପରେ ଏକାନ୍ତ ନିର୍ଭର କରିଛି । ମୋର ସମସ୍ୟା ଭଞ୍ଜନ କରି ମୋତେ ଏ ଦୁଶ୍ଚିନ୍ତାରୁ ମୁକ୍ତିଦାନ କରନ୍ତୁ ।

ଅଶ୍ୱ । (କିଛିକ୍ଷଣ ନୀରବ ରହି ଓ ଚିନ୍ତାକରି) ମହାରାଜ ! ମୁଁ ରାଜକୁମାରମାନଙ୍କ ନାମ ସୁଦ୍ଧା ଏ ପର୍ଯ୍ୟନ୍ତ ଜାଣେ ନାହିଁ କି ସେମାନଙ୍କ ସହିତ ମୋର ପ୍ରତ୍ୟକ୍ଷ ପରିଚୟ ସୁଦ୍ଧା ହୋଇ ନାହିଁ । ତେବେ, ଗଣନାଦ୍ୱାରା ଜାଣି ପାରୁଛି ଯେ—ଧନଞ୍ଜୟ ଅନ୍ତେ ଘନଞ୍ଜୟ ହେବ ଭଞ୍ଜଭୂମିର ରାଜା ।

ମନ୍ତ୍ରୀ । (ଆଶ୍ଚର୍ଯ୍ୟେ) ଘ-ନ-ଞ୍ଜୟ (ଅନ୍ୟ ସମସ୍ତେ ମଧ୍ୟ ଆଶ୍ଚର୍ଯ୍ୟ ହେଲେ)

ଗୋବିନ୍ଦ । ବନ୍ଧକର ଭୂମିର ଭବିଷ୍ୟଦ୍‌ବାଣୀ, ଜ୍ୟୋତିଷ ! ଭଣ୍ଡାମି ଦେଖାଇବା ଲାଗି କଣ ଅନ୍ୟ ସ୍ଥାନ ନ ଥିଲା ଯେ; ଏଠାରେ ଆମ୍ଭମାନଙ୍କୁ ପ୍ରତାରଣା କରିବାର ସାହସ କରିଛ ?

ନୃପ । କ୍ଷାନ୍ତ ହେଉନ୍ତୁ ଠାକୁରରାଜ ।

ଅଶ୍ୱ । (କ୍ରୋଧେ) ମହାରାଜ ! ଏହି ଶ୍ଳେଷ କି ପ୍ରକୃତରେ ମୋ ଉପରେ ପ୍ରୟୋଗ କରାଯାଉଛି ? ମୁଁ ତ ଉପଯାଚକ ହୋଇ ଏ ସ୍ଥାନକୁ ଆସି ନାହିଁ କି ମୋର ଉପଜୀବିକା ଭିକ୍ଷା ନୁହେଁ ଯେ, ଭଣ୍ଡାମିର ପ୍ରଶ୍ରୟ କରି ଉଦର ପରିପୋଷଣ କରିବି ! ଆଜି ସୁଦ୍ଧା ବିଦ୍ୟାର ଏତେଦୂର ସ୍ପର୍ଦ୍ଧା ଅଛି ଯେ, ସେ ଐଶ୍ୱର୍ଯ୍ୟର ମସ୍ତକରେ ପଦାଘାତ କରିପାରେ । ତେବେ ମୋତେ ନିମନ୍ତ୍ରଣ କରି ଆଣି ମୋର ଭବିଷ୍ୟଦ୍‌ବାଣୀ ପ୍ରତି ଏପରି ତାଚ୍ଛଲ୍ୟ ଦେଖାଇବା ଓ ମୋର ଅଭ୍ରାନ୍ତ ଗଣନାକୁ ଭଣ୍ଡାମି ଆଖ୍ୟା ଦେବା ବୋଧହୁଏ ଏଠାକାର ରାଜୋଚିତ ବ୍ୟବହାର, ନୁହେଁ ?

ଧନ । ଉତ୍ତେଜିତ ହୁଅନ୍ତୁ ନାହିଁ,ଯୋଗୀରାଜ ! ଆପଣଙ୍କର ଭବିଷ୍ୟଦ୍-ବାଣୀ ବୋଧହୁଏ କି ତାଙ୍କ ଅପ୍ରତ୍ୟାଶିତ । ସେଥିଯୋଗୁଁ ସମସ୍ତେ ଟିକିଏ ବିଚଳିତ ହୋଇ ପଡ଼ିଛନ୍ତି ।

ଅଶ୍ୱ । ମହାରାଜ ! ଆପଣଙ୍କର ଏ କଥା ପୂର୍ବରୁ ବୁଝିବା ଉଚିତ ଥିଲା ଯେ, ଜ୍ୟୋତିଷ ଶାସ୍ତ୍ର ଚିରଦିନ ବଡ଼ ନିର୍ମମ । ତାର ଗଣନା କେବଳ ନିର୍ମମ ଓ କଠୋର ସତ୍ୟର ଇଙ୍ଗିତ ଦିଏ । ଜ୍ୟୋତିଷ ଶାସ୍ତ୍ର ରାଜଶକ୍ତିର ସନ୍ତୋଷ ବା ବିରାଗଭାଜନ ହେବାକୁ ଅପେକ୍ଷା ରଖେ ନାହିଁ । ସୁତରାଂ ଗଣନାରେ ଆପଣଙ୍କର ଇପ୍‌ସିତ ଫଳୋଦୟ ନ ହେବା ଯୋଗୁଁ ମୋର ଅଭ୍ରାନ୍ତ ଗଣନାକୁ ଭ୍ରାନ୍ତି ବୋଲି କହିବାର ଅଧିକାର ଆପଣଙ୍କର ନାହିଁ । (ଟିକିଏ ରହି, ଗଣନା କରି) ଓ—ବୁଝିଲି । ଆପଣ ଘୁମୁସର ରାଜାଙ୍କର କନିଷ୍ଠ ଭ୍ରାତା ଗୋବିନ୍ଦ ଭଞ୍ଜ—ଆଜିଠାରୁ ଆଠଗଡ଼ ରାଜା ହୋଇଛନ୍ତି । ସେ ଯାହାହେଉ, ଆଠଗଡ଼ ରାଜ ! ଜଣେ ନିମନ୍ତ୍ରିତ ଯୋଗୀ ପ୍ରତି ଆପଣଙ୍କର ଏ ଅଯଥା ରକ୍ତଚକ୍ଷୁ ଶୋଭନୀୟ ନୁହେଁ । ମୁଁ ଆପଣଙ୍କର ବେତନଭୋଗୀ ଭୃତ୍ୟ ନୁହେଁ ଯେ,ଆପଣ ରକ୍ତଚକ୍ଷୁ ଦେଖାଇ ମୋତେ ଶାସନ କରିବେ । ଜ୍ୟୋତିଷୀ ଅଶ୍ୱତ୍‌ଥାମା ଏସବୁ ରାଜୋଚିତ କଦର୍ଯ୍ୟତାର ବହୁତ ଊର୍ଦ୍ଧରେ । ସେ ଆପଣଙ୍କର ରକ୍ତଚକ୍ଷୁକୁ କେବଳ ଗୌରବରେ ଅବଜ୍ଞା କରିପାରେ । ବିଦାୟ ମହାରାଜ ! ଯିବା ପୂର୍ବରୁ ପୁଣି ଥରେ କହି ଯାଉଛି, ଆପଣଙ୍କ ଅନ୍ତେ ଧନଞ୍ଜୟ ଏ ରାଜ୍ୟର ରାଜା, ଏହା ମୋର ଅଭ୍ରାନ୍ତ ଭବିଷ୍ୟଦ୍‌ବାଣୀ । (କହି ଉଠିଲେ) ଚାଲନ୍ତୁ ମହାମନ୍ତ୍ରି ! ମୋତେ ଦୁର୍ଗର ଦ୍ୱାର ଦେଖାଇ-ଦେବେ ।(ଉତ୍ତେଜିତ ଭାବରେ ମହାମନ୍ତ୍ରୀଙ୍କ ସହିତ ଅଶ୍ୱତ୍‌ଥମାଙ୍କର ପ୍ରସ୍ଥାନ)

ଧନ । ଅଦ୍ଭୁତ ଏ ଜ୍ୟୋତିଷୀ, ଆଉ ଅଦ୍ଭୁତ ଏହାଙ୍କ ଗଣନା । ମୁଁ ଯେ ତିଳେ ମାତ୍ର ଏହା ବିଶ୍ୱାସ କରି ପାରୁ ନାହିଁ !

ଗଙ୍ଗା । ପିତା, ଜ୍ୟୋତିଷୀର ନିର୍ଦ୍ଦେଶରେ ଯଦି କୁମାର ଧନଞ୍ଜୟ ଘୁମୁସରର ରାଜା ହୁଅନ୍ତି, ସେଥିରେ ଏତେ ବିଚଳିତ ହେବାର କିଛି କାରଣ ତ ନାହିଁ । ବରଂ ଆଜିଠାରୁ କୁମାର ଧନଞ୍ଜୟ ଯେପରି ରାଜ୍ୟ-ଶାସନ ପ୍ରଣାଳୀରେ ସମସ୍ତ ଅଭିଜ୍ଞତା ଲାଭ କରି ପାରିବେ, ତାହାର

ବ୍ୟବସ୍ଥା କରିପାରି । ତା ହେଲେ, କଳିଙ୍ଗ ସାମ୍ରାଜ୍ୟରେ ଘୁମୁସରର ଗୌରବ ଚିରଦିନ ଅକ୍ଷୁଣ୍ଣ ରହିବ ।

ଶାଳ । (ସ୍ୱଗତ) ଘନଭଞ୍ଜ, ତୋର ମୂଳୋତ୍ପାଟନର ବ୍ୟବସ୍ଥା ଆଜଠାରୁ ମୁଁ ନିଜ ହସ୍ତରେ ଗ୍ରହଣ କଲି । ଦେଖିବି, ଭବିଷ୍ୟଦ୍‌ବାଣୀର କରାମତି କେତେ ।

ଧନ । ଆଃରାଜ, ଆଜି ମୁଁ ଏକପ୍ରକାର ନିଶ୍ଚିନ୍ତ ଯେ, ଘୁମୁସରର ଭାଗ୍ୟ ବର୍ତ୍ତମାନ ନିୟତିର ହସ୍ତରେ । ରାଜଶକ୍ତିର ସାମର୍ଥ୍ୟ ନାହିଁ ଯେ ନିୟତିର ଆଦେଶ ଲଙ୍ଘନ କରିବ ।

ଗୋବିନ୍ଦ । ଅନର୍ଥକ ଏ ଚିନ୍ତା କାହିଁକି ମହାରାଜ ? ଘନ ଭଞ୍ଜର ଘୁମୁସର ସିଂହାସନ ଲାଭ ଗୋଟାଏ ଦୁଃସ୍ୱପ୍ନ ବ୍ୟତୀତ ଆଉ କିଛି ନୁହେଁ । ଭଗବାନ କରନ୍ତୁ, ଏ ଦୁଃସ୍ୱପ୍ନର ଆରମ୍ଭ ଓ ଶେଷ ଆଜି ଏଠାରେ ହେଉ ।

ଧନ । ଗୋବିନ୍ଦ ! ବର୍ତ୍ତମାନ ତୁମେ କୁମାରମାନଙ୍କୁ ସଙ୍ଗରେ ନେଇ ଯାଇପାର । ପରେ, ପ୍ରୟୋଜନ ପଡ଼ିଲେ ମୁଁ ସମ୍ବାଦ ଦେବି । (ମନ୍ତ୍ରୀ ଦେବାଙ୍କ ବ୍ୟତୀତ ସମସ୍ତଙ୍କର ପ୍ରସ୍ଥାନ) ପ୍ରହରି ! ବର୍ତ୍ତମାନ ତୁମ୍ଭେମାନେ ମନ୍ତ୍ରଣା କକ୍ଷର ବାହାରେ ଅପେକ୍ଷା କର । (ପ୍ରହରୀ ଦ୍ୱୟଙ୍କର ପ୍ରସ୍ଥାନ । ସମସ୍ତେ ଗୃହଗଲା ପରେ ରାଜା ଗୋଟିଏ ଦୀର୍ଘନିଶ୍ୱାସ ତ୍ୟାଗ କରି କ୍ଳାନ୍ତ ଭାବରେ ପଲଙ୍କ ଉପରେ ଉପବେଶନ କଲେ । ପାର୍ଶ୍ୱରେ ତାଙ୍କର ବସି ରହିଲେ ମନ୍ତ୍ରୀ ଦେବା ।)

ମନ୍ତ୍ରୀ । ମହାରାଜ ?

ଧନ । କ'ଣ ଚାଣି ?

ମନ୍ତ୍ରୀ । ଘନ ଭଞ୍ଜଙ୍କର ରାଜା ହେବା କଥାଟାକୁ, ଆପଣ କଣ ଗାରବରେ ଅନୁମୋଦନ କରୁଛନ୍ତି ?

ଧନ । ତା'ଛଡ଼ା ତ ଅନ୍ୟ ଉପାୟ ମୋର କିଛି ନାହିଁ, ମନ୍ତ୍ରୀଦେବ ? ନିୟତିର ଦୁର୍ବାର ଗତିକୁ ପ୍ରତିରୋଧ କରିବାର କ୍ଷମତା ବୋଧହୁଏ ଭଗବାନଙ୍କର ନାହିଁ । ଆଉ ଘୁମୁସର ରାଜା ଧନଞ୍ଜୟ ଭଞ୍ଜ ତ ଅତି ତୁଚ୍ଛ, ଅତି ନଗଣ୍ୟ ।

ମଣ୍ତ୍ରୀ । କିନ୍ତୁ ଛାମୁଙ୍କର ସମର୍ଥନ ପାଇଲେ, ମୁଁ ସେ ନିୟତିର ପ୍ରତିରୋଧ କରି ପାରିବ ବୋଲି ମୋର ମନେ ହୁଏ ।

ଧନ । (ହସି) ରାଣି ! ତୁମେ ସ୍ୱପ୍ନ ଦେଖୁନାହଁ ତ ? ନିୟତିର ଗତି-ପଥ ରୋଧ କରିବ—ତୁମେ ? ମୁଁ ଦେଖୁଛି, ତୁମର ମସ୍ତିଷ୍କ ବିକୃତିର ଯାଉମତ ଚିକିତ୍ସା ପ୍ରୟୋଜନ ।

ମଣ୍ତ୍ରୀ । ବିଶ୍ୱାସ କରନ୍ତୁ ମୋତେ ପ୍ରିୟତମ ! ସମସ୍ତ ସମସ୍ୟାର ସହଜ ସମାଧାନ ହୋଇଯିବ, ଯଦି ଘନ ଭଞ୍ଜଙ୍କୁ ଗୁପ୍ତରେ ହତ୍ୟା କରାଯାଏ ।

ଧନ । (ଚମକି ପଡ଼ି ଉଠି) କଣ କହିଲ ରାଣି ? ଗୁପ୍ତହତ୍ୟା ? କାହାକୁ ? ଘନ ଭଞ୍ଜଙ୍କୁ ? ଘୁମୁସରର ପ୍ରତାପଶାଳୀ ରାଜା ଧନଞ୍ଜୟ ଭଞ୍ଜ ଆଗରେ ତୁମେ ଯେ ଏତକ ଉଚ୍ଚାରଣ କରିବାର ସାହସ ରଖି ପାରିଲ, ଏଥିଲାଗି ମୁଁ ତୁମ୍ଭଙ୍କୁ ଧନ୍ୟବାଦ ନ ଦେଇ ରହିପାରୁ ନାହିଁ । ମଣ୍ତ୍ରୀଦେବି ! ଏତେ ଦିନଯାଏ ମୋର ହୃଦୟର ଅଧିଷ୍ଠାତ୍ରୀ ଦେବୀରୂପେ, ତୁମକୁ ମୁଁ ମୋର ଅନାବିଳ ପ୍ରେମ ଦାନକରି ଆସିଥିଲି, ବିତରଣରେ କୌଣସି କାର୍ପଣ୍ୟ ନ ରଖି । କିନ୍ତୁ ଆଜି ଦେଖୁଛି, ତୁମେ ଦେବୀ ନୁହଁ, ତୁମେ ରାକ୍ଷସୀ । ରାଜବଂଶରେ ଗୁପ୍ତହତ୍ୟା ! ଏ କଳ୍ପନା କେବଳ ତୁମଭଳି ଜଣେ ରୂପବିଭବଗର୍ବିତା ନାରୀଠାରେ ସମ୍ଭବ । ଓଃ—ଏତେଦୂରକୁ ତୁମେ ଆଗେଇ ଚାଲି ଯାଇପାରି, ରାଣି ? ଛି—ଛି—ଛି—ତୁମଭଳି ଜଣେ ନିକୃଷ୍ଟା ରମଣୀକୁ ମୁଁ ଏ ରାଜ୍ୟର ରାଣୀର ଗୌରବ ଏ ଯାବତ୍ ଦେଇ ଆସିଛି ବୋଲି, ଆଜି ମୁଁ ନିଜେ ନିଜକୁ ଘୃଣା କରୁଛି । ଓଃ—କି ନୃଶଂସ କଳ୍ପନା ତୁମର ନାରି ! ଘୁମୁସର ରାଜବଂଶରେ ଏକ ବୃନ୍ତରେ ପ୍ରସ୍ଫୁଟିତ ଦୁଇଟି ପୁଷ୍ପ—ଧନଞ୍ଜୟ ଆଉ ଗୋବିନ୍ଦ । ସେହି ଗୋବିନ୍ଦର ସନ୍ତାନ ଘନ ଭଞ୍ଜ ଯେ ମୋର ନିଜର ରକ୍ତର ପଦାର୍ଥ, ଏ କଥା କିପରି ତୁମେ ଭୁଲିଗଲ ରାଣି ? ତୁମର କଳ୍ପନାରେ ନିଶ୍ଚୟ ଅଦ୍ଭୁତ ମୌଳିକତା ଅଛି ।

ମଣ୍ତ୍ରୀ । ମହାରାଜ ! ମୋତେ କ୍ଷମା କରନ୍ତୁ । ଭବିଷ୍ୟଦ୍‌ବାଣୀ ଶୁଣିଲା ପରଠାରୁ ଆପଣ ଅତ୍ୟଧିକ ବିଚଳିତ ହୋଇ ପଡିଥିବାରୁ, ଆପଣଙ୍କର ମାନସିକ ଶାନ୍ତିକୁ ଫେରାଇ ଆଣିବା ଲାଗି, ମୁଁ ଏପରି ଗୋଟାଏ ଉପାୟର ପ୍ରସ୍ତାବ ମାତ୍ର କରିଥିଲି ।

ଧନ । (ବ୍ୟଙ୍ଗହାସ୍ୟ ସହ) କୁଳଜ ଦୁର୍ଗ ମଧ୍ୟରେ ରାଜା ଧନଞ୍ଜୟଙ୍କର ଏଡ଼େ ବଡ଼ ମଙ୍ଗଳାକାଂକ୍ଷିଣୀ ଜଣେ ଅଛନ୍ତି ବୋଲି, ମୋର ଆଗରୁ ଧାରଣା ନ ଥିଲା, ରାଣି ! ମୋର ମାନସିକ ଶାନ୍ତି ଲାଗି, ତୁମ୍ଭର ପୁଣି ଏ ତୋଟାଏ ପ୍ରୟାସ । ନୁହେଁ ? କିନ୍ତୁ ନାରି ! ବୃଦ୍ଧ ଧନଞ୍ଜୟ ଭଞ୍ଜ ତୁମର ଏ ନୃଶଂସ ପ୍ରହେଳିକା ଜାଲ ଭେଦ କରିବାକୁ ଯଥେଷ୍ଟ ଚତୁର । ମୋତେ ଯୁକ୍ତିବଳରେ ଫାଙ୍କି ଦେବାକୁ ଚେଷ୍ଟା କରନା ମନ୍ତ୍ରୀଦେବ ! କିଏ କହେ ମୁଁ ଭବିଷ୍ୟଦ୍‌ବାଣୀ ଶୁଣି ବିଚଳିତ ହୋଇଛି । ଶୁଣ ରାଣି, ଭବିଷ୍ୟଦ୍-ବାଣୀ ଶୁଣିବା ପୂର୍ବରୁ ମୋର ବିଚଳିତ ହେବାର ଯଥେଷ୍ଟ କାରଣ ଥିଲା । ଏକ ପକ୍ଷରେ କୁମାର ଗଙ୍ଗାଧର ଓ ଅପର ପକ୍ଷରେ କୁମାର ନୀଳକଣ୍ଠ, ଏ ଦୁହିଁଙ୍କର ଭବିଷ୍ୟତ୍ ନେଇ ମୁଁ ବଡ଼ ଉଦ୍‌ବିଗ୍ନ ଥିଲି । କିନ୍ତୁ ଜ୍ୟୋତିଷୀ ଅଶ୍ୱତ୍ଥାମାଙ୍କର ବାଣୀ, ମୋତେ ସମସ୍ତ ସନ୍ଦେହ, ସମସ୍ତ ଚିନ୍ତାରୁ ମୁକ୍ତ ଦେଇଛି । ଧନ ଭଞ୍ଜ ରାଜା ହେଲେ, ମୋର ଦୁଃଖ ନାହିଁ, କାରଣ ତାହା ନ୍ୟାୟତଃ ନିର୍ଦ୍ଦେଶ । ତାପରେ ନୀଳକଣ୍ଠ ଓ ଗଙ୍ଗାଧରଙ୍କ ମଧ୍ୟରେ ଭବିଷ୍ୟତ୍‌ରେ ଯେଉଁ ଚକ୍ରାନ୍ତ କଳହର ସୂତ୍ରପାତ ହେବାର ଆଶଙ୍କା ମୁଁ କରୁଥିଲି, ଏ ବାଣୀ ସେହି ଆଶଙ୍କାକୁ ମୋର ଦୂରୀଭୂତ କରି ଦେଲା । ଏଥିରେ ତ ମୁଁ ଆଦୌ ବିଚଳିତ ନୁହେଁ, ବରଂ ବହୁ ପରିମାଣରେ ନିଶ୍ଚିନ୍ତ । କିନ୍ତୁ ତୁମ୍ଭର ଉଚ୍ଚାଶା ଏତେ ଜଘନ୍ୟ ସ୍ତରକୁ ଯାଇପାରେ ବୋଲି, ମୋର ଆଦୌ ଧାରଣା ସୁଦ୍ଧା ନ ଥିଲା ।

ମନ୍ତ୍ରୀ । କିନ୍ତୁ ମହାରାଜ ! ନୀଳକଣ୍ଠଙ୍କ କଥା ଛାଡ଼ି ଦିଅନ୍ତୁ । ଧନ ଭଞ୍ଜ ରାଜା ହେବା ହେବ, ଗଙ୍ଗାଧର ଯେ ସନ୍ତୁଷ୍ଟ ହୋଇ ରହି ପାରିବେ, ଏହା ମୋର ବିଶ୍ୱାସ ହୁଏ ନାହିଁ ।

ଧନ । ବେଶ୍, ତାର ମୀମାଂସା ବର୍ତ୍ତମାନ ଏହିଠାରେ ହୋଇଯାଉ । କିଏ ଅଛ ? (ଉଚ୍ଚୈଃସ୍ୱରେ) ପ୍ରହରୀ ! (ପ୍ରହରୀର ପ୍ରବେଶ) ରାଜକୁମାର ଗଙ୍ଗାଧର । (ଇଙ୍ଗିତ ପାଇ ପ୍ରହରୀ ଅଭିବାଦନ କରି ଚାଲିଗଲା ।) ରାଣି, ଘୁମୁସରର ଭାଗ୍ୟ ବିଷୟରେ ମୋତେ ଯେତେଦୂର ନିଶ୍ଚିନ୍ତ ବୋଲି ମନେ କରିଛ ତୁମେ, ତେତେଦୂର ନିର୍ବିକାର ମୁଁ ନୁହେଁ । କେବଳ ଏତିକି ମନେରଖ ଯେ, ଗୋବିନ୍ଦ ଭଞ୍ଜଙ୍କୁ ଆଠରାଜା କରିବା ପଛରେ ଗୋଟାଏ

ବିଶିଷ୍ଟ ରାଜନୈତିକ ଉଦ୍ଦେଶ୍ୟ ମୋର ରହିଛି । (ପ୍ରହରୀ ସହିତ ଗଙ୍ଗାଧରଙ୍କର ପ୍ରବେଶ) ଏହି ଯେ କୁମାର ଗଙ୍ଗାଧର । (ପ୍ରହରୀ ଇଙ୍ଗିତ ପାଇ ଚାଲିଗଲା) କୁମାର ! ଘୁମୁସରର ଭାଗ୍ୟ ନେଇ ମୁଁ ବଡ଼ ଉଦ୍‌ବିଗ୍ନ । ତେଣୁ ମୋର କେତେକ ସନ୍ଦେହ ଦୂର କରିବା ଲାଗି, ମୁଁ ତୁମକୁ ଗୋଟାଏ କଥା ପଚାରିବାକୁ ଚାହେଁ ।

ଗଙ୍ଗା । ଆଦେଶ କରନ୍ତୁ ପିତା !

ମନ୍ତ୍ରୀ । କୁମାର ଜ୍ୟୋତିଷୀଙ୍କର ଗଣନା ଅନୁସାରେ କୁମାର ଧନଞ୍ଜୟ ଏ ରାଜ୍ୟର ରାଜା ହେଲେ, ତୁମର ଭବିଷ୍ୟତ୍ ଆଚରଣ ନେଇ ମହାରାଜ କିଛି ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇପାରୁ ନାହାନ୍ତି । ତାଙ୍କର ଆଶଙ୍କା—

ଗଙ୍ଗା । ବୁଝିଲି ରାଣିମା—ଆଉ ବେଶୀ କିଛି କହିବାର ଦରକାର ନାହିଁ । ପିତାଙ୍କର ପ୍ରଶ୍ନରୁ ମୁଁ ଆପଣମାନଙ୍କର ମନୋଭାବ ଠିକ୍ ଅନୁମାନ କରି ପାରୁଛି । ଗଙ୍ଗାଧର ଏ ରାଜ୍ୟର ଜ୍ୟେଷ୍ଠ ରାଜକୁମାର ସତ; ତଥାପି ସେ ଘୁମୁସର ଗୌରବ ଧନଞ୍ଜୟଙ୍କର ଔରସ ଜାତ ପୁତ୍ର । ପିତୃ ମର୍ଯ୍ୟାଦା ରକ୍ଷା କରିବାକୁ ସେ ଯଥେଷ୍ଟ ସକ୍ଷମ । ରାଜ୍ୟର ମଙ୍ଗଳ ସାଧନରେ ମୋର ଆଚରଣ ଯେ ଭବିଷ୍ୟତରେ କୌଣସି ଅନ୍ତରାୟ ସୃଷ୍ଟି କରିବ, ଏ ଆଶଙ୍କା ଆପଣ କଦାପି କରିବେ ନାହିଁ, ରାଣିମା ! ଧନ ଭଞ୍ଜଙ୍କ କଥା ଦୂରେ ଥାଉ, ଯଦି ମୋର କନିଷ୍ଠ ନୀଳକଣ୍ଠ ମଧ୍ୟ ଏ ରାଜ୍ୟର ରାଜା ହୁଅନ୍ତି, ତଥାପି ଗଙ୍ଗାଧର ଏ ରାଜ୍ୟର ଶ୍ରେଷ୍ଠ ସେବକ ରୂପେ ରାଜ ସିଂହାସନ ପ୍ରତି ଚିରଦିନ ଅକୃତ୍ରିମ ଅନୁରକ୍ତି ପ୍ରକାଶ କରିବାରେ କୌଣସି ଦ୍ୱିଧା ରଖିବ ନାହିଁ । ଘୁମୁସର ରାଜ ସିଂହାସନ ବିରୁଦ୍ଧରେ ବିଦ୍ରୋହ ସୃଷ୍ଟି କରିବା ଭଳି ବୀଜାଣୁ ଏ ଶରୀରର ରକ୍ତରେ ନାହାନ୍ତି, ରାଣିମା ! ଯଦି ଆପଣମାନଙ୍କର ବିଶ୍ୱାସ ନ ହୁଏ, ତେବେ, ଏହି ମୁଁ ପିତୃପଦ ସ୍ପର୍ଶକରି ଶପଥ କରୁଛି ଯେ, ଆଜିଠାରୁ ଘୁମୁସର ସିଂହାସନ ଲାଭ କରିବାର ଆଶା ବା କଳ୍ପନା ବା ଅଭିଳାଷ ସ୍ୱେଚ୍ଛାରେ ମୁଁ ଚିରଦିନ ଲାଗି ତ୍ୟାଗ କଲି । ଖାଲି ଏତିକି ନୁହେଁ, ଜନ୍ମଭୂମିର କଲ୍ୟାଣ କଲେ ଘୁମୁସରର ରାଜଶକ୍ତି ବିରୁଦ୍ଧରେ, ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଖଣ୍ଡେ ଅସ୍ତ୍ର ମୁଁ କଦାପି ଉତ୍ତୋଳନ କରିବି ନାହିଁ, ଏହି ମୋର ପ୍ରତିଜ୍ଞା । କିନ୍ତୁ ଘୁମୁସର ସିଂହାସନ

ନିକଟରେ ମୋର ଏତିକି ବିନୀତ ନିବେଦନ ଯେ, ଭବିଷ୍ୟତ୍‌ରେ ମୋର ପ୍ରିୟ ଘୁମୁସର ଯଦି କେବେ ଶତ୍ରୁ ହସ୍ତରେ ନିପତିତ ହୁଏ, ତେବେ ଘୁମୁସର ରାଜ୍ୟର ସୈନ୍ୟବାହିନୀ ପକ୍ଷରୁ ଶତ୍ରୁ ବିରୁଦ୍ଧରେ ଯୁଦ୍ଧକରି ସମର ଭୂମିରେ ମୋର ଶେଷ ଶଯ୍ୟା ରଚନା କରିବାର ଗୌରବରୁ ଯେପରି ମୁଁ ବଞ୍ଚିତ ନ ହୁଏ ।

ଧନ । (ପର୍ଯ୍ୟଙ୍କରୁ ଓହ୍ଲାଇ ପଡ଼ି, ଆଲିଙ୍ଗନ କରି) ସରଳ, ଉଦାର, ବୀର ପୁତ୍ର ମୋର । ମନ୍ତ୍ରୀ ଦେଖ ! ଆଜି ମୋର ଭାରି ଗର୍ବ ହୁଏ ଯେ. ଧନଞ୍ଜୟ ଭଞ୍ଜ ଏପରି ଗୋଟାଏ ପୁତ୍ରକୁ ଜନ୍ମଦେଇ ପାରିଛି । କୁମାର ! ଅତ୍ୟଧିକ ଆନନ୍ଦର ଉଚ୍ଛ୍ୱାସରେ ମୋର କଣ୍ଠ ରୁଦ୍ଧ ହୋଇ ଯାଉଛି । ମୋତେ କ୍ଷମା କର ବତ୍ସ ! ଘୁମୁସର ଜନନୀର ଭାଗ୍ୟ ଯେ ତୁମଭଳି ଗୋଟାଏ ସନ୍ତାନକୁ ସେ ତାର କୋଳରେ ପାଇ ପାରିଛି । କିନ୍ତୁ— (ରୁଦ୍ଧ କଣ୍ଠରେ) ବିଶ୍ୱାସ କର କୁମାର ! ରାଜା ଧନଞ୍ଜୟ ପ୍ରକୃତରେ ବଡ଼ ହତଭାଗ୍ୟ । (କହି ଅଶ୍ରୁ ପୋଛି ଉନ୍ମାଦ ଭଳି ସେଠାରୁ ଚାଲିଗଲେ ।)

ଗଙ୍ଗା । ରାଣିମା ! ମୋର ବିଶ୍ୱାସ, ମୁଁ ବର୍ତ୍ତମାନ ଆପଣଙ୍କର ସମସ୍ତ ସନ୍ଦେହ, ସମସ୍ତ ଆଶଙ୍କା ଦୂର କରି ପାରିଛି ।

ମନ୍ତ୍ରୀ । ମୋତେ ଆଉ ଅଧିକ ଲଜ୍ଜା ଦିଅ ନାହିଁ କୁମାର ! ମୋର ଦୁର୍ଭାଗ୍ୟ ଯେ ମୁଁ ତୁମର ଗର୍ଭଧାରିଣୀ ନୁହେଁ ।

ଗଙ୍ଗା । ତଥାପି ରାଣିମା, ଆପଣହିଁ ମାତୃହୀନ ଗଙ୍ଗାଧରର ଜନନୀ । ସୁତରାଂ ମୋର ଶିର ନମସ୍ୟା । ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ । (କହି ମାତୃପଦରେ ନମସ୍କାର କରି ଧୀରେ ଧୀରେ ଚାଲିଗଲେ ।)

ମନ୍ତ୍ରୀ । (ସ୍ୱଗତ) ଓଃ, ମୋର ଆଶା ପଥରୁ ଗୋଟାଏ କଣ୍ଟକ ଆଜି ଆପେ ଆପେ ଦୂର ହେଲା । ରାଜକୁମାର ଗଙ୍ଗାଧର ! ତୁମେ ଚତୁର ଯେ, ଘୁମୁସର ସିଂହାସନର ଲୋଭ ସ୍ୱଇଚ୍ଛାରେ ସମ୍ବରଣ କରି ପାରିଛ । ନଚେତ୍ ମନ୍ତ୍ରୀର ବିଷାକ୍ତ ଉଷ୍ଣ ନିଶ୍ୱାସରେ ତୁମର ଧ୍ୱଂସ ଅନିବାର୍ଯ୍ୟ ହୋଇଥାନ୍ତା । ଆଉ ଅନ୍ଧ ରାଜା ଧନଞ୍ଜୟ ! ନିକଟରେ ବୁଝିପାରିବ ଯେ, କାପୁରୁଷର ଗତିରୋଧ କରିବାକୁ ଏହି ମନ୍ତ୍ରୀର ସାମାନ୍ୟ ତର୍ଜନୀ ସଞ୍ଚାଳନହିଁ ଯଥେଷ୍ଟ ।

ଅନ୍ତରେ ବିଧାତାଙ୍କୁ ମଧ ସ୍ୱୀକାର କରିବାକୁ ପଡ଼ିବ ଯେ, ଘୁମୁସର ସିଂହାସନର ଅଧିକାରୀ କୁମାର ନୀଳକଣ୍ଠ, ଉଦ୍ଦଣ୍ଡ ଘନ ଭଞ୍ଜ ନୁହେଁ ।

( ଦ୍ରୁତ ପ୍ରସ୍ଥାନ )

[ ଅପର ଦିଗରୁ ଧୀରେ ଧୀରେ ଉପେନ୍ଦ୍ରଙ୍କର ପ୍ରବେଶ । ତରୁଣ ବୟସ । ବାମ ହସ୍ତରେ ବଡ଼ାଏ ତାଳପତ୍ର ପୋଥି । ଅନ୍ୟ ହସ୍ତରେ ଲେଖନୀଟିଏ । ବୟସ ପ୍ରାୟ ୨୨।୨୩ ବର୍ଷ ।]

ଉପେନ୍ଦ୍ର । କାହାନ୍ତି ମହାରାଜ ! ଏଠାରେ ମଧ ନାହାନ୍ତି ତ ? ଏତେ ବଡ଼ ମନ୍ତ୍ରଣା କକ୍ଷରେ ସମସ୍ତ ଆସନ ଯେ ଶୂନ୍ୟ । (ଧୀରେ ଧୀରେ ପଲଙ୍କ ନିକଟକୁ ଅଗ୍ରସର ହୋଇ ବାତାୟନକୁ ଦେଖି) ବାଃ—କି ଚମତ୍କାର । ଏ ଯେ କୁଳାଡ଼ ଗିରିଶ୍ରେଣୀର ଅସ୍ତରାଗ ବୋଳା ଗରିମାମୟ ଅପରୂପ ଦୃଶ୍ୟ ! ସନ୍ଧ୍ୟାର ପ୍ରାକ୍‌କାଳରେ ଧ୍ୟାନମଗ୍ନ ତାପସର ଗମ୍ଭୀରତା ଘେନି ଦଣ୍ଡାୟମାନ । ଆଶ୍ଚର୍ଯ୍ୟ ! ପ୍ରକୃତିର ଏହି ଶ୍ୟାମସନ୍ଧ୍ୟାର ଆଖି ଆଗରେ ରହି, ମାନବ ଏଠାରେ ବସି ପୁଣି ରାଜନୈତିକ କୂଟନୀତିର ମନ୍ତ୍ରଣା କରେ । (ସେଠାରୁ ଫେରି ଆସିବା ସମୟରେ ତାଳପତ୍ର ପୋଥି-ଗୁଡ଼ାକ ଉପରେ ଦୃଷ୍ଟି ପଡ଼ିଗଲା) ଏହି ଯେ, କବି ଧନଞ୍ଜୟଙ୍କର ସମ୍ପତ୍ତି ! ଓହୋ—ବୁଝିଲି । ପିତାମହ ବୋଧହୁଏ ରାଜକାର୍ଯ୍ୟ ଛଳନାରେ ଏହି ମନ୍ତ୍ରଣା କକ୍ଷକୁ ପଳାଇ ଆସନ୍ତି ନୀରବରେ ବାଣୀ ଆରାଧନା କରିବା ନିମିତ୍ତ । (କହି ପୋଥିଗୁଡ଼ିକ ଗୋଟି ଗୋଟି କରି ଦେଖିଲେ) ଏତ ମଦନ ମଞ୍ଜରୀ କାବ୍ୟ, ଅନଙ୍ଗରେଖା କାବ୍ୟ, ତ୍ରିପୁର ସୁନ୍ଦରୀ କାବ୍ୟ, ଇଚ୍ଛାବତୀ କାବ୍ୟ, ଚୌପଦୀ ଭୂଷଣ—ଏହି ଯେ ରଘୁନାଥ ବିଳାସ କାବ୍ୟ ! (ଗୋଟାଏ ଛାଗା ଖୋଲି ପଢ଼ିଲେ ।)

"କୁମୁଦ କୁମୁଦ ମୋଦକାରୀ ରାମ ମୂର୍ତ୍ତି
ସୁଗ୍ରୀବ ସୁଗ୍ରୀବ ପରେ ବିଦିତ ଯା କୀର୍ତ୍ତି,
ସୁଲକ୍ଷଣ ଲକ୍ଷଣ ଯାହାର ଅନୁଚର,
ଶୁଭରତ ଭରତ ଯାହାର ପ୍ରୀତିକର
ଶତ୍ରୁଘନ ଶତ୍ରୁଘନ ଯାର ଅଙ୍କକାରୀ,
ଅସୁର ଅସୁର ହାରି ଅଯୋଧ୍ୟା ବିହାରୀ ।"

ବାଃ ! କି ସୁନ୍ଦର, ସରଳ ଆଡ଼ମ୍ବରଶୂନ୍ୟ ରଚନା ! ପିତାମହ । କବି ! ମୋର ନମସ୍କାର ଗ୍ରହଣ କରନ୍ତୁ । (କହି ପୋଥିକୁ ନମସ୍କାର କରିବାକୁ ଗଲବେଳେ, ଅପର ପାର୍ଶ୍ୱରୁ ବୃଦ୍ଧ ରାଜା ଧନଞ୍ଜୟଙ୍କର ପ୍ରବେଶ ।)

ଧନ । (ଉପେନ୍ଦ୍ରଙ୍କୁ ଦେଖି) କିଏ, ଉପେନ୍ଦ୍ର ? ତରୁଣ କବି, ସେଠାରେ କଣ କରୁଛ ? କାହାକୁ ନମସ୍କାର କରୁଛ ?

ଉପେନ୍ଦ୍ର । (ଫେରି ଚାହିଁ) ମୋର ପିତାମହ, ଘୁମୁସର ଗୌରବ ଧନଞ୍ଜୟ ଭଞ୍ଜଙ୍କର କାବ୍ୟ ଓ କବି ପ୍ରତିଭାକୁ ମୋର ସମ୍ମାନ ଜଣାଉଛି, ମହାରାଜ !

ଧନ । ଉପେନ୍ଦ୍ର ! ତରୁଣ ତୁମେ, ତୁମକୁ ଏ ନୂତନ ଦୀକ୍ଷା ଦେଲା କିଏ ? ରାଜକୁମାର ଜନୋଚିତ ରାଜତ୍ୱର ସ୍ୱପ୍ନ ନ ଦେଖି, ତୁମେ ଏ ନୀରସ ତାଳପତ୍ର ପୋଥିକୁ ନମସ୍କାର କରି କବିପୂଜାର ଦୀକ୍ଷା ନେଲ କେଉଁଠାରୁ ?

ଉପେନ୍ଦ୍ର । ଯେଉଁଦିନ ମହାରାଜା ଧନଞ୍ଜୟ ରସକଲ୍ଲୋଳର କାନ୍ତ କୋମଳ ପଦାବଳୀ ଆବୃତ୍ତି କରୁ କରୁ କବି ଦୀନକୃଷ୍ଣଙ୍କର ପ୍ରଶଂସା କୀର୍ତ୍ତନରେ ଶତମୁଖ ହୋଇ ଉଠିଥିଲେ, ସେହିଦିନଠାରୁ ମହାରାଜ ।

ଧନ । (ଗମ୍ଭୀର ଭାବେ) ସେ ସବୁ କଳ୍ପନାବିଳାସକୁ ତ୍ୟାଗକର ଉପେନ୍ଦ୍ର ! ନୀଳକଣ୍ଠର ସନ୍ତାନ ତୁମେ । ରାଜକୁମାର, ରାଜ ସିଂହାସନର ସ୍ୱପ୍ନଦେଖ, ରାଜନୀତିର ଚର୍ଚ୍ଚାକର, ରାଜତ୍ୱର କଳ୍ପନା କର ।

ଉପେନ୍ଦ୍ର । ଏ ଉପଦେଶ ମୋ ପ୍ରତି କାହିଁକି ପିତାମହ ? ରାଜନୀତି ସହିତ ଯେ ମୋର ଅହିନକୁଳ ସମ୍ପର୍କ । ମୋର ରାଜତ୍ୱର କଳ୍ପନା ଏହି ପୋଥି ଭିତରେ । ଆଜି ପର୍ଯ୍ୟନ୍ତ ମୁଁ ସ୍ୱପ୍ନ ଦେଖି ଆସିଛି, ଭାରତର ଅମର କବି କାଳିଦାସଙ୍କର ଅପରୂପ ସୃଷ୍ଟି ମେଘଦୂତରେ । ମୁଁ ମନେକରେ, ମୋର ଜୀବନର ଚରମ ସାର୍ଥକତା ସେହିଠାରେ । ରାଜ ସିଂହାସନର ମୂଲ୍ୟ ଉପେନ୍ଦ୍ର ନିକଟରେ ଅତି ଅକିଞ୍ଚିତ୍କର । ସେ ଲକ୍ଷ୍ମୀଙ୍କର ବରପୁତ୍ର ହେବା ଅପେକ୍ଷା ସରସ୍ୱତୀଙ୍କର ଦାସାନୁଦାସ ହେବାକୁ ଅଧିକ ପସନ୍ଦ କରେ ପିତାମହ !

ଧନ । (ଗମ୍ଭୀର ହୋଇ) ତା'ତ ହୋଇ ପାରେ ନା, ତୁମେ ଯେ ରାଜକୁମାର । ଏ ଯେ—ଏ ଯେ—ଗୋଟାଏ—ନା—

ଉପେନ୍ଦ୍ର । ପିତାମହ, ମୋର ମନେ ହୁଏ, ଆପଣ ଯେପରି ଆଜି ଅତ୍ୟନ୍ତ ଅନ୍ୟମନସ୍କ । ନଚେତ୍ କବି ଧନଞ୍ଜୟଙ୍କ ମୁଖରୁ କଦାପି ଏ ସେପରି ଗଦ୍ୟର ଅବତାରଣା ହୁଅନ୍ତା ନାହିଁ ।

ଧନ । ଠିକ୍ କହୁଛ ବତ୍ସ ! ଆଜି ମୋର ଟିକିଏ ମସ୍ତିଷ୍କ ବିକୃତ ଘଟିଛି । (ଟିକିଏ ରହି) ଛାଡ଼, ଅଚ୍ଛା, ତୁମର ଲଳିତ ମଧୁର କଣ୍ଠରେ ଗୋଟିଏ ଛାନ୍ଦ ଶୁଣାଇ ମତେ ଟିକିଏ ସଞ୍ଜୀବନୀ ଦେଇ ପାରିବ, ଉପେନ୍ଦ୍ର ? ମହାରାଜ ଧନଞ୍ଜୟ ବାସ୍ତବିକ ଆଜି ବଡ଼ ପରିଶ୍ରାନ୍ତ । (କାନ୍ଥ ପଲଙ୍କ ଉପରେ ବସି ପଡ଼ିଲେ ।)

ଉପେନ୍ଦ୍ର । ବେଶ୍—(ପାଖରେ ବସି, ନିଜ ତାଳପତ୍ର ପୋଥିରୁ ଗାଇଲେ)—

ରସିକ ବଗୁର କରେ, ଦାପଦାନ ଚାଉଁକରେ
ପ୍ରୟାଗେ ସ୍ନାନ ମକରେ, ଯେଉଁ ନ କରେ,
ଶିରେଣ କି ସେ ଅଳୋକରେ, ଉତ୍ତମ ବ୍ରମା-ଅଙ୍କରେ,
ଯେବେ ବସେ ପଲ୍ୟଙ୍କରେ, କି ଭ୍ରମକରେ,
ପୂର୍ବେ ସେବଥିଲେ ଶଙ୍କରେ,
ସେ ଫଳ୍ପ ଧରି ଉରଜ ଶ୍ରୀଫଳ କରେ ।
ସେ ଖ୍ୟାପିଥାଏ ଯାଗରେ, ଶିବରାତ୍ରି ଉଜାଗରେ,
ବସେ କୈଳାସ ନଗରେ, ବାନ୍ଧ ଯୋଗରେ,
ସେ ଯିନା ଲେଖା ନାଗରେ, ଘୁହାଇ ବାଳା ସଙ୍ଗରେ,
କାଶୀ ବସାଇ ଅଗରେ, ଅନୁରାଗରେ,
ପ୍ରଶଂସ୍ୟ ସେ ସର୍ବ ନାଗରେ,
ଯାର କୁହାଇ ବରହ ଉରଗ ଗରେ ।

ଧନ । (ଗୀତ ଶୁଣି ସାରି, ଆଶ୍ଚର୍ଯ୍ୟ ମିଶା ଆନନ୍ଦରେ)—ଚମତ୍କାର—ଏ ଯେ ଅପୂର୍ବ ବାଣୀ ବିନ୍ୟାସ ! ଉପେନ୍ଦ୍ର, କହିପାରିବ କାହାର ଲେଖନୀ ମୁନରୁ ଏ ମଧୁର କାବ୍ୟ ଝଙ୍କାର ଝରି ପଡ଼ୁଛି ? କାହାର, କାହାର ଏ ରଚନା ?

ଉପେନ୍ଦ୍ର । (ନମ୍ରଭାବରେ) ଆପଣଙ୍କର ଦାସାନୁଦାସ ଉପେନ୍ଦ୍ରର ଅପରିପକ୍ୱ କଲମର ଏହା ଏକ ଛନ୍ଦୋବଦ୍ଧ ଉଦ୍ଭାସ, ମହାରାଜ !

ଧନ । କଣ କହିଲ ? ତୁମର, ତୁମର ଏ କାବ୍ୟକୃତି ଉପେନ୍ଦ୍ର ? ଘୁମୁସର ରାଜବଂଶର ଶିରା ହଳାହଳ ମଧ୍ୟରେ ଏପରି କବିତା ଧାରାର ସମାବେଶ କି ସମ୍ଭବ ? ପରିହାସ କର ନାହିଁ ଉପେନ୍ଦ୍ର, ସତ୍ୟ କୁହ, ଏ ଛନ୍ଦର ସ୍ରଷ୍ଟା କିଏ ?

ଉପେନ୍ଦ୍ର । ଯେଉଁ ଅସମାପ୍ତ ପ୍ରେମ ସୁଧାନିଧି କାବ୍ୟକୁ ଆପଣ ସେଦିନ ଝୁଲଣ ପୂର୍ଣ୍ଣମୀରେ ଶୁଣିଥିଲେ, ଏହା ସେହି ପ୍ରେମ ସୁଧାନିଧିର ଅନ୍ୟ ଏକ ଛନ୍ଦ, ପିତାମହ ! ସମଗ୍ର କାବ୍ୟଟିକୁ ଆପଣଙ୍କୁ ଶୁଣାଇବା ଲାଗି, ଆଜି ମୁଁ ଏଠାକୁ ଆସିଥିଲି ମାତ୍ର ।

ଧନ । (ଆଲିଙ୍ଗନ କରି) ଜଗନ୍ନାଥ ତୁମକୁ ପରମାୟୁ ଦେଇଥାନ୍ତୁ କବି । ଘନଘଟା ସମାଚ୍ଛନ୍ନ ଘୁମୁସର ଗଗନର ଏକମାତ୍ର ଧ୍ରୁବତାରା ତୁମେ । ମୁଁ ଆଶୀର୍ବାଦ କରୁଛି, ତୁମର କବିତା ସୌରଭରେ ସମଗ୍ର କଳିଙ୍ଗ ଜନନୀଙ୍କର ଗୌରବ ଦିନେ ନିଶ୍ଚୟ ଫୁଟି ଉଠିବ ।

ଉପେନ୍ଦ୍ର । (ପ୍ରଣତ ହୋଇ) ଆପଣଙ୍କର ଆଶିଷକୁ ମୁଁ ଅବନତ ମସ୍ତକରେ ଗ୍ରହଣ କରୁଛି, ପିତାମହ !

ଧନ । ଏତେଦିନ ପର୍ଯ୍ୟନ୍ତ ମୋର ଗୋଟାଏ ଅହଙ୍କାର ଥିଲା ଯେ, ଧନଞ୍ଜୟ ଭଞ୍ଜର କାବ୍ୟ ସୃଷ୍ଟି କଳିଙ୍ଗରେ ସର୍ବୋଚ୍ଚ ସମ୍ମାନ ଲାଭ କରିବ । କିନ୍ତୁ ଆଜି ଦେଖୁଛି, ଧନଞ୍ଜୟର ସାଧନାକୁ ଏ ଦେଶରେ ଅତିକ୍ରମ କରି ପାରେ, କେବଳ ମାତ୍ର ଜଣେ ପ୍ରତିଭାଶାଳୀ ତରୁଣ କବି ଏବଂ ଏହି ପ୍ରେମ ସୁଧାନିଧି କାବ୍ୟହିଁ ତାର ପ୍ରାରମ୍ଭିକ ସୂଚନା ମାତ୍ର ।(ଧୀରେ ଉଠିଯାଇ

ନିଜର କାବ୍ୟ ରଘୁନାଥ ବିଳାସ ପୋଥିକୁ ଆଣି, ଉପେନ୍ଦ୍ରଙ୍କୁ ଦେଇ) ଅଚ୍ଛା—ଉପେନ୍ଦ୍ର ! ମୋର ଏହି ରଘୁନାଥ ବିଳାସ କାବ୍ୟର ଚିତ୍ରକୂଟ ପର୍ବତର ବର୍ଣ୍ଣନାଟି ସ୍ୱର ସଂଯୋଗ କରି ଗାଇ ପାରିବ ?

ଉପେନ୍ଦ୍ର । (ପୋଥି ଖୋଲି ଗାଇଲେ)—

ଦେଖ ଦେଖ କୋମଳାଙ୍ଗୀ ଏ ବନ ଶୋଭନ,
ଚିତ୍ର ଚିତ୍ରକୂଟେ ଏହୁ ହୋଇଛୁ ରଞ୍ଜନ ।
ଧବ ଧବ ଅଳଙ୍ଘନ କରିଛୁ ବଲ୍ଲଭୀ,
କୂଟ କୂଟଙ୍କରେ ଏହୁ ଶୋଭି ଅଛୁ ଧରି ।
ପୁନାଗ ପୁନାଗ ଗଣେ ହୋଇଛୁ ମଣ୍ଡିତ,
ନଗ ନଗ ଗଣେ ଏହୁ ଦିଶଇ ବଢିତ ।
ଦ୍ୱିଜ ଦ୍ୱିଜ ମୁଖରବେ ପୂରିଛୁ କାନନ,
ସୁମନା ସୁମନା ଦେଖ ଅବନୀ ଶୋଭନ ।

ଧନ । ଏଥିରେ ପ୍ରମୁଖର ପ୍ରକୃତିର ଆଲେଖ୍ୟ ଦେବାର ଚେଷ୍ଟା କରିଛି ମୁଁ ଉପେନ୍ଦ୍ର । ଅଚ୍ଛା—ତୁମେ ତ ମୋର ସମଗ୍ର ରଘୁନାଥ ବିଳାସ କାବ୍ୟଟିକୁ ପଢ଼ିଛ । କିପରି ଲାଗିଲା ତୁମକୁ କବି ?

ଉପେନ୍ଦ୍ର । ଏ କାବ୍ୟ ପୂର୍ବବର୍ତ୍ତୀ ସମସ୍ତ କାବ୍ୟଠାରୁ ଉତ୍କୃଷ୍ଟ ନିଶ୍ଚୟ । ସରଳ ଅନାଡ଼ମ୍ବର ଭାଷା—ସୁନ୍ଦର ବର୍ଣ୍ଣନା ରୀତି—କିନ୍ତୁ—

ଧନ । କୁହ କବି ! କିନ୍ତୁ କହି ନୀରବ ହେଲ ଯେ ? ନିର୍ଭୟରେ ତୁମର ମନ୍ତବ୍ୟ ପ୍ରକାଶ କର ।

ଉପେନ୍ଦ୍ର । ମୋତେ କ୍ଷମା କରିବେ ପିତାମହ ! ଏ କାବ୍ୟରେ କଳା-ଚାତୁରୀ, ରସମାଧୁରୀ ଓ ଅଳଙ୍କାରର ଯଥାଯଥ ବିକାଶ ନାହିଁ । ତେଣୁ ମୋର ବୋଧହୁଏ, ଏ କାବ୍ୟଟି ଆପଣଙ୍କର ଯଥାସମ୍ଭବ ସୁନ୍ଦର ହୋଇପାରି ନାହିଁ ।

ଧନ । (ଗମ୍ଭୀର ହୋଇ) ତରୁଣ କବି ! ଏହାଠାରୁ ବଳି ଉତ୍ତମ, ଏହାଠାରୁ ବଳି ଅଧିକ ସର୍ବାଙ୍ଗସୁନ୍ଦର କାବ୍ୟ ଲେଖି ପାରିବ ତୁମେ ?

୨୧

ଉପେନ୍ଦ୍ର । କଣ୍ଠସ୍ୱ, ଆପଣଙ୍କର ଆଶୀର୍ବାଦ ଥିଲେ, ଏହି ଗ୍ରାମ ଚରିତକୁ ଅବଲମ୍ବନ କରି କାବ୍ୟ ଲେଖି ଛମୁଙ୍କର ପ୍ରଶଂସା ଭାଜନ ହୋଇ ପାରିବି।

ଧନ । (ଉଦ୍‌ବେଗପୂର୍ଣ୍ଣ) ସର୍ବାନ୍ତଃକରଣରେ ଆଶୀର୍ବାଦ କରୁଛି ବତ୍ସ ! ତୁମର ଏହି କଳ୍ପନା ଫଳବତୀ ହେଉ । ଆଉ ଅଳ୍ପଠାରୁ, ବୃଦ୍ଧ ଧନଞ୍ଜୟ ମଧ୍ୟ, ତାର ତରୁଣ ପ୍ରତିଭାଶାଳୀ ପୌତ୍ରର ସେହି ଗୌରବମୟ ମହା ଦିବସକୁ ଅପେକ୍ଷା କରି ରହିଲା, ଯେଉଁଦିନ ସମଗ୍ର କଳିଙ୍ଗ ସାମ୍ରାଜ୍ୟର ବରିଷ୍ଠ ଓଡ଼ିଆ ଜାତି, ଏହି ତରୁଣ କବିକୁ, ତାର କାବ୍ୟସମ୍ଭାର ଦେଖି ଅଭିନନ୍ଦନ କରିବ ସମଗ୍ର ଜାତିର ଶ୍ରେଷ୍ଠ କବି ରୂପରେ ।

ଉପେନ୍ଦ୍ର । (ମସ୍ତକ ଅବନତ କରି—ନୀରବରେ ଆଶୀର୍ବାଦ ଗ୍ରହଣ କଲେ । )

(ଠିକ୍ ସେହି ସମୟରେ କୁମାର ନୀଳକଣ୍ଠ ମନ୍ତ୍ରଣା କକ୍ଷକୁ ପ୍ରବେଶ କଲେ ।)

ନୀଳ । (ଉପେନ୍ଦ୍ରଙ୍କୁ ଦେଖି) ଜେଜାମଣି ତୁମେ ଏଠାରେ ଯେ ? ଏଟା ଯେ ମନ୍ତ୍ରଣା କକ୍ଷ । ଏଠାରେ ତୁମର କି ପ୍ରୟୋଜନ ?

ଉପେନ୍ଦ୍ର । ମୋର ଏହି ପ୍ରେମ ସୁଧାନିଧି କାବ୍ୟଟିକୁ ପିତାମହଙ୍କୁ ଦେଖାଇବାକୁ ଏଠାକୁ ଆସିଥିଲି । କିନ୍ତୁ ପିତା ! ମନ୍ତ୍ରଣା କକ୍ଷକୁ ଆମ୍ଭ-ମାନଙ୍କର ପ୍ରବେଶ କି ଏକାବେଳକେ ନିଷେଧ ?

ନୀଳ । ହଁ, ନିଷେଧ । କାରଣ ଏଠାରେ କେବଳ ଶାସନ ସମ୍ପର୍କରେ କୂଟ ରାଜନୀତିର ମନ୍ତ୍ରଣା କରାଯାଏ, ଆଉ ସେହି ମନ୍ତ୍ରଣା ସର୍ବଦା ଗୋପନୀୟ ରଖିବା, ଅନ୍ତତଃ ରାଜ୍ୟର ମଙ୍ଗଳ ଦୃଷ୍ଟିରୁ ନିତାନ୍ତ ବାଞ୍ଛନୀୟ । ବୁଝିଲ ଜେଜାମଣି ? ( ତା ପରେ ମହାରାଜ ଧନଞ୍ଜୟଙ୍କୁ ଲକ୍ଷ୍ୟ କରି ) ମହାରାଜ ! ଶୁଣିଲି,କୁମାର ଗଙ୍ଗାଧର କାଲେ ସ୍ୱେଚ୍ଛାରେ ଘୁମୁସର ସିଂହାସନର ଦାବୀ ଅଳ୍ପଠାରୁ ଚିରଦିନ ଲାଗି ତ୍ୟାଗ କଲେ, ଏ କଥା କଣ ସତ୍ୟ ?

ଧନ । ହଁ, ରାଜ୍ୟର ହିତ ଦୃଷ୍ଟିରୁ ସେ ଗୋଟାଏ ଅଭୂତପୂର୍ବ ତ୍ୟାଗର ଆଦର୍ଶ ଆଜ ମୋ ନିକଟରେ ଦେଖାଇ ଦେଇଗଲେ, ଯାହା ତୁମ୍ଭମାନଙ୍କର କଳ୍ପନାରେ ସୁଦ୍ଧା ସ୍ଥାନ ପାଇବ ନାହିଁ ।

ନୀଳ । ବେଶ୍, ତା ହେଲେ, ଏ ରାଜ୍ୟର ସିଂହାସନରେ ମୋର ଦାବୀ ତ ସର୍ବାଗ୍ରେ । ଏଥିରେ ତ ବର୍ତ୍ତମାନ କୌଣସି ଅନ୍ୟାୟ ନାହିଁ କି କୌଣସି ପ୍ରତିବନ୍ଧକ ନାହିଁ ?

ଧନ । କିନ୍ତୁ ଯୋଗୀରାଜ ଅଶ୍ୱତ୍ଥାମାଙ୍କ ଭବିଷ୍ୟତ୍ ବାଣୀ ତ ଅଛି ? ସେ ତ କୁମାର ଘନ ଭଞ୍ଜଙ୍କର ଦାବୀ ପ୍ରଚାର କରିଗଲେ । ତାକୁ ତ ଏଡ଼ାଇବାର ହାତ ମୋର ନାହିଁ, କୁମାର !

ନୀଳ । ଗୋଟାଏ ଭଣ୍ଡ ସନ୍ନ୍ୟାସୀର ବାଣୀ ଶୁଣି ଘୁମୁସରରାଜ ଯେ ଏତେ ଭୀତ, ତ୍ରସ୍ତ ହୋଇ ପାରନ୍ତି, ଏହା ମୋର ଧାରଣା ନ ଥିଲା ।

ଧନ । (କ୍ରୋଧେ) କୁମାର, ଘୁମୁସର ରାଜାଙ୍କର ଶାନ୍ତାଧାରକୁ ପଦେ ପଦେ ଏପରି ସମାଲୋଚନା କରିବାର ସ୍ପର୍ଦ୍ଧା ତୁମର ଅସହ୍ୟ । ମନେରଖ, ଧନଞ୍ଜୟ ଭଞ୍ଜ ଏହାର ପ୍ରତିକାର କରିବାକୁ ପୁତ୍ର ବୋଲି ଟିକିଏ ସୁଦ୍ଧା କୁଣ୍ଠିତ ହେବ ନାହିଁ ।

ନୀଳ । (ଉତ୍ତେଜିତ ହୋଇ) ମହାରାଜ ! ରାଜତ୍ୱର ଆବରଣ ତଳେ ଆପଣଙ୍କର ଏ ଯଥେଚ୍ଛାଚାର ମଧ୍ୟ ଅସହ୍ୟ । ଏହା ପକ୍ଷପାତିତାର ନାମାନ୍ତର ମାତ୍ର । ଗଙ୍ଗାଧରଙ୍କର ସିଂହାସନ ତ୍ୟାଗ ପରେ, ଏ ସିଂହାସନ ମୋର । ଏ ଦାବୀରୁ ମୁଁ ତିଳେ ମାତ୍ର ପାଶ୍ଚାତ୍ପଦ ହେବ ନାହିଁ ।

ଧନ । (କ୍ରୋଧେ) ନୀଳକଣ୍ଠ !

ଉପେନ୍ଦ୍ର । ଏହାହିଁ କି ଆପଣଙ୍କର ରାଜନୈତିକ କୁଟମନ୍ତ୍ରଣାର ଗୋଟାଏ ନିଦର୍ଶନ, ପିତା ?

ନୀଳ । ଚୁପ୍ କର ଉପେନ୍ଦ୍ର ! ରାଜ୍ୟର ମମତା ତୁମେ କଣ ବୁଝିବ ବାଳକ ?

ଉପେନ୍ଦ୍ର । ଆଉ ବେଶୀ କିଛି ବୁଝିବାର ପ୍ରୟୋଜନ ନାହିଁ ପିତା ! ଯଥେଷ୍ଟ ବୁଝିଲିଣି । ପିତାମହ ଜୀବିତ ଥାଉଁ ଥାଉଁ, ସିଂହାସନ ପ୍ରତି ଆପଣଙ୍କର ଏ ଯେଉଁ ଅଦମ୍ୟ ଲାଳସା, ଏ ଯେଉଁ ଅସ୍ୱାଭାବିକ ଲୋଲୁପତା, ତାହା ଦେଖି, ବାଳକ ମୁଁ ଆଜି ବାସ୍ତବିକ ପ୍ରମ୍ଳୀତ । ରାଜ୍ୟର ମମତାକୁ ନିଶ୍ଚୟ ଧନ୍ୟ ବୋଲି କହିବାକୁ ହେବ ।

ନୀଳ । ଭୁଲିଯାଅ ନା ଉପେନ୍ଦ୍ର ! ମୁଁ ସିଂହାସନ ତ୍ୟାଗ କଲେ, ମୋ ଅନ୍ତେ ଏ ରାଜ୍ୟର କର୍ଣ୍ଣଧାର ହେବ ତୁମେ ।

ଉପେନ୍ଦ୍ର । ଚମତ୍କାର ! ମୁଁ ପ୍ରଶଂସା ନ କରି ରହିପାରୁ ନାହିଁ ପିତା ! ଏହାହିଁ ଯଦି ଆପଣଙ୍କର ରାଜନୀତି, ତେବେ ସେହି ପାପ ରାଜ୍ୟ ଓ ଦୃଶ୍ୟ ରାଜନୀତି ମସ୍ତକରେ ମୋର ସହସ୍ର ପଦାଘାତ । ମୋତେ ରାଜ୍ୟର ପ୍ରଲୋଭନ ଦେଖାଉଛନ୍ତି ? ପିତା, କଣ ହେବ ମୋର ଏହି ଧୂଳି ମାଟିର ଦୁନିଆର ରାଜ୍ୟ ? ଏହି କ୍ଷୁଦ୍ର ଦୁନିଆର ରାଜ୍ୟର ପରିବର୍ତ୍ତିରେ ମୁଁ ପାଇଛି କଳ୍ପନାର ଏକ ଅଖଣ୍ଡ ସାମ୍ରାଜ୍ୟ, ଯେଉଁଥିରେ କାଳିଦାସ, ଭବଭୂତି, ଜୟଦେବ, ଜଗନ୍ନାଥ, ସାଳେପା, ଦୀନକୃଷ୍ଣ ଆଦି ମହାକବିଗଣ ରାଜତ୍ୱ କରି ଯାଇଛନ୍ତି । ସେ ରାଜ୍ୟରେ ଆପଣଙ୍କର ଏହି ହୀନ ପ୍ରଲୋଭନ ନାହିଁ କି ମନୁଷ୍ୟର ମନୁଷ୍ୟ ପ୍ରତି ଘୃଣା ବିଦ୍ୱେଷ ପର୍ଯ୍ୟନ୍ତ ନାହିଁ । ସେଠାରେ ଅଛି କେବଳ, ଅଖଣ୍ଡ ଶାନ୍ତି, ଶାଶ୍ୱତ ଆନନ୍ଦ, ଗୋଟାଏ ଅନାବିଳ ତୃପ୍ତି ଓ ଗୋଟାଏ ପବିତ୍ର ଝଙ୍କାର ।

ଧନ । (ଉପେନ୍ଦ୍ରଙ୍କୁ କୋଳକୁ ଟାଣି ନେଇ) ବିଷ ବୃକ୍ଷରୁ ମଧ୍ୟ ଗୋଟାଏ ଅମୃତ ଫଳର ସମ୍ଭବ ହୋଇପାରେ, କବି !

ନୀଳ । କେନାମଣି, ମୋର ପୁତ୍ର ତୁମେ । ମୋ ସମ୍ମୁଖରେ ଏପରି ଅବାଧ୍ୟତା, ତୁମ ପକ୍ଷରେ ଶୋଭା ପାଏ ନା ।

ଉପେନ୍ଦ୍ର । କାହିଁକି ପିତା ? ମୋର ଆଦର୍ଶରେ ତ କିଛି ମାତ୍ର ବ୍ୟତିକ୍ରମ ହୋଇ ନାହିଁ ? ଆପଣ ଆପଣଙ୍କର ବୃଦ୍ଧ ପିତାଙ୍କ ପ୍ରତି ଅବମାନନା ଦେଖାଇ, ଯେଉଁ ମହାନ୍ ଆଦର୍ଶ ବର୍ତ୍ତମାନ ମୋ ଆଗରେ ଉପସ୍ଥାପିତ କରିଛନ୍ତି, ଠିକ୍ ସେହି ଆଦର୍ଶ ଯଦି ଆପଣଙ୍କର ପୁତ୍ର, ତାର ପିତାଙ୍କ ପ୍ରତି ଦେଖାଏ, ତେବେ ମୋର ଆଚରଣ ଅଶୋଭନୀୟ ହେଲା କେଉଁଠାରେ ?

ନୀଳ । (କ୍ରୋଧେ) ଏତେଦୂର ? ତେବେ ଏହି ନିଅ ତୁମର ଉପଯୁକ୍ତ ଶାସ୍ତି । (ତରବାରି ବାହାର କରି, ଆଘାତ କରିବାକୁ ଅଗ୍ରସର ହେଲେ ।)

ଧନ । (ବାଧା ଦେଇ) କ୍ଷାନ୍ତ ହୁଅ ନୀଳକଣ୍ଠ ! ଆଜ ପଦେ ମାତ୍ର ଅଗ୍ରସର ହେଲେ, ବୃଦ୍ଧ ଧନଞ୍ଜୟ ପୁତ୍ରହତ୍ୟା କରିବାକୁ ସୁଦ୍ଧା କୁଣ୍ଠିତ ହେବ ନାହିଁ । ଜାଣ ସେ କିଏ ? ସେ ଏହି ମର୍ତ୍ତ୍ୟର କେହି ନୁହେଁ । ଗୋଟାଏ ସ୍ୱର୍ଗୀୟ ଜ୍ୟୋତି ଦସ୍ୟୁକର ଘୁମୁସର ରାଜବଂଶରେ ଅବତୀର୍ଣ୍ଣ ହୋଇଛୁ । ସୁତରାଂ ତାକୁ ସ୍ପର୍ଶ କରିବାର ଦୁଃସାହସ କର ନାହିଁ, ନୀଳକଣ୍ଠ ! ତୁମର କାଳିମା ସ୍ପର୍ଶରେ ସେ ହୁଏ ତ ଅଭିମାନ କରି ଅସମୟରେ ତାର ସ୍ୱର୍ଗୀୟଙ୍କୁ ଫେରି ଚାଲିଯିବ । ସେ ଯେ ତୁମର ପୁତ୍ର, ଏହା ତାହାର ଦୁର୍ଭାଗ୍ୟ । କିନ୍ତୁ ତଥାପି ମନେରଖ ନୀଳକଣ୍ଠ, ଉପେନ୍ଦ୍ରର ଅଙ୍ଗରେ ସାମାନ୍ୟ ହସ୍ତକ୍ଷେପ କଲେ, ତାର ପ୍ରତିଶୋଧ ଲାଗି ଏହି ବୃଦ୍ଧ ଧନଞ୍ଜୟ ଏପରି ଗୋଟାଏ ପ୍ରଳୟର ସୃଷ୍ଟି କରିବ ଯେ, ଯହିଁରେ ତୁମେ ଓ ତୁମର ଘୁମୁସର ସିଂହାସନର ସ୍ୱପ୍ନ ଜଳିପୋଡ଼ି ଗୋଟାଏ ପ୍ରକାଣ୍ଡ ଭସ୍ମସ୍ତୂପରେ ପରିଣତ ହୋଇଯିବ । ସାବଧାନ—

[ ଉପେନ୍ଦ୍ରଙ୍କୁ ପାଖକୁ ନେଇ, ତାଙ୍କର ମସ୍ତକରେ ଆଶୀଷପୂର୍ଣ୍ଣ ହାତ ବୁଲାଇ ଦେଲେ ଓ କୁମାର ନୀଳକଣ୍ଠ ହୋଧାନ୍ଧ ହୋଇ ଏ ଦୃଶ୍ୟ ଦେଖୁଥିଲେ । ]

**— ଯବନିକା ପତନ —**

## —ଦ୍ୱିତୀୟ ଅଙ୍କ—

### ପ୍ରଥମ ଦୃଶ୍ୟ

[ କୁଳକ ପର୍ବତମାଳାର ଗୋଟାଏ ଅଂଶ । ସେହି ପର୍ବତର ମଧ୍ୟଦେଶରେ ବାଗ୍‌ଦେବୀଙ୍କର ମନ୍ଦିର ବିରାଜିତ । ପର୍ବତର ପାଦଦେଶରୁ ମନ୍ଦିର ନିକଟକୁ ଯିବା ନିମିତ୍ତ ସୁସଜ୍ଜିତ ଶିଳାନିର୍ମିତ ସୋପାନ ଶ୍ରେଣୀ । ସୋପାନ ଶ୍ରେଣୀର କଡ଼ ଦେଇ ଗୋଟିଏ କ୍ଷୁଦ୍ର ଗିରି ନିର୍ଝରିଣୀ କଳ କଳ ଶବ୍ଦ କରି ପର୍ବତର ପାଦ ଦେଶ ଅଡ଼କୁ ବହି ଯାଉଛି । ମନ୍ଦିରର ଚତୁଃପାର୍ଶ୍ୱରେ ନାନା ଜାତି ପୁଷ୍ପ ଓ ଫଳ ବୃକ୍ଷ ସ୍ଥାନଟିର ଶୋଭାକୁ ମନୋରମ କରି ରଖିଛି । ମନ୍ଦିରର ପଶ୍ଚାଦେଶରେ ବୃକ୍ଷଲତା ପରିପୂର୍ଣ୍ଣ ବନାନୀ । ସୋପାନର ତଳ ଦେଶରେ ଗୋଟାଏ ପ୍ରକାଣ୍ଡ ବକୁଳ ବୃକ୍ଷ ତଳେ ଗୋଟିଏ ମର୍ମର ବେଦିକା । ସେହି ବେଦିକା ଉପରେ ବସି, ମନ୍ଦିର ଅଡ଼କୁ ଅନାଇଲେ, ଶ୍ୱେତପୁଷ୍ପ ବିଭୂଷିତା ବାଗ୍‌ଦେବୀଙ୍କର ପ୍ରସ୍ତର ମୂର୍ତ୍ତି ସ୍ପଷ୍ଟରୂପେ ପ୍ରତିଭାତ ହେବ । ସମୟ ପ୍ରଭାତ । ବାଳ ସୂର୍ଯ୍ୟଙ୍କର କନକ କିରଣରେ ମନ୍ଦିର ଚୂଡ଼ାଟି ଉଦ୍‌ଭାସିତ । ମୋଟ ଉପରେ, ସ୍ଥାନଟିକୁ ଦେଖିଲେ, ଗୋଟିଏ କ୍ଷୁଦ୍ର ତପୋବନ ବୋଲି ଭ୍ରମ ହେବାର ଯଥେଷ୍ଟ ଉପାଦାନ ସେଠାରେ ଥିଲା । ମନ୍ଦିରର ପୁରୋହିତ ବାଗ୍‌ଦେବୀଙ୍କର ପୂଜାରେ ରତ । ଦେବୀଙ୍କ ସମ୍ମୁଖରେ ଜଳୁଥିବା ଘୃତ ଦୀପଟି ସମୟେ ସମୟେ ଧୀର ସମୀରଣରେ କମ୍ପି ଉଠୁଥିଲା । ପୁରୋହିତ ପୂଜା ଶେଷକରି ଧୀରେ ଧୀରେ ସୋପାନ ଅତିକ୍ରମ କରି, ତଳକୁ ଆସି, ତାଙ୍କର ଗନ୍ତବ୍ୟ ପଥରେ ଚାଲିଗଲେ । ତାଙ୍କ ଯିବାର କିଛିକ୍ଷଣ ପରେ, ସଦ୍ୟସ୍ନାତ ପଟ୍ଟବସ୍ତ୍ର ପରିହିତ ଉପେନ୍ଦ୍ର ଏକ ହସ୍ତରେ ଫୁଲମାଳ ଓ ଅନ୍ୟ ହସ୍ତରେ ପୋଥି ବିଡ଼ାଟିଏ ଧରି ପ୍ରବେଶ କଲେ । ଧୀରେ ଧୀରେ ସୋପାନ ଅତିକ୍ରମ କରି,

ଦେବୀଙ୍କ ନିକଟରେ ପହଞ୍ଚି, ଭକ୍ତି ଗଦ୍‌ଗଦ ଚିତ୍ତରେ, ଦେବୀଙ୍କ ଗଳାରେ ଫୁଲମାଳ ଲମ୍ବାଇ ଦେଇ, ଗୁଣୁ ଗୁଣୁ ସ୍ୱରରେ ଗୋଟିଏ ଶ୍ଳୋକ ଅବୃତ୍ତି କଲେ । ]

ଉପେନ୍ଦ୍ର । "ଯା କୁନ୍ଦେନ୍ଦୁ ତୁଷାର ହାର ଧବଳା ଯା ଶ୍ୱେତ ପଦ୍ମାସନା,
ଯା ବୀଣା ବର ଦଣ୍ଡ ମଣ୍ଡିତ କରା ଯା ଶୁକ୍ଳବସ୍ତ୍ରାନ୍ୱିତା,
ଯା ବ୍ରହ୍ମାଚ୍ୟୁତ ଶଙ୍କର ପ୍ରଭୃତିଭିଃ ଦେବୈସଦା ବନ୍ଦିତା,
ସା ମାଂ ପାତୁ ସରସ୍ୱତୀ ଭଗବତୀ ନିଶେଃଷ ଜାଡ୍ୟାଂପହା ।"

(ଶ୍ଳୋକଟି ଅବୃତ୍ତି କରି ସାରିବା ପରେ, ଦେବୀଙ୍କୁ ପ୍ରଣାମ କରି ସାରି ଓ ନିଜର ତାଳପତ୍ର ପୋଥିଟିକୁ ଦେବୀଙ୍କ ପାଦରେ ଛୁଆଁଇ ଦେଇ) କବୀନ୍ଦ୍ର ବନ୍ଦିତା ମା ବାଗ୍‌ଦେବୀ ! ମୋର ଲାବଣ୍ୟବତୀ କାବ୍ୟର ପ୍ରଥମ ଛାନ୍ଦଟିକୁ ଆଜି ତୋର ରାଜୀବ ଚରଣରେ ସମର୍ପଣ କରି ଦେଉଛି । କରୁଣା କର ମା, ଯେପରି ତୋର ଆଶୀର୍ବାଦରେ ମୋର ଏହି ଲାବଣ୍ୟବତୀ କାବ୍ୟ ଅପରୂପ ଲାବଣ୍ୟରେ ବିମଣ୍ଡିତ ହୋଇ ଉଠିବ । (ଏତିକ କହି ସାରିବା ପରେ ଦେଖାଗଲା ଯେ ଦେବୀଙ୍କର ମସ୍ତକରୁ ଗୁଚ୍ଛାଏ ପୁଷ୍ପ ଏକାବେଳକେ ଆସି ସେହି ପୋଥି ଉପରେ ଅଜାଡ଼ି ହୋଇ ପଡ଼ିଲା । ତାହା ଦେଖି ଉପେନ୍ଦ୍ର ଆନନ୍ଦରେ ବିଭୋର ହୋଇ ପଡ଼ିଲେ ।) ମା—ମା—ଦେବୀ ବୀଣାପାଣି ! ଅକିଞ୍ଚନକୁ ତୋର ଏତେ ଦୟା ? ତୋର ଏହି ଅପୂର୍ବ ଅଶୀର୍ବାଦ ଲାଭ କରି ଉପେନ୍ଦ୍ର ଆଜି ବାସ୍ତବିକ ଭାଗ୍ୟବାନ । ପୁଣି ଥରେ, ଏ ଦୀନ ସନ୍ତାନର ପ୍ରଣାମ ଗ୍ରହଣ କର ମା ! ( ଦେବୀଙ୍କୁ ନମସ୍କାର କରି, ସେହି ପୋଥି ବଡ଼ାକୁ ଆଣି, ନିଜର ମସ୍ତକରେ ଛୁଆଁଇ ଧୀରେ ଧୀରେ ସୋପାନ ଅବତରଣ କରି ଆସି ବେଦିକା ଉପରେ ଉପବେଶନ କଲେ । ଅନନ୍ଦରେ ଚକ୍ଷୁ ଦ୍ୱୟ ତାଙ୍କର ଅଶ୍ରୁପୂର୍ଣ୍ଣ । ପରେ, ଦୀର୍ଘ ନିଶ୍ୱାସ ତ୍ୟାଗ କରି ) ହାୟ—କସ୍ତୁରିକା—ପ୍ରିୟେ—ମୋର ସାହିତ୍ୟ ସାଧନାର ସହଚରି ! କାହିଁ କେତେ ଦୂରେ ତୁମେ ? ମୋର ଆଜି ଏ ସୌଭାଗ୍ୟକୁ ଦେଖିବାକୁ, ତୁମେ କଣ ପରପାରରୁ ଥରେ ହେଲେ ଫେରି ଆସି ପାରିବ ନାହିଁ ? (କ୍ଷଣେ ନୀରବ ରହି, ଜଡିତ କଣ୍ଠରେ ଗାଇବାକୁ ଲାଗିଲେ ।)

ତୁ ମୋ ପ୍ରତିଚକ୍ଷୁ ଯେଣୁ ହୋଇଛୁ ଅନ୍ତର,
ଦଶୁନାହିଁ କାହିଁ ମୋତେ, ଆନ ପ୍ରତିକାର,
ନୂଆ ଅନ୍ଧ ପ୍ରାୟ ହୋଇ,
ଅନୁକ୍ଷଣେ ଆକୁଳ ବନ୍ଧୁଛ ପ୍ରାଣ ସହି ।
ଦୂରେ ଥିଲେ ପାଶେ ଅଛୁ ଥିବୁ ଏହା ଯେବେ,
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ
ପ୍ରୀତି ଅଭେଦ ତାଙ୍କର,
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।
ଯେଣେ ଅନାଇଲେ ଇନ୍ଦ୍ରଜାଲ ପ୍ରାୟ ଦଶୁ,
ମୁକୁର ଚିମ୍ବ ପରିଯେ ପାଖକୁ ନ ଆସୁ,
ଏତେ କଷ୍ଟ କାହିଁ ପାଇଁ
ମୋହ ଜାଣିବାରେ ମୁଁ ତ ଦୋଷ କରନାହିଁ ।

[ ଠିକ୍ ଏହି ଗୀତ ସମାପ୍ତ ବେଳକୁ, ଜଣେ ପ୍ରୌଢ଼ା ଶ୍ୱେତ ବସନ ପରିହିତା ସନ୍ନ୍ୟାସିନୀ ହସି ହସି ଉପେନ୍ଦ୍ରଙ୍କ ସମ୍ମୁଖରେ ପ୍ରବେଶ କଲେ । ]

ସନ୍ୟା । ଧୁମୁସରର ଉଦୟମାନ ତରୁଣ କବିଙ୍କର କଣ୍ଠରେ ଆଜି ବିରହର ଏ ଛନ୍ଦୋବଦ୍ଧ ବିଳାପ କାହିଁକି ?

ଉପେନ୍ଦ୍ର । କିଏ ତୁମେ ସନ୍ନ୍ୟାସିନି ! ମୋର କସ୍ତୁରିକାର ସ୍ମୃତି ପୂଜାରେ ବାଧା ଦେଲ ? ତୁମେ କଣ ମୋତେ ଚିହ୍ନ ?

ସନ୍ୟା । ଧୁମୁସର ରାଜ୍ୟର କୌସ୍ତୁଭମଣିକୁ ନ ଚିହ୍ନେ କିଏ, କେନାମଣି ? ତେଣୁ ନୟାଗଡ଼ ଜେମା କସ୍ତୁରିକାଙ୍କ ଲାଗି ତୁମର ଏ କରୁଣ ରାଗିଣୀ ଆଜି ମୋ ଭଳି ଜଣେ ସନ୍ନ୍ୟାସିନୀକୁ ମଧ ଏତେଦୂର ବିଚଳିତ କରି ଦେଇଛି ଯେ, ତୁମକୁ ସାନ୍ତ୍ୱନା ଦେବା ଲାଗି ମୁଁ ଧାଇଁ ଆସିଛି । ବତ୍ସ ! ଏ ଶୋକ ତୁମକୁ ତ୍ୟାଗ କରିବାକୁ ପଡ଼ିବ ।

ଉପେନ୍ଦ୍ର । କିନ୍ତୁ କିଏ ତୁମେ ଦେବି ! ତୁମର ପରିଚୟ ତ ମୁଁ ଜାଣେ ନା ?

ସନ୍ଧ୍ୟା । ମୋର ପରିଚୟ ଜାଣିବାର କୌଣସି ଆବଶ୍ୟକତା ନାହିଁ, କେନାମଣି ! ଧୂମ୍ରସର ରାଜ୍ୟର ଜଣେ ସନ୍ଧ୍ୟାସିନୀ ମୁଁ—ଏହି ମୋର ସର୍ବଶ୍ରେଷ୍ଠ ପରିଚୟ । ଲୋକ ଲୋଚନର ନିଭୃତ ଅନ୍ତରାଳରେ ମୋର ବାସ-ସ୍ଥାନ । ଆଉ ଯୋଗ ସାଧନାହିଁ ମୋର ଜୀବନର ଏକମାତ୍ର ଅବଲମ୍ବନ ।

ଉପେନ୍ଦ୍ର । ତା ହେଲେ ମୋ ବିଷୟରେ ତୁମେ ଏତେ ବିଚଳିତ କାହିଁକି, ଦେବି ?

ସନ୍ଧ୍ୟା । ଶୁଣ ବନ୍ଧୁ ! ଏହି ଦିଗନ୍ତ ପ୍ରସାରିତ ଶ୍ୟାମଳ ବନାନୀର ଅନ୍ତରାଳରେ ଥାଇ, ମୁଁ ତୁମର ସମସ୍ତ ବିଷୟ ଯୋଗବଳରେ ଜାଣି ପାରିଛି । ଗୋଟାଏ ଅର୍ଥ ମହାନ୍ ଉଦ୍ଦେଶ୍ୟ ସାଧନ ନିମିତ୍ତ, ଜନ୍ମ ତୁମର । ଅଲୌକିକ ତୁମର ପ୍ରତିଭା । ବିରାଟ କଳିଙ୍ଗ ସାମ୍ରାଜ୍ୟରେ ତୁମର ପ୍ରତିଭାର ପ୍ରତିଦ୍ୱନ୍ଦୀ ବୋଧହୁଏ କେହି ନାହାନ୍ତି । ତେଣୁ ବନ୍ଧୁ ! ମୋର ଅନୁରୋଧ, ସେହି ପ୍ରତିଭାକୁ କେବଳ ଗୋଟାଏ ନାରୀ ଲାଗି ନିଷ୍ଫଳ ଧୂଳାପରେ ଶେଷ କରି ଦିଅନା ।

ଉପେନ୍ଦ୍ର । କିନ୍ତୁ ଦେବି ! ଜାଣ କି ? ସେହି ମହୀୟସୀ ନାରୀର ସ୍ଥାନ ମୋ ଜୀବନର ପ୍ରତି ଅଣୁ ପରମାଣୁକୁ କିପରି ଅଧିକାର କରି ପାରିଥିଲା ?

ସନ୍ଧ୍ୟା । ସମସ୍ତ ଜାଣେ କେନାମଣି ! ନୟାଗଡ଼ ରାଜକେମା ମୃତା କସ୍ତୁରିକା ଦିନେ ତୁମର ପ୍ରେୟସୀ ଓ ସାହିତ୍ୟ ସାଧନାର ସହାୟମୟୀ ସଙ୍ଗିନୀ ଥିଲେ ଏବଂ ତାଙ୍କରି ଅପାଶୋରି ସ୍ମୃତି-ସୌଧ ତୋଳିବାକୁ ଯାଇ, ତୁମେ ସୃଷ୍ଟି କରିଛ ପ୍ରେମ ସୁଧାନିଧି କାବ୍ୟ । କିନ୍ତୁ ବନ୍ଧୁ ! ବର୍ତ୍ତମାନ ବାଣପୁର ରାଜକେମା ମାଳବିକା ତୁମର ପ୍ରେୟସୀ । ତାଙ୍କପ୍ରତି ଅବହେଳା ଦେଖାଇବା ତୁମର ଅନୁଚିତ । ତଦ୍ୱାରା ତୁମର ସାହିତ୍ୟ ସାଧନାରେ ହୁଏତ ବିଘ୍ନ ଘଟିପାରେ ।

ଉପେନ୍ଦ୍ର । କିନ୍ତୁ—

ସନ୍ଧ୍ୟା । ଏଥିରେ ଆଉ କୌଣସି 'କିନ୍ତୁ'ର ସ୍ଥାନ ନାହିଁ, କେନାମଣି ! ରହସ୍ୟମୟୀ ବିଦୁଷୀ ରାଜକେମା ମାଳବିକା ତୁମ ପ୍ରତି ଯଥେଷ୍ଟ ଅନୁରକ୍ତା । ତାଙ୍କର ଅନାବିଳ ପ୍ରେମକୁ ଅନାଦର କରି ତୁମେ ତୁମର ଅମର କଳ୍ପନା

ଶାମା

ଲାବଣ୍ୟବତୀ କାବ୍ୟର ମୂର୍ତ୍ତି ମାତ୍ର ପାରିବ ନାହିଁ, କବି ! ଆଜି ମୁଁ ଜାଣେ ରାମଚରିତ ଅବଲମ୍ବନ କରି 'ଏକ ଅପରୂପ କାବ୍ୟ ରଚନା କରିବ ବୋଲି, ସେ ଦିନ ତୁମେ ମହାରାଜ ଧନଞ୍ଜୟ ଭଞ୍ଜଙ୍କୁ ପ୍ରତିଶ୍ରୁତି ଦେଇଛ । ଏ ପ୍ରତିଶ୍ରୁତିର କି କୌଣସି ମୂଲ୍ୟ ନାହିଁ, କେନାମଣି ?

ଉପେନ୍ଦ୍ର । (ଆଶ୍ଚର୍ଯ୍ୟେ) କିନ୍ତୁ ତୁମେ ମୋର ଏହି ଲାବଣ୍ୟବତୀ କାବ୍ୟ ଓ ପ୍ରତିଶ୍ରୁତି ବିଷୟ ଜାଣିଲ କିପରି, ସନ୍ନ୍ୟାସିନି ?

ସନ୍ଧ୍ୟା । ମୁଁ ତ ଆଗରୁ କହିଛି କେନାମଣି, ମୁଁ ଜଣେ ଯୋଗିନୀ । ସୁତରାଂ, ଯୋଗବଳରେ ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ଜାଣି ପାରିବାର ଦକ୍ଷତା ମୋର ଅଛି ।

ଉପେନ୍ଦ୍ର । ତେବେ ଦୟା କରି କୁହ ଦେବି ! ମୋର ଭବିଷ୍ୟତ ଜୀବନର ଗତି କଣ ?

ସନ୍ଧ୍ୟା । ମୁଁ ତ ଭବିଷ୍ୟତ୍ ବକ୍ତା ନୁହେଁ, ବତ୍ସ ! ସୁତରାଂ ଏ ପ୍ରଶ୍ନର ଉତ୍ତର ଦେବା ମୋ ପକ୍ଷରେ ଅସମ୍ଭବ । କେବଳ ଭବିଷ୍ୟତ୍‌ର ଇଙ୍ଗିତରେ ମୁଁ ତୁମକୁ କେତୋଟି ଉପଦେଶ ଦେବାକୁ ଆସିଛି ମାତ୍ର ।

ଉପେନ୍ଦ୍ର । କୁହ ଦେବି, କି ଉପଦେଶ ତୁମର ?

ସନ୍ଧ୍ୟା । କେନାମଣି ! କସ୍ତୁରିକାଙ୍କର ସ୍ମୃତିକୁ ଭୁଲିଯାଅ । ପ୍ରେମ-ସୁଧାନିଧି କାବ୍ୟ ରଚନା କରି ତାଙ୍କର ସ୍ମୃତିକୁ ଯଥେଷ୍ଟ ସମ୍ମାନ ତୁମେ ଦେଇ ସାରିଛ । ଆଉ କାହିଁକି ? ବିସ୍ତୀର୍ଣ୍ଣ ଭବିଷ୍ୟତ୍ ତୁମ ଆଗରେ । ଏଣିକି ଦୃଷ୍ଟି ଫେରାଅ । ଚାହିଁ ଦେଖ ଉପେନ୍ଦ୍ର ! ସମଗ୍ର ଘୁମୁସର ରାଜ୍ୟ ତୁମ ଲାଗି କିପରି ଏକ ଅପରିମିତ ସୌନ୍ଦର୍ଯ୍ୟର ଭଣ୍ଡାର ଖୋଲି ଦେଇଛି । ଏହି କୁଳାଡ଼ ଗିରିଶ୍ରେଣୀର ବାଳ ରବିକର ଚର୍ଚ୍ଚିତ ଶିଖର ଦେଶକୁ ଦେଖ, କି ଗରିମାମୟ ଦୃଶ୍ୟ ସେ ! ଏହିପରି ଗୋଟାଏ ଉଚ୍ଚ ଗରିମା-ମୟ ଆସନ ଏ ଦେଶର ସାହିତ୍ୟ-ରାଜ୍ୟରେ ତୁମକୁ ଅଧିକାର କରିବାକୁ ପଡ଼ିବ ଏବଂ ସେଥିଲାଗି, ତୁମେ ତୁମର ପ୍ରେରଣା ପାଇବ, ଘୁମୁସରର ଏହି ଶ୍ୟାମକାନ୍ତ ପ୍ରାକୃତିକ ବିଭବରେ ନିତ୍ୟ ଅବଗାହନ କରି ।

ଉପେନ୍ଦ୍ର । ତୁମର ଉପଦେଶକୁ ମୁଁ ଅନ୍ତରେ ଅନ୍ତରେ ଅନୁମୋଦନ କରୁଛି, ସନ୍ନ୍ୟାସିନି !

ସନ୍ଧ୍ୟା । ତେତିକ ନୁହେଁ, କେନାମଣି ! ମୋର ଶେଷ ଉପଦେଶ, ଶୀଘ୍ର ତୁମେ ନୟାଗଡ଼ ଯାତ୍ରା କର । ସେଠାରେ ତୁମର ସାହିତ୍ୟ ସାଧନାର ପଥ ଅତି ସୁଗମ ହେବ । ସେହିଠାରେ ରାମତାରକ ମନ୍ତ୍ର ଅଭ୍ୟାସ କରିବାର ଅପୂର୍ବ ସୁଯୋଗ ତୁମକୁ ମିଳିବ ଓ ମୋର ବିଶ୍ୱାସ, ସେହିଠାରେ ତୁମର ଅମର ପ୍ରତିଭାର ପୂର୍ଣ୍ଣ ବିକାଶ ହେବ, ରାମ ଚରିତ ବିଷୟକ କାବ୍ୟ ରଚନା କର । ସନ୍ନ୍ୟାସିନୀର ଏ ସସ୍ନେହ ଅନୁରୋଧକୁ ଅବହେଳା କରିବ ନାହିଁ, ବତ୍ସ ।

ଉପେନ୍ଦ୍ର । ସନ୍ନ୍ୟାସିନି—ଦେବି, ତୁମର ଉପଦେଶ ମୋର ଶିରୋଧାର୍ଯ୍ୟ । କିନ୍ତୁ କୁହ ଦେବି, ତୁମର ପ୍ରକୃତ ପରିଚୟ କଣ ? ତୁମେ ଯେ କ୍ରମେ ମୋ ନିକଟରେ ନିତାନ୍ତ ଦୁର୍ବୋଧ୍ୟା ହୋଇ ଉଠୁଛ ?

ସନ୍ଧ୍ୟା । (ସୋପାନ ନିକଟକୁ ଅଗ୍ରସର ହୋଇ) କହିଲି ତ କେନାମଣି ! ସେ ସମୟ ବର୍ତ୍ତମାନ ଆସି ନାହିଁ । ଜୀବନରେ ଆଉ ଥରେ ମୋ ସହିତ ତୁମର ସାକ୍ଷାତ ହେବ । ଯଦି ପାରେ, ସେହି ସମୟରେ ମୋର ପରିଚୟ ମୁଁ ନିଜେ ଆସି ତୁମକୁ ଦେଇଯିବି, କବି ! (ମନ୍ଦିରକୁ ଚାହିଁ) ଏ କାହାର ମନ୍ଦିର, ବତ୍ସ ?

ଉପେନ୍ଦ୍ର । ଧୁମୁସର ରାଜବଂଶର ଆରାଧ୍ୟା ଦେବୀ ବାଗ୍‌ଦେବୀଙ୍କର ମନ୍ଦିର । ମୋର କାବ୍ୟ ସାଧନାର ପ୍ରାଥମିକ ପ୍ରଚେଷ୍ଟା ଏହି ବାଗ୍‌ଦେବୀଙ୍କର ଚରଣ ତଳରୁ ଆରମ୍ଭ ହୋଇଥିଲା । ତେଣୁ ଆଜି, ମୋର ଲାବଣ୍ୟବତୀ କାବ୍ୟ ସୃଷ୍ଟିର ଉଦ୍‌ଯାପନ ଲାଗି, ତାଙ୍କର ଅନୁକମ୍ପା ଲାଭ ଆଶାରେ ସେହି କାବ୍ୟର ପ୍ରଥମ ଛନ୍ଦଟିକୁ, ତାଙ୍କର ଫୁଲ୍ଲାରବିନ୍ଦ ଚରଣ ଯୁଗଳରେ ଭେଟି ଦେବାକୁ ଆସିଥିଲି ମାତ୍ର ।

ସନ୍ଧ୍ୟା । (ହସି) ସତେ ? ତେବେ ମୁଁ ଟିକିଏ ଦେବୀଙ୍କର ଦର୍ଶନ କରି ଆସେଁ, କବି ! (ସୋପାନ ଅତିକ୍ରମ କରି କ୍ରମେ ମନ୍ଦିର ମଧ୍ୟକୁ ପ୍ରବେଶ କଲେ ଓ ଉପେନ୍ଦ୍ର ସେହି ଆଡ଼କୁ ଅନାଇ ରହିଲେ ।)

[ ଅପର ଦିଗରୁ ଗଙ୍ଗାଧରଙ୍କର ପୁତ୍ର ପାଟଦେଉ ଶତ୍ରୁଞ୍ଜୟଙ୍କ ସହିତ ମହାରାଜା ଧନଞ୍ଜୟ ଭଞ୍ଜଙ୍କର ପ୍ରବେଶ । ]

ଧନ । (ଉପେନ୍ଦ୍ରଙ୍କୁ ଦେଖି ହସି) ଆରେ । ଏ ଯେ ଢେଙ୍କାନାଳି ? ଏଠାରେ ? ମନ୍ଦିରକୁ ଗୁହିଁ କଣ ଦେଖୁଛ କବି ?

ଉପେନ୍ଦ୍ର । (ରାଜାଙ୍କ ଆଡ଼େ ଗୁହିଁ) ଦେଖୁଛି, ଜଣେ ସନ୍ନ୍ୟାସିନୀଙ୍କୁ ମହାରାଜ ! ଅଦ୍ଭୁତ ପ୍ରହେଳିକାମୟୀ ସେ । ତାଙ୍କର ବାଣୀ ଏ ପର୍ଯ୍ୟନ୍ତ ସୁଦ୍ଧା ମୋର ରୋମାଞ୍ଚ ଜାତ କରୁଛି ।

ଧନ । (ଆଶ୍ଚର୍ଯ୍ୟେ) ସନ୍ନ୍ୟାସିନୀ ! ତାଙ୍କର ପରିଚୟ କଣ ?

ଉପେନ୍ଦ୍ର । ବହୁ ଅନୁରୋଧ କରି ସୁଦ୍ଧା, ତାଙ୍କର କୌଣସି ପରିଚୟ ସଂଗ୍ରହ କରି ପାରିଲି ନାହିଁ, ଅଥଚ ଆଶ୍ଚର୍ଯ୍ୟର କଥା, ପିତାମହ ଯେ, ଘୁମୁସର ରାଜବଂଶର ସମସ୍ତ ବିବରଣୀ ତାଙ୍କର ନଖ ଦର୍ପଣରେ । ଏପରି କି, ରାମ ଚରିତ ଅବଲମ୍ବନ କରି କାବ୍ୟ ଲେଖିବାକୁ ଯେଉଁ ପ୍ରତିଶ୍ରୁତି ମୁଁ ତୁମ୍ଭଙ୍କୁ ଦେଇଥିଲି, ତାହା ମଧ୍ୟ ତାଙ୍କୁ ଜଣା । ଏ ସବୁ ଦେଖି, ମୁଁ କେବଳ ନିର୍ବାକ୍ ବିସ୍ମୟରେ ତାଙ୍କୁ ଅନାଇଁ ରହିଛି ମାତ୍ର ।

ଶତ୍ରୁ । କେଉଁଆଡ଼େ ଗଲେ ସେ ସନ୍ନ୍ୟାସିନୀ ?

ଉପେନ୍ଦ୍ର । ଦେବୀଙ୍କର ଦର୍ଶନ ଲାଭ ନିମନ୍ତେ ମନ୍ଦିର ମଧ୍ୟକୁ ଯାଇଛନ୍ତି । ବର୍ତ୍ତମାନ ଫେରି ଆସିବେ ଯେ ।

ଧନ । (ହସି) କିନ୍ତୁ ମୋର ବିଶ୍ୱାସ, ସେ ଆଉ ଫେରି ଆସିବେ ନାହିଁ । ଯାଅ, ପାଟଦେଉ ! ମନ୍ଦିର ଭିତରେ ଅନୁସନ୍ଧାନ କରି ଦେଖ, ସେ ସନ୍ନ୍ୟାସିନୀ କଣ କରୁଛନ୍ତି ?

[ ଶତ୍ରୁଞ୍ଜୟ ମନ୍ଦିର ଅନୁସନ୍ଧାନ କରିବାକୁ ସୋପାନଶ୍ରେଣୀ ଆରୋହଣ କଲେ । ]

ଉପେନ୍ଦ୍ର । ଆଶ୍ଚର୍ଯ୍ୟ ! ଏ ପର୍ଯ୍ୟନ୍ତ ସନ୍ନ୍ୟାସିନୀ ଫେରୁ ନାହାନ୍ତି ଯେ ?

ଧନ । ଅଚ୍ଛା—ଆଉ କଅଣ କହିଲେ ସେ ତୁମ୍ଭକୁ ?

ଉପେନ୍ଦ୍ର । ମୋର କାବ୍ୟ ରଚନା ବିଷୟରେ ଅନେକ କିଛି ସଙ୍କେତ ଦେଲେ । ଶେଷକୁ ମୋତେ ବତ୍ସ ବୋଲି ସମ୍ବୋଧନ କରି ଏକ ପ୍ରକାର ଅନୁରୋଧ କଲେ, ଯେପରି ମୁଁ ଶୀଘ୍ର ନୟାଗଡ଼ ଯାତ୍ରା କରେଁ । ନୟାଗଡ଼ ଯାତ୍ରା କଲେ,ମୋର କାବ୍ୟ ସାଧନାର ପଥ ସୁଗମ ହେବ ଓ ସେହିଠାରେ ମୁଁ ରମତାରକ ମନ୍ତ୍ରରେ ଦୀକ୍ଷିତ ହୋଇ ପାରିବି । ଏହାହିଁ ତାଙ୍କର ବାଣୀ ।

ଧନ । (ଡାକି) ଶମ୍ଭୁଞ୍ଜୟ, ପାଠଦେଇ ? ସନ୍ନ୍ୟାସିମାଙ୍କର କୌଣସି ସନ୍ଧାନ ପାଇଲ କି ?

ଶମ୍ଭୁ । (ମନ୍ଦିର ମଧ୍ୟରୁ ଆସି) ନା ପିତାମହ, ମନ୍ଦିର ସାରା ତନ୍ନ ତନ୍ନ କରି ଅନୁସନ୍ଧାନ କରି ଦେଖିଲି । କୌଣସି ଜନମାନବର ଚିହ୍ନ ସୁଦ୍ଧା ନାହିଁ । କିନ୍ତୁ ମନ୍ଦିରର ଅଭ୍ୟନ୍ତରଟା ସହସ୍ର ଶ୍ୱେତପଦ୍ମର ସୁଗନ୍ଧରେ ପରିପୂର୍ଣ୍ଣ । ସନ୍ନ୍ୟାସିମାଙ୍କର କୌଣସି ପତ୍ତା ନାହିଁ ।

ଉପେନ୍ଦ୍ର । (ଆଶ୍ଚର୍ଯ୍ୟେ) ହୁଁ—ତେବେ ସନ୍ନ୍ୟାସିମା ଗଲେ କୁଆଡ଼େ ! ମନ୍ଦିରର ପଶ୍ଚାଦ୍‌ଭାଗରେ ତ କୌଣସି ଯାତାୟାତର ପଥ ନାହିଁ । ଏ ଯେ ଅଦ୍ଭୁତ ରହସ୍ୟ । ପାଠଦେଇ, ଭଲରୂପେ ମନ୍ଦିର ଅନୁସନ୍ଧାନ କରିଛ ତ ?

[ ମନ୍ଦିର ନିକଟକୁ ଅଗ୍ରସର ହେଲେ । ଧନଞ୍ଜୟ ମଧ୍ୟ ତାଙ୍କ ପଛେ ପଛେ ସୋପାନ ଅତିକ୍ରମ କରି ମନ୍ଦିର ପାଖକୁ ଅଗ୍ରସର ହେଲେ ଓ ଦେବୀଙ୍କୁ ପ୍ରଣିପାତ କଲେ । ]

ଶମ୍ଭୁ । କୌନାମଣି, ବିଶ୍ୱାସ କର, ମନ୍ଦିରର ଭିତର ଅନୁସନ୍ଧାନରେ କିଛି ତ୍ରୁଟି ରଖିଛି ବୋଲି ମୋର ମନେ ହେଉ ନାହିଁ । ପାରିତ, ତୁମେ ନିଜେ ଅନୁସନ୍ଧାନ କରି ଦେଖ ।

ଉପେନ୍ଦ୍ର । (ଭିତରକୁ ପଶି ପୁଣି ଫେରି ଆସି) ପିତାମହ ! ତେବେ ସନ୍ନ୍ୟାସିମା ଗଲେ କୁଆଡ଼େ ? ଆଶ୍ଚର୍ଯ୍ୟ, ଏପରି ତୀବ୍ର ପଦ୍ମଗନ୍ଧ ତ ଆଗରୁ ଏଠାରେ ନ ଥିଲା । ଏ କି ଅଦ୍ଭୁତ ମାୟା !

ଧନ । (ମନ୍ଦିର ଦ୍ୱାରକୁ ଚାହିଁ) ମାୟା ନୁହେଁ ଉପେନ୍ଦ୍ର ! ସନ୍ୟାସିନୀ ତାଙ୍କୁ ଅନ୍ୟ ଯାଇ ନାହାନ୍ତି । ଏହି ଯେ ତୁମର ପଛ ପଟରେ ପ୍ରସ୍ତର ମୂର୍ତ୍ତିରେ ହସ ହସ ବଦନରେ ଦଣ୍ଡାୟମାନା ।

ଉପେନ୍ଦ୍ର । ଏ ଯେ ମୋର ଆରାଧ୍ୟା ଦେବୀ ବାଗ୍‌ଦେବୀଙ୍କର ପ୍ରତିମୂର୍ତ୍ତି ।

ଧନ । (ଉପେନ୍ଦ୍ରଙ୍କୁ ଆନନ୍ଦରେ ଆଲିଙ୍ଗନ କରି) ତରୁଣ କବି ! ଏବେ ସୁଦ୍ଧା କି ତୁମେ ସନ୍ୟାସିନୀଙ୍କୁ ଚିହ୍ନି ପାରି ନାହିଁ ? ସେ ଯେ କନେ ବାଗ୍‌ଦେବୀ । (ଆନନ୍ଦରେ) କଣ କହିବି, ଚିନ୍ତାମଣି ! ଅତ୍ୟଧିକ ଆନନ୍ଦର ଉତ୍ତେଜନା ଯେ ମୁଁ ଆଉ ସହ୍ୟ କରି ପାରୁ ନାହିଁ ମୋତେ ଧର, ମୋତେ ଧର, ପାଟଦେଇ ! ଦୀର୍ଘ ଷାଠିଏ ବର୍ଷ କାଳ ଅବିଚଳିତ ସେବା ପୂଜା କରି, ଏହି ଘୁମୁସର ରାଜ୍ୟର ଅଧିଷ୍ଠାତ୍ରୀ ଦେବୀ ବାଗ୍‌ଦେବୀଙ୍କର ସାମାନ୍ୟ କରୁଣା ମାତ୍ର ପାଇଥିଲି ଏହି ବୃଦ୍ଧ ଧନଞ୍ଜୟ । କିନ୍ତୁ ଆଜି, ଉପେନ୍ଦ୍ର ! ତୁମର କବି ପ୍ରତିଭା, ତୁମର କବିତ୍ୱର ନିଷ୍ଠା ମୋର ସେହି ବାଗ୍‌ଦେବୀଙ୍କୁ ଟାଣି ଆଣିଛି ଜୀବନ୍ତ ସନ୍ୟାସିନୀ ରୂପରେ, ମୋର ଏହି ଘୁମୁସର ରାଜ୍ୟର ବାସ୍ତବ ମାଟି ଉପରକୁ । ଏ ଗୌରବ ଯେ ରଖିବାକୁ ମୋର ସ୍ଥାନ ନାହିଁ । ଭାଗ୍ୟବାନ ତୁମେ ଉପେନ୍ଦ୍ର, ଆଉ ତୁମରି କବି ପ୍ରତିଭା । ତୁମେ କେବଳ ମୋର ବଂଶର ଗୌରବ ନୁହଁ, ତୁମେ ମୋର ଦେଶର, ମୋର ବିରାଟ ଓଡ଼ିଆ ଜାତିର ଗର୍ବର ସାମଗ୍ରୀ । ଆସ ବାବା, ତୁମକୁ ଥରେ ଆଲିଙ୍ଗନ କରି ମୋର ଜୀବନକୁ ଧନ୍ୟ କରେଁ । ଏହି ଏତିକି ଆନନ୍ଦ, ଏହି ଏତିକି ଗୌରବ, ହତଭାଗ୍ୟ ରାଜା ଧନଞ୍ଜୟର ଆଜି ପରପାର ଯାତ୍ରା ଲାଗି ପାଥେୟ ହେଉ ।

ଉପେନ୍ଦ୍ର । ଓଃ ଅର୍ବାଚୀନ ମୁଁ ! ମୋର ଆରାଧ୍ୟା ଦେବୀଙ୍କୁ ମୁଁ ଚିହ୍ନି ପାରିଲି ନାହିଁ ? ସହସ୍ର କୁବେର ଭଣ୍ଡାରକୁ ମୋର ହାତ ପାଖରେ ପାଇ ସୁଦ୍ଧା, ଅବହେଳା କରି ଦୂରକୁ ଠେଲି ଦେଇଛି । ଓଃ କି ମୂର୍ଖ ମୁଁ ! (ଦେବୀଙ୍କୁ ଚାହିଁ) ମା ମୋର, ଏ ଅଧମ ସନ୍ତାନକୁ ଏପରି ପ୍ରତାରଣା କଲୁ କାହିଁକି ? ସ୍ୱର୍ଗର ଏ ଚିତ୍ର ଅନାବିଲ ଜ୍ୟୋତି ଦେଖାଇ, ମେତେ ମୁଣି ଅନ୍ଧ କରିଦେଲୁ କାହିଁକି ?

ଧନ । କବୀନ୍ଦ୍ର ଉପେନ୍ଦ୍ର ! ଆଜି ତୁମେ ଅନ୍ଧ ନୁହଁ । ଅନାବିଷ୍କୃତ କବିତା-ରାଜ୍ୟକୁ ଅଧିକାର କରିବାକୁ ଆଜି ଦିବ୍ୟ ଚକ୍ଷୁ ଲାଭ କରିଛ ତୁମେ । ମନ୍ଦ ଧୀର, ତୁମରି ଲେଖଣୀ ମୁନରେ ଧୂମ୍ରସର ଅଧିଷ୍ଠାନୀ ଦେବୀ ଏହି ବାଗ୍‌ଦେବୀଙ୍କୁ ଚିରଦିନ ଲାଗି ବାନ୍ଧି ରଖ ।

ଶତ୍ରୁ । ମୁଁ ଯେ ଏ ସବୁ କିଛି ବୁଝିପାରୁ ନାହିଁ, କୈନାମଣି ! କି ଅଦ୍ଭୁତ ତୁମର ସାଧନା !

ଉପେନ୍ଦ୍ର । ବାସ୍ତବିକ ପାଠଦେଉ ! ମୁଁ ଯେ ନିଜକୁ ନିଜେ ବିଶ୍ୱାସ କରି ପାରୁନାହିଁ । ଭାଇ, ମୋର ସାଧନାର ପୁଞ୍ଜି ଆଦୌ ନାହିଁ । ଅଛି ମାତ୍ର କେବଳ ନିଷ୍ଠା ।

ଧନ । ଶତ୍ରୁଞ୍ଜୟ ! ଏ ନିଷ୍ଠା ନୁହେଁ, ପ୍ରତିଭା—ପ୍ରତିଭା ! ପ୍ରତିଭାର ଆକର୍ଷଣ ସ୍ୱର୍ଗର ଦେବତାକୁ ମର୍ତ୍ତ୍ୟର ମାନବ ରୂପରେ ଟାଣି ଆଣେ । ଠିକ୍ ଏହିପରି ଦିନେ ଏହି ଦେଶର କବି ଜୟଦେବ, ଟାଣି ଆଣିଥିଲେ ସ୍ୱର୍ଗର ଦେବତାକୁ ତାଙ୍କର କବିତାର ପାଦପୂରଣ କରିବାକୁ । ଏ ଘଟଣା ସବୁ, କେବଳ କଳିଙ୍ଗ ଦେଶର ଜଳବାୟୁରେ ସମ୍ଭବ, ପାଠଦେଉ !

ଉପେନ୍ଦ୍ର । କିନ୍ତୁ ପିତାମହ, ମୁଁ ଏଯାଏଁ ବି ବୁଝି ପାରୁ ନାହିଁ ଯେ, ଦେବୀଙ୍କର ମୋତେ କନ୍ୟାଗଡ଼ ଯାତ୍ରା କରିବାକୁ ନିର୍ଦ୍ଦେଶ ଦେବାର ଉଦ୍ଦେଶ୍ୟ କଣ ।

ଧନ । ତାହା ତ ମୁଁ କହି ପାରିବ ନାହିଁ ଉପେନ୍ଦ୍ର ! ଦେବୀଙ୍କର ନିର୍ଦ୍ଦେଶ ଉପରେ ଟୀକା ଟିପ୍ପଣୀ କରିବାର ଅଧିକାର ଅନ୍ତତଃ ବୃଦ୍ଧ ଧନଞ୍ଜୟର ନାହିଁ । ତେବେ, ଗୋଟାଏ କଥା—

ଗଣିତରେ ଖଣ୍ଡପଡ଼ା—ସଂସ୍କୃତରେ କନ୍ୟାଗଡ଼
କ୍ଷତ୍ରିୟରେ ଧୂମ୍ରସର,
ଧରାକୋଟ ରାଜନୀତି,
ଶାସ୍ତ୍ରର ବିଦ୍ୟାରେ—ପାରଳାଖେମୁଣ୍ଡି
ମନେ ରଖିଥିବୁ ନାତି ।

ଉପେନ୍ଦ୍ର । ଦେଖିଲ ପାଠଦେଉ ! ପିତାମହଙ୍କର ଅଦ୍ଭୁତ କବିତ୍ୱ ଶକ୍ତିର ଗୋଟାଏ ସାମାନ୍ୟ ନିଦର୍ଶନ ?

ଶଙ୍କ । ମୁଁ ଯେ ଏଥିରୁ କିଛି ବୁଝି ପାରିଲି ନାହିଁ, ପିତାମହ !

ଧନ । ସଂସ୍କୃତ ଚର୍ଚ୍ଚା ଲାଗି ନୟାଗଡ଼ ଚିର ପ୍ରସିଦ୍ଧ । ବୋଧହୁଏ ସେଥିଲାଗି ଦେବୀ ତରୁଣ କବିକୁ ମୋର, ନୟାଗଡ଼ ଯାତ୍ରା ଲାଗି ନିର୍ଦ୍ଦେଶ ଦେଇଛନ୍ତି, ବୁଝିଲ ? କିନ୍ତୁ, ଏହା ଅବଶ୍ୟ ମୋର ଅନୁମାନ । ତେବେ, ଯାହାହେଉ ଜେନାମଣି ! ଶୀଘ୍ର ତୁମେ ନୟାଗଡ଼ ଯିବାର ଆୟୋଜନ କର । ଦେବୀଙ୍କର ଇଚ୍ଛା ପୂର୍ଣ୍ଣ ହେଉ ।

ଉପେନ୍ଦ୍ର । ମହାରାଜାଙ୍କର ଅନୁମତି ପାଇଲେ—

ଧନ । (ଉପେନ୍ଦ୍ରଙ୍କୁ ପାଖକୁ ଟାଣି ନେଇ ହସି) ମୋର ଉପେନ୍ଦ୍ରର କବି ପ୍ରତିଭା, ଆଜ ଧୁମୁସର ରାଜାର ଅନୁମତିକୁ ଅପେକ୍ଷା କରି ପାରେ ନା, ଜେନାମଣି ! କାରଣ ଧୁମୁସରର ଅଧିଷ୍ଠାତ୍ରୀ ଦେବତା ଆଜ ତାର ଜୟ-ଯାତ୍ରାର ଇଙ୍ଗିତ ଦିଏ । ଆସ ଉପେନ୍ଦ୍ର ! (ଉପେନ୍ଦ୍ରଙ୍କୁ ଟାଣି ନେଇ ଚାଲିଗଲେ ।)

ଶଙ୍କ । ଅଦ୍ଭୁତ ପ୍ରତିଭାଶାଳୀ ଏହି ଜେନାମଣି ! ( କିଛି କହି ମହାରାଜାଙ୍କର ଅନୁସରଣ କଲେ । )



# ଦ୍ୱିତୀୟ ଦୃଶ୍ୟ

[ କୁଲଡ଼ ନିର୍ଜନ ରାଜପଥର ଏକାଂଶ । ସମୟ—ଅପରାହ୍ଣ । ଲୋକ ଚଳାଚଳ ସେତେ ନାହିଁ । କେତେବେଳେ କେତେବେଳେ ଜଣେ ଅଧେ ଲୋକ ରାଜପଥ ଦେଇ ନିଜ କାର୍ଯ୍ୟରେ ବ୍ୟସ୍ତ ଥିଲା ପରି ଚାଲି ଯାଉଛନ୍ତି । କିଛି ସମୟ ପରେ କୁମାର ନୀଳକଣ୍ଠ ତାଙ୍କର ବିଶ୍ୱସ୍ତ ଅନୁଚର ଦନ୍ତାଦାୟା ସହିତ କଥା କହି କହି ପ୍ରବେଶ କଲେ । ଦନ୍ତାଦାୟା ଲୋକଟିକୁ ଦେଖିଲେ ଗୋଟିଏ ଗୁଣ୍ଡାଶ୍ରେଣୀର ଲୋକ ବୋଲି ମନେହୁଏ । ବେଶରେ ରସିକତାର ଚିହ୍ନ ପରିସ୍ଫୁଟ । ]

ନୀଳ । କିନ୍ତୁ ଗୋଟାଏ କିଛି ଉପାୟ ବାହାର ନ କଲେ ତ ଚଳିବ ନାହିଁ, ଦନ୍ତା !

ଦନ୍ତା । ଯାହା କହିଲେ, ତାହା ସତ ମଣିମା ! କିନ୍ତୁ ଉପାୟ ଯେ ବାହାରୁ ନାହିଁ, କଣ କରାଯିବ ?

ନୀଳ । ତୋ ଉପରେ ଯେ ଏଥିପାଇଁ ମୁଁ ପୁରା ନିର୍ଭର କରିଛି । ଏତେ ବଡ଼ ଗୋଟାଏ ଦନ୍ତା ହୋଇ, ଯଦି ତୋର ଦନ୍ତସ୍ଫୁଟ ନ ହେଉଛି, ତେବେ ତ ମହା ସମସ୍ୟା !

ଦନ୍ତା । କଣ କରିବ ରାଜକୁମାର ! ମୋର ନିଜ କଥାଟା ମଧ୍ୟ ସେହିପରି ଗୋଟାଏ ସମସ୍ୟା ହୋଇ ଉଠୁଛି । ଭଗବାନ ଏଡ଼େ ବଡ଼ ପ୍ରକାଣ୍ଡ ବପୁଟାଏ ମୋତେ ଦେଲେ, ଅଥଚ ସେହି ଅନୁପାତରେ, ଟିକିଏ ବେଶୀ ବୁଦ୍ଧି ଏ ମୁଣ୍ଡଟା ଭିତରେ ଭର୍ତ୍ତି କରିଦେଇ ପାରିଲେ ନାହିଁ । ଏହା କି କମ୍ ଅବଶୋଷର କଥା ? ସେଥିପାଇଁ ସବୁ ଗୋଲମାଳ ହୋଇ ଯାଉଛି । ଓଃ କି ଅବିଚାର !

ନୀଳ । ଏ ସବୁ ରହସ୍ୟ ଛାଡ଼, ଦନ୍ତା । ଘନଭଞ୍ଜିକୁ ଏ ରାଜ୍ୟରୁ ଯେ କୌଣସି ମତେ ଦୂର କରିବାକୁ ହେବ । ନ ହେଲେ, ମୋର ଏ ରାଜ୍ୟର ସିଂହାସନ ଲାଭ କରିବା ଯେ ଅସମ୍ଭବ ହୋଇ ଉଠିବ ।

ଦନ୍ତା । ମୁଁ ସେଥିଲାଗି ପ୍ରକୃତରେ ଭାରି ଦୁଃଖିତ ମଣିମା । କିନ୍ତୁ କଣ କରିବି, ଠିକ୍ ବେଳରେ ବୁଦ୍ଧିର ସୂକ୍ଷ୍ମ ସୂତାଗୁଡ଼ାକ ଯେ ଏକାବେଳକେ ଧରିହୁଅନ୍ତି ନାହାନ୍ତି !

ନୀଳ । (ବିରକ୍ତ ହୋଇ) ସତ କହୁଛି, ଦନ୍ତା ! ଏ ସମୟରେ ତୁ ଯଦି କିଛି ମୋତେ ସାହାଯ୍ୟ ନ କରୁ, ତେବେ ମୁଁ ତୋତେ ହତ୍ୟା କରିବି, ଜାଣିଥା ।

ଦନ୍ତା । ଅହା ହା ! ଏତେଦୂରକୁ ଅଗ୍ରସର ହେବାଟା ତ ମଣିମାଙ୍କ ପକ୍ଷରେ ଭଲ ଦେଖାଯିବ ନାହିଁ । ଏକାବେଳକେ ହତ୍ୟାଟା କରିଦେଲେ ମୁଣ୍ଡଟା ତ ଗଳିଯିବ, ଆଉ ବୁଦ୍ଧି ବାହାରିବ କୁଆଡ଼ୁ ? (ହଠାତ୍ ଚମକି) କୁମାର ସାହେବ ? ବୁଦ୍ଧି ବାହାରିଲା । ଆଉ ଚିନ୍ତା ନାହିଁ । (ଆନନ୍ଦରେ) ଓଃ କି ଚମତ୍କାର ବୁଦ୍ଧିରେ !

ନୀଳ । କଅଣ ?

ଦନ୍ତା । ମଣିମା, ମୋତେ ହତ୍ୟା ନ କରି, ସେହି ତରବାରିଟାକୁ ଘନଭଞ୍ଜଙ୍କ ଉପରେ ଚଳାଇ ଦେଲେ, ସାଙ୍ଗେ ସାଙ୍ଗେ ତ ମୁଣ୍ଡଟା ତାଙ୍କର ବେଓ୍ୟାରିସ ମାଲ୍ ହୋଇଯାନ୍ତା । ରାଜ୍ୟରୁ ବାହାର କରିବା ପରିବର୍ତ୍ତରେ ସେ ତ ଏକାବେଳକେ ଏ ଜଗତରୁ ବାହାର ହୋଇଯାନ୍ତେ । ଏ କଣ ମନ୍ଦ ବୁଦ୍ଧି ?

ନୀଳ । ଉପାୟଟା ପ୍ରକୃତରେ ମନ୍ଦ ନୁହେଁ ଯେ । କିନ୍ତୁ ମା ମୋର ଏ ପ୍ରସ୍ତାବରେ ରାଜି ନୁହନ୍ତି । ସେ ବୁଝିଛନ୍ତି ମହାରାଜାଙ୍କ ପାଖରେ ଏ କଥା ଉଠାଇଥିଲେ । କିନ୍ତୁ ସେଥିରେ ମହାରାଜ ଏକାବେଳକେ ରାଗି ଅଗ୍ନିଶର୍ମା ହୋଇ ଉଠିଲେ । ଏପରି ଅବସ୍ଥାରେ, ଘନଭଞ୍ଜଙ୍କୁ ହତ୍ୟାକଲେ, ହତ୍ୟାକାରୀ ଯେ ଆମେ, ଏ କଥା ମହାରାଜ ପରିଷ୍କାର ଜାଣି ପାରିବେ ।

ଆଉ ତାର ଫଳ ମଧ୍ୟ ସୁବିଧାଜନକ ହେବ ବୋଲି ମୋର ମନେ ହେଉ ନାହିଁ । କାରଣ ଘନଭଞ୍ଜଙ୍କ ପିତା ଯେ ଏକଣି ଘୁମୁସରର ଅଧିପତି ।

ଦନ୍ତୀ । ଓଃ—ଯେତେ ଅନିଷ୍ଟର ମୂଳ, ଆମର ଏହି ବୃଦ୍ଧ ମହାରାଜ । ଲୋକଟା ଦୀର୍ଘ ପାଠିଏ ବର୍ଷ କାଳ ରାଜତ୍ୱ କଲା, ତଥାପି ସିଂହାସନଟାକୁ ରାଜକୁମାରଙ୍କୁ ନଦେଇ, କି ନିଜେ ସେଥିରେ ନ ବସି, ଦେଇଦେଲା, ଗୋଟାଏ ଝିଅ ହାତରେ । ବୁଦ୍ଧିଭ୍ରଂଶ ନ ହେଲେ କି ଏପରି କରନ୍ତା ? ଛି, ଛି, ଛି, ଆଉ ଭଗବାନଙ୍କର ମଧ୍ୟ କି ଅବିଚାର ! ଲୋକଟା ଏତେଦିନ ଧରି ରାଜା ହୋଇ ଶେଷକୁ ବୁଢ଼ା ହେଲା । ତାକୁ ଭଲ ଭୂମି ପାଖକୁ ଏବେ ନେଇ ଯାଅ । ନା—ତା ହେବ ନାହିଁ । ଏ ସଂସାରରୁ ସେ ବିଦାୟ ନେବ ନାହିଁ । ଏଣେ ସିଂହାସନର ସ୍ୱପ୍ନ ଦେଖି ଦେଖି ରାଜକୁମାରଗୁଡ଼ାକ ଦାଢ଼ିବୁଢ଼ା ହେଲେଣି । ସତ କହୁଛି ମଣିମା ! ଏ ସବୁ ଦେଖିଲେ, ଭଗବାନ ବୋଲି ଗୋଟାଏ କିଏ ଅଛି, ଏ ବିଶ୍ୱାସ ମୋର ଆଦୌ ହୁଏ ନାହିଁ ।

ନୀଳ । ତା'ତ ବୁଝିଲି ଦନ୍ତୀ, କିନ୍ତୁ ଘନଆକୁ ଏଠାରୁ ଦୂର କରିବାକୁ ଅନ୍ୟ ଉପାୟ କିଛି ଉଦ୍‌ଭାବନ କର ।

ଦନ୍ତୀ । ନା' ରାଜକୁମାର, ଉପାୟ କଥା ମୋ ଦ୍ୱାରା ହେବ ନାହିଁ । ସେଥିରୁ ମୋତେ କ୍ଷମା କରନ୍ତୁ । ବରଂ ସେ ଭାର ଆପଣ ନିଅନ୍ତୁ । ଯାହା ହୁକୁମ ଦେବେ, ତାହା କାମରେ କରି ଦେଖାଇ ଦେବାକୁ, ଦନ୍ତୀ ସବୁବେଳେ ପ୍ରସ୍ତୁତ ।

ନୀଳ । (ବିରକ୍ତ ହୋଇ) ତୋର ଏହି ବୁଦ୍ଧି ନେଇ ତୁ ଏ ରାଜ୍ୟର ସେନାପତି ହେବାକୁ ଆଶା କରୁଛୁ ନା ?

ଦନ୍ତୀ । ମୋଟେ ନୁହେଁ, ଆଦୌ ନୁହେଁ, ବିଲକୁଲ ନୁହେଁ । ଆଶା ମୁଁ ତ କିଛି କରିନାହିଁ । ବରଂ ମଣିମା ମୋତେ ଆଶା ଦେଇଛନ୍ତି ଯେ, ମଣିମା ରାଜା ହେଲେ ମୋତେ ସେନାପତି କରିଦେବେ । ଆଉ, ସେ ବେଳ ତ ଅଛି । ବର୍ତ୍ତମାନ ମଣିମାଙ୍କର ସିଂହାସନ ପାଇବା କଥା ତ ଆଗ । ସେ କଥା ଆଗ ହେଉ । ତା ପରେ ମୋ କଥା ।

ନୀଳ । ତୁ ଗୋଟାଏ ନିହାତି ଅପଦାର୍ଥ । ଦତ୍ତ୍ୟା ବୋଲି ଏତେ ବଡ଼ କାମଟାଏ ଯେ କିଏ ତୋତେ ଦେଲା, ମୁଁ ତାହାହିଁ ଭାବୁଛି ।

ଦତ୍ତ୍ୟା । ଏଥିରେ ଭାବିବାର କିଛି ନାହିଁ, କୁମାର ! ଲୋକର ନାମଟା ବଡ଼ ହେଲେ ଯେ ସେ ବଡ଼କାମ ଗୁଡ଼ାଏ କରିବ, ଏହା ତ ମୋର ମନେ ହେଉ ନାହିଁ । ଅପଣଙ୍କର ନାମ ତ ପୁଣି ନୀଳକଣ୍ଠ, କାହିଁ, ଅପଣ ତ ଭୋଳା ମହାଦେବଙ୍କ ଭଳି ନିର୍ବିକାର ରହି ବିଷକୁ ହଜମ କରିପାରୁ ନାହାନ୍ତି ?

ନୀଳ । ଦତ୍ତ୍ୟା, ସବୁ ସମୟରେ ତୋର ଏ ରହସ୍ୟ ମୋତେ ଭଲ ଲାଗେ ନା । ତୁ ମୋର ଅବାଲ୍ୟ ସହଚର ସତ, କିନ୍ତୁ ତାହା ବୋଲି ମୋର ଅବସ୍ଥାର ଗୁରୁତ୍ୱ ନ ବୁଝି, ମତେ ସାହାଯ୍ୟ ନ କରି, ଏପରି ବାଚାଳତା ପ୍ରକାଶ କରିବାଟା, ତୋ ପକ୍ଷରେ ଶୋଭାପାଏ ନା । ତୁ ବୋଧହୁଏ ଭୁଲି ଯାଉଛୁ ଯେ, ଧନଞ୍ଜୟ ଅଜି ମୋର ଜୀବନର ସମସ୍ତ ଶାନ୍ତି ବିନଷ୍ଟ କରି ଦେଇଛି । ତାକୁ ଏ ରାଜ୍ୟରୁ ଦୂର କରିବାହିଁ, ମୋର ଜାଗରଣରେ ଏକମାତ୍ର ଚିନ୍ତା, ନିଦ୍ରାରେ ଏକମାତ୍ର ସ୍ୱପ୍ନ ।

ଦତ୍ତ୍ୟା । ମୁଁ ସବୁ ବୁଝିଛି, ମଣିମା ! କିନ୍ତୁ ଜୀବନରେ ଗମ୍ଭୀର ଭାବରେ ଗୋଟାଏ କିଛି ଚିନ୍ତା କରିବାକୁ, ମୋତେ ଟିକିଏ ତ ଅଭ୍ୟାସ କରିବାକୁ ପଡ଼ିବ । କାରଣ ଏ ସବୁ କାର୍ଯ୍ୟରେ ଦତ୍ତ୍ୟା ତ ଅଗରୁ ଅଭ୍ୟସ୍ତ ନ ଥିଲା । ସୁତରାଂ ସବୁ ବିଷୟରେ ଅପଣଙ୍କର ଉପଯୁକ୍ତ ସହଚରରୂପେ ନିଜକୁ ଗଢ଼ି ନେବାକୁ, ମୋତେ ଟିକିଏ ସମୟ ତ ଦରକାର । ହଠାତ୍ ଏତେ ବ୍ୟସ୍ତ ହେଲେ ଚଳିବ କିପରି ? କିନ୍ତୁ ଗୋଟିଏ କଥା ମନେ ରଖିବେ ରାଜକୁମାର ! ଅପଣଙ୍କର ଦତ୍ତ୍ୟା ବୁଦ୍ଧିମାନ ନ ହେଲେ ସୁଦ୍ଧା, ସେ ବିଶ୍ୱାସୀ ଓ ପ୍ରଭୁଭକ୍ତ ।

ନୀଳ । ମୁଁ ତା' ଜାଣେ ଦତ୍ତ୍ୟା । ସେଥିପାଇଁ ତୋର ସାହାଯ୍ୟ ମୋର ଏକାନ୍ତ ପ୍ରୟୋଜନ । (ଟିକିଏ ଭାବି) ଅଚ୍ଛା—ରାଜନର୍ତ୍ତକୀ ମଞ୍ଜରୀକାଙ୍କୁ ତୁ ଜାଣୁ ?

ଦତ୍ତ୍ୟା । ଭଲରୂପେ ଜାଣେ, କିନ୍ତୁ ତାଙ୍କ କଥା ଏଠାରେ କାହିଁକି ?

ନୀଳ । ପ୍ରୟୋଜନ ଅଛି । ତୁ ସେଠାକୁ ବର୍ତ୍ତମାନ ଯା । ତାଙ୍କୁ ସମ୍ବାଦ ଦେବୁ ଯେ, କୁମାର ନୀଳକଣ୍ଠ ଆଜି ରାତିରେ ତୁମର ସଙ୍ଗୀତ ଓ ନୃତ୍ୟ ଉପଭୋଗ କରିବାକୁ ଆସିବେ ଓ ସେଠାରେ ଗୋଟାଏ ଗୁରୁତର ବିଷୟରେ ତୁମ ସହିତ କଣ ଗୁପ୍ତ ପରାମର୍ଶ କରିବେ । ବୁଝିଲୁ ? କିନ୍ତୁ ଖୁବ୍ ଗୋପନରେ ଏ ବନ୍ଦୋବସ୍ତ କରିବାକୁ ହେବ ।

ଦନ୍ତା । (ହସି) ମଣିମା, ଚିନ୍ତା ନାହିଁ । ମୁଁ ତ କହୁଛି, ହୁକୁମ ହେଲା-କ୍ଷଣି ତାହା ପାଳନ କରିବାକୁ ଦନ୍ତା ସର୍ବଦା ପ୍ରସ୍ତୁତ । କିନ୍ତୁ ରାଜକୁମାର ! ବର୍ତ୍ତମାନ ମୁଁ ଆପଣଙ୍କର ବୁଦ୍ଧିକୁ ପ୍ରଶଂସା ନ କରି ରହି ପାରୁ ନାହିଁ ।

ନୀଳ । କାହିଁକି ?

ଦନ୍ତା । ଏତେବେଳକେ ଆପଣ ଠିକ୍ ଉପାୟ ଧରି ପାରିଛନ୍ତି ବୋଲି ! ମୋର ଯାହା ଧାରଣା, ଏ ସବୁ ଗୁରୁତର ବ୍ୟାପାରରେ ସ୍ତ୍ରୀ ବୁଦ୍ଧି ହିଁ ପ୍ରକୃତରେ ଆଶ୍ଚର୍ଯ୍ୟ ରକମରେ ସାହାଯ୍ୟ କରେ । କାରଣ ସ୍ତ୍ରୀ ବୁଦ୍ଧି ସର୍ବଦା ପ୍ରଳୟଙ୍କରୀ । ଆଜି ତାହା ନ କରି, ଖାଲି ଦନ୍ତା ଉପରେ ନିର୍ଭର ହେଲେ, ବିଚାରି ବପୁବନ୍ତ ଦନ୍ତା ହଠାତ୍ ଘଣ୍ଟକ ଭିତରେ ବୁଦ୍ଧିମନ୍ତ ହେବ କିପରି, କହିଲେ ମଣିମା ?

ନୀଳ । ଅଚ୍ଛା, ତୁ ବର୍ତ୍ତମାନ ଯା । ଖୁବ୍ ଗୋପନରେ ବନ୍ଦୋବସ୍ତ କରିବୁ । ମୋର ସେଠାକୁ ଯିବା କଥା ଯେପରି କେହି ନ ଜାଣନ୍ତି, ସାବଧାନ ! ଏଠାରେ ମୁଁ ଅଉ ବେଶୀ ସମୟ ଅପେକ୍ଷା କରି ପାରୁ ନାହିଁ । (ଦ୍ରୁତ ବେଗରେ ବିପରୀତ ଦିଗେ ପ୍ରସ୍ଥାନ ।)

ଦନ୍ତା । ମନ୍ଦ ନୁହେଁ, ଭିତରେ ମଣ୍ଡାରାଣୀ, ଆଉ ବାହାରେ ରାଜ-ନର୍ତ୍ତକୀ ମଞ୍ଜରୀକା, ବେଶ୍ ଚାଲିବ । ( ଅନ୍ୟ ଦିଗରେ ପ୍ରସ୍ଥାନ । )

[ ଅପର ଦିଗରୁ କଥା କହି କହି ଜ୍ୟେଷ୍ଠ ରାଜକୁମାର ଗଙ୍ଗାଧର ଓ ତାଙ୍କର କନିଷ୍ଠ ଦୁଇ ଭାଇ, ହରିଶରଣ ଓ ଜଗନ୍ନାଥଙ୍କର ପ୍ରବେଶ ।]

ଜଗ । ଏତେବେଳକେ ପଦେ କଥାରେ ଆପଣଙ୍କର ସିଂହାସନ ଦାବୀଟା ଚିରଦିନ ଲାଗି ତ୍ୟାଗ କରିବା କିନ୍ତୁ ଭଲ ହେଲା ନାହିଁ ।

ହରି । ତୁମେ ଯାହା କୁହ ଜଗନ୍ନାଥ, ଏ ଗୋଟାଏ ବିରାଟ ଚକ୍ରାନ୍ତ । ମହାରାଣୀ ମା'ଙ୍କ କଥାରେ ବୃଦ୍ଧ ପିତାଙ୍କର ଏକାବେଳକେ ବୁଦ୍ଧି ଭ୍ରଂଶ ଘଟିଛି ।

ଗଙ୍ଗା । ନା ହରିଶରଣ ! ପିତାଙ୍କର ଦୋଷ ଏଥିରେ କିଛି ନାହିଁ । ମୁଁ ଯେତେଦୂର ଜାଣି ପାରିଛି, ଭବିଷ୍ୟତ୍ ବାଣୀ ଶୁଣିବା ପରଠାରୁ, ନୀଳକଣ୍ଠଙ୍କୁ ସିଂହାସନ ଦେବା କଳ୍ପନା, ପିତାଙ୍କର ଆଦୌ ନାହିଁ ।

ଜଗ । ତା ହେଲେ, ଆପଣଙ୍କୁ ପୁଣି ଥରେ ଡକାଇ ରାଜ୍ୟର ଭବିଷ୍ୟତ୍ ନେଇ ପ୍ରଶ୍ନ କରିବାର ଉଦ୍ଦେଶ୍ୟ କଣ ଥିଲା ?

ଗଙ୍ଗା । ସ୍ନେହାନ୍ଧ ବୃଦ୍ଧ ପିତା ମୋର, ଭବିଷ୍ୟତ୍‌ରେ ଘୁମୁସର ରାଜ୍ୟରେ ଗୋଟାଏ ଅଯଥା ରକ୍ତପାତ ନ ହେଉ, ଏହି କାମନା ସେ ବରାବର ପୋଷଣ କରି ଆସିଛନ୍ତି । ଘନଭଞ୍ଜଙ୍କର ରାଜ୍ୟଲାଭ ବିଷୟରେ ଭବିଷ୍ୟତ୍ ବାଣୀ ଶୁଣି, ସେହି ରକ୍ତପାତର ଆଶଙ୍କା ତାଙ୍କର ଟିକିଏ ବଢ଼ି ଉଠିଥିଲା । ତେଣୁ ତାଙ୍କର ସନ୍ଦେହ ମୋଚନ କରିବା ନିମିତ୍ତ, ମୋତେ ଡକାଇ ପଠାଇଲେ, ଯେହେତୁ ସର୍ବଜ୍ୟେଷ୍ଠ ରାଜକୁମାର ହିସାବରେ ସିଂହାସନର ଦାବୀ ସର୍ବାଗ୍ରେ ମୋର ।

ହରି । ଆଉ, ଆପଣ ନିଜର ଛୋଟ ଶିଶୁଟି ପରି, ସେହି ଦାବୀକୁ ଗୋଟାଏ ମାତ୍ର ପ୍ରଶ୍ନରେ ଚିରଦିନ ଲାଗି ହରାଇ ଦେଇ ଆସିଲେ ।

ଗଙ୍ଗା । କଣ କରିବି ହରିଶରଣ, ବୃଦ୍ଧ ପିତାଙ୍କର ମାନସିକ ଅଶାନ୍ତି ନିକଟରେ ପୁତ୍ର ମୁଁ—ମୋର ସିଂହାସନ ଦାବୀଟାକୁ ମୁଁ ଅଧିକ ଉଚ୍ଚ ଆସନ ଦେଇ ପାରିଲି ନାହିଁ । ତୁମେ ତ ଜାଣ, ମୋର ଚିରଦିନର ଆଦର୍ଶ, 'ପିତରି ପ୍ରୀତି ମାପନ୍ନେ ପ୍ରୀୟନ୍ତେ ସର୍ବ ଦେବତା ।' ସେ ଆଦର୍ଶର ତଳକୁ ଖସିବାଟାକୁ ମୁଁ ନିଜର ଆତ୍ମହତ୍ୟା ସଙ୍ଗେ ସମାନ ମନେକରେଁ ।

ଜଗ । ତାହା ବୋଲି, ଏତେ ବଡ଼ ରାଜ୍ୟର ରାଜକୁମାର କେବଳ ଗୋଟାଏ ଯୁକ୍ତି ଛଳରେ, ଘନଭଞ୍ଜଙ୍କ ହାତକୁ ବଢ଼ାଇ ଦେବାଟାକୁ ଆପଣ ଯେ କିପରି ଅନୁମୋଦନ କଲେ, ତାହା ମୁଁ ବୁଝିପାରୁ ନାହିଁ ।

ଗଙ୍ଗା । ଜଗନ୍ନାଥ, ମୁଁ ମାନୁଛି, ରାଜ୍ୟର ରାଜା ହୋଇ ରାଜ୍ୟଶାସନ କରିବାଟା ଅତି ଗୌରବର କଥା । କିନ୍ତୁ ମୋ ଦୃଷ୍ଟିରେ, ମୋର ନ୍ୟାଯ୍ୟ ଅଧିକାରକୁ ଅନ୍ୟକୁ ଦାନ କରିବାରେ ଅଧିକ ମହତ୍ତ୍ୱ ଅଛି । ଆଉ ସେହି ମହତ୍ତ୍ୱ, ରାଜତ୍ୱର ଗୌରବଠାରୁ ଅଧିକ ଲୋଭନୀୟ ।

ଜଗ । କ୍ଷମା କରିବେ ଭାଇ, ଏହା କେବଳ ଗୋଟାଏ ଉନ୍ମାଦର ଅଲୌକିକ କଳ୍ପନା ଛଡ଼ା ଅନ୍ୟ କିଛି ନୁହେଁ । •

ଗଙ୍ଗା । (ହସି) ହୋଇପାରେ, କିନ୍ତୁ ଜଗନ୍ନାଥ ! ଉନ୍ମାଦ ନ ହେଲେ, କେବଳ ଗତାନୁଗତିକ ପନ୍ଥା ଅନୁସରଣ କରି, ଜଗତରେ କେହି କେବେ ବଡ଼ ହୋଇ ପାରେ ନା । ସେ ଉନ୍ମତ୍ତତାରେ ଏପରି ଗୋଟାଏ କଳ୍ପନା ଥାଏ, ଯାହାର ସୌରଭ ନନ୍ଦନର ପାରିଜାତର ସୌରଭଠାରୁ ଢେର ଉଚ୍ଚରେ । ଭାରତର ଅତୀତ ଇତିହାସର ପୃଷ୍ଠା ଖୋଲି ଦେଖ । ଦିନେ ଏହି ଦେଶର ରାଜା ରାମଚନ୍ଦ୍ର କେବଳ ଗୋଟାଏ ଆଦର୍ଶର କଳ୍ପନାରେ ଅଯୋଧ୍ୟା ପରି ରାଜ୍ୟଟାକୁ ତ ପୁଣି ଭରତ ହାତରେ ଟେକି ଦେଇଥିଲେ ? ଏହା କଣ ଉନ୍ମାଦର କଳ୍ପନା ? ତାହା ଯଦି ହୁଏ, ତେବେ ସେ ଉନ୍ମତ୍ତତାର ସ୍ଥାନ ଜଗତର ରାଜରାଜେଶ୍ୱରଙ୍କର ସିଂହାସନଠାରୁ ଊର୍ଦ୍ଧ୍ୱରେ, ନିମ୍ନରେ ନୁହେଁ । ବୁଝ ଜଗନ୍ନାଥ ! ଏହି ସବୁ ଉଚ୍ଚ ଆଦର୍ଶ କଣ କେବଳ ପୋଥିଗତ ବିଦ୍ୟା ହେବା ଲାଗି ଉଦ୍ଦିଷ୍ଟ ? ଏ ଆଦର୍ଶରୁ କଣ ଆମର ଶିକ୍ଷା କରିବାର କିଛି ନାହିଁ ?

ହରି । ଆପଣଙ୍କର ଏ ଭଲ ଯୁକ୍ତିରେ, ନୀରବତାହିଁ ଆମର ଉତ୍ତର ।

ଗଙ୍ଗା । ହରିଶରଣ ! ସ୍ନେହର ଭାଇ ମୋର, ଟିକିଏ ଭାବି ଦେଖ । ଏଥିରେ ମାନ ଅଭିମାନର କଥା କିଛି ନାହିଁ । ଘନଭଞ୍ଜ ମଧ୍ୟ ରାଜକୁମାର । ସେ ତ ସ୍ୱଇଚ୍ଛାରେ ଘୁମୁସର ସିଂହାସନ ଲାଗି କୌଣସି ଅଭିଳାଷ ପୋଷଣ କରି ନ ଥିଲେ ? ନିୟତିର ନିର୍ଦ୍ଦେଶରେ ଯଦି ଏ ଦେଶର ସିଂହାସନ ସେହି ଘନଭଞ୍ଜଙ୍କ ହାତକୁ ଯାଏ, ସେଥିରେ ଆମର କ୍ଷୋଭ କରିବାର ତ କିଛି ନାହିଁ । ଘୁମୁସର ରାଜବଂଶର ରକ୍ତ ଘନଙ୍କର ଶିରା ପ୍ରଶିରାରେ ନାହିଁ,

ଏ କଥା ଧନଭଞ୍ଜଙ୍କର ଅତି ବଡ଼ ଶତ୍ରୁ ମଧ୍ୟ ବିଶ୍ୱାସ କରିବ ନାହିଁ । ତେବେ ଆକ୍ଷେପର କାରଣ ରହିଲା କେଉଁଠାରେ ?

ହରି । ମୋର ସନ୍ଦେହ ହୁଏ, ଏ ଗୋଟାଏ ବିରାଟ ଚକ୍ରାନ୍ତ । ଅଭି ଏହି ଚକ୍ରାନ୍ତର ମୂଳରେ ଅଛନ୍ତି, ନୀଳକଣ୍ଠ ଓ ମଣ୍ଡାରାଣୀ । ଧନଭଞ୍ଜ କେବଳ ଉପଲକ୍ଷ୍ୟ ମାତ୍ର । ପ୍ରକୃତରେ ନୀଳକଣ୍ଠ ନିଜେ ସିଂହାସନ ଲାଭ କରିବା ଉଦ୍ଦେଶ୍ୟରେ, ଏହି କୌଶଳ ପ୍ରୟୋଗ କରି, ଆପଣଙ୍କର ଦାବୀର ପଥ ରୁଦ୍ଧ କରିଛନ୍ତି ।

ଗଙ୍ଗା । ହୋଇପାରେ । କିନ୍ତୁ ମୋର ଯାହା ଧାରଣା, ନୀଳକଣ୍ଠଙ୍କ ସିଂହାସନ ଦାବୀକୁ ପିତା କଦାପି ସମର୍ଥନ କରି ପାରିବେ ନାହିଁ, ଅନ୍ତତଃ ଭବିଷ୍ୟଦ୍‌ବାଣୀ ଶୁଣିଲା ପରଠାରୁ ।

ଜଗ । ଶୁଣିଲି, ଏହି ସମ୍ପର୍କରେ ନୀଳକଣ୍ଠ ମଧ୍ୟ ପିତାଙ୍କଠାରେ ଯଥେଷ୍ଟ ତିରସ୍କୃତ ହୋଇଛନ୍ତି । ଖାଲି ତେତିକି ନୁହେଁ, କେନାମଣି ଉପେନ୍ଦ୍ର ମଧ୍ୟ ନିଜ ପିତା ନୀଳକଣ୍ଠଙ୍କର ଏହି ଅନ୍ୟାୟ ରାଜ୍ୟଲିପ୍ସା ବିରୁଦ୍ଧରେ, ତାଙ୍କୁ ଅତି କଠୋର ଓ ନିର୍ମମ ପ୍ରତିବାଦ କରିଥିଲେ ।

ଗଙ୍ଗା । ଅସମ୍ଭବ ନୁହେଁ ! ପ୍ରକୃତରେ ହରିଶରଣ, ମୁଁ କେନାମଣିଙ୍କୁ ଲକ୍ଷ୍ୟ କରି ଦେଖିଛି, ଅଦ୍ଭୁତ ପ୍ରତିଭାଶାଳୀ ଏହି ଯୁବକ । ତାଙ୍କର କବି ପ୍ରତିଭା ଦେଖି, ମୁଁ କେବଳ ସ୍ତବ୍ଧ ହୋଇ ଯାଇଛି । କିଶୋର ବୟସରୁ ମନୋରମ କାବ୍ୟ ରଚନା କରିବାର ତାଙ୍କର ଏହି ଅଲୌକିକ ଶକ୍ତି ଦେଖି, ମୋର ମନେହୁଏ ଯେ ଏ ପ୍ରତିଭାକୁ କେବଳ ଘୁମୁସର ରାଜ୍ୟ ମଧ୍ୟରେ ଆବଦ୍ଧ କରି ରଖିବା ଅସମ୍ଭବ । ତାଙ୍କର ପ୍ରତିଭା, ଭବିଷ୍ୟତରେ ସମଗ୍ର କଳିଙ୍ଗ ସାମ୍ରାଜ୍ୟର ଗୋଟାଏ ବିଶିଷ୍ଟ ରତ୍ନ ହୋଇ ଉଠିବ । ସୁତରାଂ ତାଙ୍କ ଭଳି ଜଣେ ଉଚ୍ଚକୋଟୀର ସମଦର୍ଶୀ ତେଜସ୍ୱୀ ଯୁବକ, ଜଗତର ଯେ କୌଣସି ଅନ୍ୟାୟ ବିରୁଦ୍ଧରେ ଯେ ବିଦ୍ରୋହ ଘୋଷଣା କରିବ, ଏଥିରେ ଆଶ୍ଚର୍ଯ୍ୟର କଥା ତ କିଛି ନାହିଁ । ଘୁମୁସର ରାଜ୍ୟର ଗୋଟାଏ ଉଜ୍ଜ୍ୱଳ ଦୀପଶିଖା ସେ, ଭଗବାନ ତାଙ୍କୁ ଦୀର୍ଘାୟୁଷ ଦିଅନ୍ତୁ ।

ହରି । ଚାଲନ୍ତୁ, ଜଗନ୍ନାଥ ମନ୍ଦିରରେ ଅଳତି ଦର୍ଶନ କରିବା ଲାଗି କହୁଥିଲେ ପରା ? ବର୍ତ୍ତମାନ ସନ୍ଧ୍ୟା ଉତ୍ତୀର୍ଣ୍ଣ ପ୍ରାୟ । ଅଳତିର ସମୟ ହୋଇ ଗଲାଣି, ଚାଲନ୍ତୁ ।

ଜଗ । ହଁ ଯିବା । କିନ୍ତୁ ଭାଇ, ଆମ୍ଭେମାନେ କଣ ଏ ଅନ୍ୟାୟର କୌଣସି ପ୍ରତିରୋଧ କରିବାକୁ ଚେଷ୍ଟା କରିବୁ ନାହିଁ ?

ଗଙ୍ଗା । (ହସି) ଯଦି ବଡ଼ ଭାଇ ବୋଲି ମୋର ପରାମର୍ଶକୁ ତୁମ୍ଭେମାନେ ଅପେକ୍ଷା କରିଥାଅ, ତେବେ ମୋର ଅନୁରୋଧ, ଅବିଚଳିତ ଚିତ୍ତରେ ରାଜାଦେଶକୁ ପାଳନ କରିଯାଅ । ତଦ୍ୱାରା ଘୁମୁସରର ମଙ୍ଗଳ ହେବ ଆଉ ଧନଞ୍ଜୟ ଭଞ୍ଜଙ୍କର ପୁତ୍ରମାନଙ୍କର ଯେ ଯଥେଷ୍ଟ କର୍ତ୍ତବ୍ୟଜ୍ଞାନ ଅଛି, ଏ ପରିଚୟ ସମଗ୍ର ଜଗତ ନିଶ୍ଚୟ ଜାଣି ପାରିବ । ଘୁମୁସରର ଭବିଷ୍ୟତ ଇତିହାସରେ ତୁମ୍ଭମାନଙ୍କର କୌଣସି କଳଙ୍କର ଚିହ୍ନ ନ ରହୁ, ଏହି ଏତିକିହିଁ ମୋର ତୁମ୍ଭମାନଙ୍କ ନିକଟରେ ଭିକ୍ଷା, ବୁଝିଲ ? ଚାଲ—

( ତିନି ଭାଇଯାକ ପ୍ରସ୍ଥାନ କଲେ )

---

# ତୃତୀୟ ଦୃଶ୍ୟ

[ ରାଜନର୍ତ୍ତକୀ ମଞ୍ଜଶ୍ରୀକାଙ୍କର ବିଳାସ କକ୍ଷ । ସମୟ—ରାତ୍ରି ପ୍ରଥମ ପ୍ରହର । କକ୍ଷଟି ଦୀପମାଳାଦ୍ୱାରା ଅତ୍ୟୁଜ୍ଜ୍ୱଳଭାବେ ଆଲୋକିତ । ସେହି ଆଲୋକରେ, ଦେଓ୍ୱାଲ ଗ୍ରଥିତ ନାନା ମନୋରମ ଚିତ୍ରଗୁଡ଼ିକ ସ୍ପଷ୍ଟରୂପେ ପ୍ରତିଭାତ । କକ୍ଷର ତଳ ଦେଶର ଅର୍ଦ୍ଧାଧିକ ଭାଗ ଗଦୀ ବିମଣ୍ଡିତ । ତାହା ଉପରେ ମୂଲ୍ୟବାନ ମଖମଲ ଗାଲିଚାଟିଏ ଅତି ଯତ୍ନରେ ବିଛା ଯାଇଛି । ସେହି ତୁଳୀତଳ ଆସନ ଉପରେ ତିନି ଚାରି ଗୋଟି ବୃହତ୍କାୟ ଉପାଧାନ । ଆସନର ମଧ୍ୟଭାଗରେ ଗୋଟିଏ ରୌପ୍ୟ ପାତ୍ରରେ ଫୁଲମାଳ ସଜ୍ଜିତ ହୋଇ ରଖାଯାଇଛି । ସେହି ପାତ୍ରର ନିକଟରେ ରୌପ୍ୟ ଅତରଦାନୀ ପ୍ରଭୃତି ବିଳାସର ଅନ୍ୟାନ୍ୟ ଉପକରଣମାନ ଯଥାକ୍ରମରେ ସଜା ହୋଇ ରଖା ଯାଇଛି । ସେହି ଆସନର ମଧ୍ୟଭାଗରେ ଗୋଟିଏ ଉପାଧାନକୁ ଭରା ଦେଇ ବସିଛନ୍ତି କୁମାର ନୀଳକଣ୍ଠ । ତାଙ୍କର କିଛି ଦୂରରେ ବିହ୍ୱଳ ନେତ୍ରରେ ବସି ଶୁଣୁଛି ଦନ୍ତା । ଆସନର ତଳକୁ ଏକ ପାର୍ଶ୍ୱରେ ସାରଙ୍ଗୀ ଓ ବୀଣା ପ୍ରଭୃତି ବାଦ୍ୟ ଯନ୍ତ୍ରମାନ ସମ୍ମୁଖରେ ରଖି ବାଦ୍ୟକାରଗଣ ନିଜର କର୍ତ୍ତବ୍ୟ କରୁଛନ୍ତି । କକ୍ଷର ମଧ୍ୟ ଭାଗରେ ଅପରୂପ ସୁନ୍ଦରୀ ରାଜନର୍ତ୍ତକୀ ମଞ୍ଜିଶ୍ରୀକା ନୃତ୍ୟ କରିବାରେ ବିଭୋର ଥିଲାବେଳେ, ଥରେ ଥରେ କଟାକ୍ଷ-ପାତ କରି ନୀଳକଣ୍ଠଙ୍କୁ ଉଦ୍ଭ୍ରାନ୍ତ କରି ପକାଉଛି । ମଞ୍ଜିଶ୍ରୀକା ଯୁବତୀ । ତାର ମୂଲ୍ୟବାନ ବେଶରୁ ପରିଷ୍କାର ଜଣା ଯାଉଥିଲା ଯେ, ସେ ଐଶ୍ୱର୍ଯ୍ୟମୟୀ । ଏହାପରେ କିଛି ସମୟ ନୃତ୍ୟ ପରେ ମଞ୍ଜିଶ୍ରୀକା ନୃତ୍ୟ ବନ୍ଦକରି କୁମାରଙ୍କୁ ଫୁଲମାଳ ଭେଟି ଦେଲା ।]

ଶାଳ । (ହସି) ଚମତ୍କାର, ମଞ୍ଜୁଶ୍ରୀକା ! ମୁଁ କେବଳ ମୁଗ୍ଧ ଅପଲକ ନୟନରେ ତୁମ ଅଙ୍ଗକୁ ଚାହିଁ ରହିଛି । କାହିଁ, ରାଜସଭାରେ ଏପରି ମନୋହର ନୃତ୍ୟ ତ କେବେ ତୁମେ ଦେଖାଇଁ ନାହିଁ ?

ମଞ୍ଜୁ । ମଣିମା ! ଏଟା ତ ରାଜସଭା ନୁହେଁ । ତାପରେ, ରାଜସଭାରେ ବେତନଭୋଗୀ ମଞ୍ଜୁଶ୍ରୀକା କେବଳ ରାଜନର୍ତ୍ତକୀର କର୍ତ୍ତବ୍ୟ ପାଳନ କରେ ମାତ୍ର । ଅନ୍ତରର ପ୍ରେରଣା ତ ସେଠାରେ ନ ଥାଏ ?

ଶାଳ । କାହିଁକି ?

ମଞ୍ଜୁ । ମଞ୍ଜୁଶ୍ରୀକା ଗଣିକା ସତ, କିନ୍ତୁ ସେ ନାରୀ । ନିଜର ଉଦର ପରିପୋଷଣ କରିବା ନିମନ୍ତେ ସେ ନିଜର ହସଟିକୁ ପର୍ଯ୍ୟନ୍ତ ବିକ୍ରୟ କରେ । କିନ୍ତୁ ରାଜସଭାର ସହସ୍ର କୁତ୍ସିତ ଦୃଷ୍ଟି ସମ୍ମୁଖରେ ତାର ନୃତ୍ୟର ଛନ୍ଦ, କେଜାଣି କାହିଁକି ଗୋଟାଏ ଅଜଣା ଘୃଣାରେ ଥରେ ଥରେ ଶିଥିଳ ହୋଇ ପଡ଼େ, କଣ୍ଠର ସ୍ୱର ମଧ୍ୟ ଜଡ଼ିତ ହୋଇ ଉଠେ । କ୍ଷମା କରିବେ ମଣିମା, ସେ ପରିସ୍ଥିତି ତ ଏପରି ଏଠାରେ ନାହିଁ । ଅଳଙ୍କାର ଏ ନୃତ୍ୟ, ମୋର କୁଟୀରରେ ରାଜ ଅତିଥିଙ୍କର ଆଗମନ ଉପଲକ୍ଷରେ, କେବଳ ସ୍ୱେଚ୍ଛା ପ୍ରଣୋଦିତ ଅଭିନନ୍ଦନର ଗୋଟାଏ ଆୟୋଜନ ମାତ୍ର । ସୁତରାଂ ଏଥିରେ ଆନ୍ତରିକତା ଭରି ରହିବା ଯେ ସ୍ୱାଭାବିକ, ମଣିମା !

ଶାଳ । ତୁମର କଥା କହିବାର ଭଙ୍ଗୀ ମଧ୍ୟ ଚମତ୍କାର, ମଞ୍ଜୁଶ୍ରୀକା ତୁମର ଚାତୁର୍ଯ୍ୟରେ ବାସ୍ତବିକ ମୁଁ ମୁଗ୍ଧ । ଘୁମୁସର ରାଜ୍ୟର ରାଜନର୍ତ୍ତକୀ ତୁମେ । କାହିଁ, ତୁମର ଲଳିତ କଣ୍ଠସ୍ୱରର ପରିଚୟ ଟିକିଏ ଦେଲ ନାହିଁ ଯେ ?

ମଞ୍ଜୁ । ଅଭ୍ୟର୍ଥନାର ଶେଷ ତ ହୋଇ ନାହିଁ ମଣିମା ! (ବାଦ୍ୟ-କାରଙ୍କୁ ଇଙ୍ଗିତ ଦେଲେ, ବାଦ୍ୟଯନ୍ତ୍ରର ସାହାଯ୍ୟରେ ମଞ୍ଜୁଶ୍ରୀକା ଗାଇଲେ । )

ଶ୍ରୀମତୀ ଶ୍ରୀପତି ବୃନ୍ଦାବନେ କେଳି ରଚିଲେ

ବୃନ୍ଦାବନ ଶୋଭା ତରୁ, ତରୁ ତଳେ କଳ୍ପତରୁ, ତରୁଣୀ ରତନ ତରୁ
ତରଳାକ୍ଷୀ ମାତିଲେ ।୧।

ସାରଙ୍ଗ ରବ ପଲ୍ଲଙ୍କେ, ସାରଙ୍ଗ ପଙ୍କିଲ ପଙ୍କେ, ସାରଙ୍ଗମୁଖୀ ସାରଙ୍ଗ,
ସାରଙ୍ଗରେ ମାଢିଲେ ।୨।

କମଳ ଦେଶେ କମଳ, କମଳେ କମଳ ମାଳ, କମଳମୁଖୀ କମଳ,
କମଳରେ ମାଢିଲେ ।୩।

( ଏତକ ଗାଇ ଗୀତ ବନ୍ଦ କଲେ । )

କାଳ । ବାଃ, ମଞ୍ଜରିକା—ସୁନ୍ଦର ! ଗୀତର ରଚନାଟି ମଧ୍ୟ ମନୋରମ । ଏପରି ସଙ୍ଗୀତ ତୁମେ କେଉଁଠାରୁ ପାଇଲ ? ମୁଁ ଯେ ଏକାବେଳକେ ତନ୍ମୟ ହୋଇ, ଗୀତଟିର ଭାବରେ ବିଭୋର ହୋଇ ପଡ଼ିଥିଲି । ଗୀତଟିର ମୂର୍ଚ୍ଛନା ଶେଷ ହେବା ପର୍ଯ୍ୟନ୍ତ ମୁଁ ବୋଧହୁଏ ନିଜର ଅସ୍ତିତ୍ୱ ପର୍ଯ୍ୟନ୍ତ ଏକାବେଳକେ ଭୁଲି ଯାଇଥିଲି । ଏହି ଗୀତଟିର କବି କିଏ ?

ମଞ୍ଜ । (ଶେଷ ପଦ ଗାଇଲେ)—
ଅଶେଷ ରସରେ ରସି, ରସାଇ ରସିକା ରସି, ହରଷରେ ରସି,
ରସେ ଉପେନ୍ଦ୍ର ଭଣିଲେ ।

କାଳ । (ଅଶ୍ଚର୍ଯ୍ୟେ) ଉପେନ୍ଦ୍ର ! କେଉଁ ଉପେନ୍ଦ୍ର ?
ମଞ୍ଜ । ଜେନାମଣି ଉପେନ୍ଦ୍ର, ମଣିମା—

କାଳ । (ବିରକ୍ତିରେ) କଣ କହିଲ ? ଏହି ସଙ୍ଗୀତ ଉପେନ୍ଦ୍ରର ? ତେବେ, ଜେନାମଣିଙ୍କର ଏ ସ୍ଥାନକୁ ଅବାଧ ଗତିବିଧି ଅଛି, ନୁହେଁ ? ଦନ୍ତା, ଶୁଣିପାରୁଛୁ ତ ? ଅମର ଜେନାମଣିଙ୍କର କୀର୍ତ୍ତି ? ଓଃ, କଶୋର ବୟସରୁ କାବ୍ୟ କବିତା ଚର୍ଚ୍ଚା କରିବାର କି ଶୋଚନୀୟ ଅଧଃପତନ ! ମଞ୍ଜରିକା ! ମୋତେ ଏ କଥା ଆଗରୁ ଜଣାଇବାର ଉଚିତ ଥିଲା ।

ମଞ୍ଜ । (ଅଶ୍ଚର୍ଯ୍ୟେ) କେଉଁ କଥା ମଣିମା ? ମୁଁ ଯେ କିଛି ବୁଝିପାରୁ ନାହିଁ ?

ଦନ୍ତା । ବୁଝିବାରେ ଏଥିରେ ବାକି ରହିଲା କେଉଁଠି ? ଜେନାମଣି ଉପେନ୍ଦ୍ର ଯେ ଏଠାକୁ ଯାତାୟାତ କରନ୍ତି, ଏ ସମ୍ବାଦରେ ରାଜକୁମାରଙ୍କର ଧୈର୍ଯ୍ୟଚ୍ୟୁତ ଘଟିଛି, ଏ କଥା କଣ ତୁମେ ଦେଖି ପାରୁ ନାହିଁ ?

ମଞ୍ଜୁ । ଏହ କଥା ମଣିମା ! କିନ୍ତୁ ଲୋବଣ୍ୟବତୀଙ୍କ ଭଳି ଦେବତାଙ୍କର ଚରଣରେଣୁ ଏହି କୁଟୀରର କୌଣସି ଅଂଶରେ ତ ଥରେ ହେଲେ ପଡ଼ ନାହିଁ ମଣିମା ? କୁଆଡ଼େ କାହିଁକି ଏ ଦୋଷାରୋପ ?

( ଇଙ୍ଗିତ ଦେବାରୁ ବାଦ୍ୟକାରଗଣ ଚାଲିଗଲେ )

ଶୀଳ । ପୁଣି ମିଥ୍ୟା କହିବାକୁ ସାହସ କରୁଛ ? ମଞ୍ଜୁଳିକା ! ତୁମେ ବୋଧହୁଏ ଜାଣିପାରି ନାହିଁ ଯେ ଉପେନ୍ଦ୍ରକୁ ଏଠାକୁ ଆସିବାରେ ପ୍ରଶ୍ରୟ ଦେଇ, ତୁମେ ମୋର କି ସର୍ବନାଶ ସାଧନ କରିଛ ।

ମଞ୍ଜୁ । ମଣିମା ! ଅନ୍ୟାୟ କ୍ରୋଧରେ ଉତ୍‌କ୍ଷିପ୍ତ ହୋଇ, ବିବେଚନା-ଶୂନ୍ୟ ହୁଅନ୍ତୁ ନାହିଁ । ରାଜନନ୍ଦିନୀ କୁମାର ଉପେନ୍ଦ୍ରଙ୍କର ସଂସ୍ପର୍ଶରେ ଆସିଛ, ଏ କଥା ସତ୍ୟ ହୋଇଥିଲେ, ମଞ୍ଜୁଳିକା ଧୂମୁସରର ରାଜନନ୍ଦିନୀ ହେବାର କଳଙ୍କକୁ ବହୁତ ଦିନ ଆଗରୁ ଫିଙ୍ଗି ଦେଇ ପାରନ୍ତାଣି । କିନ୍ତୁ ମୋର ଦୁର୍ଭାଗ୍ୟ ଯେ ସେ ଅମୂଲ୍ୟ ସ୍ୱର୍ଣ୍ଣମଣିର ଛାୟା ସୁଦ୍ଧା ସ୍ପର୍ଶ କରିବାର ସୁଯୋଗ ଏ ପର୍ଯ୍ୟନ୍ତ ଏ ହତଭାଗିନୀ ନର୍ତ୍ତକୀର ଭାଗ୍ୟରେ ଘଟି ନାହିଁ ।

ଶୀଳ । ତେବେ ତୁମେ ଏହିକ୍ଷଣି ଲୋବଣ୍ୟବତୀଙ୍କର ଯେ ସଙ୍ଗୀତଟି ଗାଇଲ, ତାହା ଶିଖିଲ କିପରି ?

ମଞ୍ଜୁ । ଓହୋ ! ବର୍ତ୍ତମାନ ବୁଝି ପାରିଲି, ଯୁବରାଜଙ୍କର ସନ୍ଦେହ କେଉଁଠାରେ । କିନ୍ତୁ ମଣିମା, ଦୂରଗଗନର ଦିଗ୍‌ବଳୟ ଉପରେ ବସି ଯେତେବେଳେ ସୂର୍ଯ୍ୟଦେବ ତାଙ୍କର କିରଣରେଖା ଲକ୍ଷ୍ୟହୀନ ଭାବରେ ଢାଳି ଯାଆନ୍ତି, ସେହି ଜ୍ୟୋତିରେଖା ଶତଧାରାରେ ଉଚ୍ଛ୍ୱସିତ ହୋଇ ଜଗତର ସମସ୍ତ ବାଞ୍ଛିତ ଅବାଞ୍ଛିତ ସ୍ଥାନରେ ଖେଳି ବୁଲେ । ଏଥିଲାଗି ତ ସୂର୍ଯ୍ୟଦେବ ଦାୟୀ ହୁଅନ୍ତି । ଦାୟୀ, ତାଙ୍କର ଜ୍ୟୋତିର ସମଦର୍ଶୀ ପ୍ରଭାବ । ସୂର୍ଯ୍ୟଦେବ ତ ସେଥିଲାଗି କେବେ ସୁଅବସର ଦ୍ୱାରେ ଦ୍ୱାରେ ବୁଲି ପାତ୍ରାପାତ୍ର ନିର୍ବିଶେଷରେ ମୟୂଖଜାଳ ବିତରଣ କରନ୍ତି ନାହିଁ । ତେବେ, ଲୋବଣ୍ୟବତୀ ଉପେନ୍ଦ୍ରଙ୍କ ପ୍ରତି ଏ ଅହେତୁକ ସନ୍ଦେହ କାହିଁକି ?

ଶୀଲ । ରାଜନର୍ତ୍ତକି ! ଉପେନ୍ଦ୍ରକୁ ରକ୍ଷା କରିବା ନିମିତ୍ତ ଏହା କେବଳ ତୁମର ମିଥ୍ୟାଯୁକ୍ତିର ଅବତାରଣା । କାହିଁ ଜେନାମଣି ଉପେନ୍ଦ୍ର, ଆଉ କାହାନ୍ତି ସୂର୍ଯ୍ୟଦେବ ! ହୁଁ—

ମଞ୍ଜୁ । ବିଶ୍ୱାସ କରନ୍ତୁ ମୋତେ ମଣିମା ! ନୋଟେଣ୍ଡ୍ ଜଣେ ନଗଣ୍ୟା ରାଜନର୍ତ୍ତକୀ ଘୁମୁସର ଯୁବରାଜଙ୍କ ସମ୍ମୁଖରେ ମିଥ୍ୟା କହିବାକୁ ଏପରି ଅଦ୍ଭୁତ ସ୍ପର୍ଦ୍ଧା ରଖି ପାରେ ନା । ଜେନାମଣି ଉପେନ୍ଦ୍ରଙ୍କର ସଙ୍ଗୀତରାଜି, ଆଜି ଏହି କୁଲାଡ଼ ଗଡ଼ କାହିଁକି, ସମଗ୍ର ଘୁମୁସର ରାଜ୍ୟରେ ଏକ ମଧୁମୟ ମୂର୍ଚ୍ଛନା ସୃଷ୍ଟି କରି ଦେଇଛି, ଯାହାର ସମ୍ଭାବନା ଆଗେ ଏ ଦେଶରେ ଆଦୌ ନ ଥିଲା । ମୋର ଆଜିକାର ସଙ୍ଗୀତ ସେହି ଦେଶବ୍ୟାପୀ ମୂର୍ଚ୍ଛନାର ସାମାନ୍ୟ କଣିକାଏ ମାତ୍ର, ଯାହା ମୁଁ ଧରି ଶିଖିଛି କେବଳ ଜନତାର ମୁଖରୁ । ମଣିମା । ନର୍ତ୍ତକୀ ମଞ୍ଜରୀକାର ଶକ୍ତି କାହିଁ ଯେ,ସେ ଜେନାମଣିଙ୍କର ପ୍ରତିଭାର ତୀବ୍ର ଦ୍ୟୁତିକୁ ସହ୍ୟ କରି ପାରିବ ? ସେ ଶୌର୍ଯ୍ୟର ସମ୍ମୁଖରେ ପଡ଼ିଲେ, ହୁଏ ତ ଶତ ଶତ ମଞ୍ଜରୀକା ଜଳି ପୋଡ଼ି ଭସ୍ମ ହୋଇଯିବେ ।

ଶୀଲ । (ଗର୍ବରେ ହସି) ଏହା କି ବାସ୍ତବିକ ସତ୍ୟ ? ଉପେନ୍ଦ୍ରର କାବ୍ୟ କବିତା କଣ ଏତେଦୂର ପ୍ରସିଦ୍ଧି ଲାଭ କରିଛି ଏ ଦେଶରେ ?

ମଞ୍ଜୁ । ଥରେ ପରୀକ୍ଷା କଲେ ଜାଣି ପାରିବେ ମଣିମା ଯେ, ଜେନାମଣି-ଙ୍କର ସଙ୍ଗୀତ ଓ କାବ୍ୟ ଆଜି ଘୁମୁସରବାସୀର କେତେ ପ୍ରିୟ ହୋଇ ପାରିଛି । ନିର୍ଜନ ବନପଥରେ ସୁଦ୍ଧା ପରିଶ୍ରମ ଭୁଲିବାକୁ ପ୍ରବାସୀ ପଥିକ ଗାଉଛି ଆଜି ପ୍ରେମସୁଧାବର୍ଦ୍ଧିର ଛାନ୍ଦ । କୁଲାଡ଼ ରାଜଦାଣ୍ଡରେ ଘୁମୁସରର ବାଳକ ଆଜି ଜେନାମଣି ଉପେନ୍ଦ୍ରଙ୍କର ସଙ୍ଗୀତ କୌମୁଦୀର ଗୀତ ଗାଇ ଗାଇ ମନ ଆନନ୍ଦରେ ନୃତ୍ୟ କରି ବୁଲେ । ଘୁମୁସରର ବୃଦ୍ଧ ଆଜି ଜେନାମଣିଙ୍କର ରାଜନାମ୍ୱାରଣ ଛାନ୍ଦ ବୋଲୁଛି, ପ୍ରତି ସନ୍ଧ୍ୟାରେ ଭକ୍ତିଭରା ଚିତ୍ତରେ ।

ଦନ୍ତା । ମଞ୍ଜରୀକାଙ୍କର ଏ କଥା ଗୁଡ଼ାକ କିନ୍ତୁ ନିର୍ଘାତ ସତ୍ୟ, ରାଜ-କୁମାର ! ମୁଁ ତ ନିଜେ ଜେନାମଣିଙ୍କର ଅନେକ ଗୀତ ଜାଣେ । ଆମ ରାଜକୁଣୀ ଚମ୍ପାନାଗୀକୁ ତ ଅନେକ ସମୟରେ ଜେନାମଣିଙ୍କ ରଚିତ ଦୁର୍ଗାସ୍ତୁତି ବୋଲିବାର ମୁଁ ଶୁଣିଛି ।

ଶାଳ । (ଅତି ଆନନ୍ଦରେ) ସତେ ! ଆଶ୍ଚର୍ଯ୍ୟ !! ମୁଁ ଏତେ ଦୂର ଜାଣି ନ ଥିଲି । ବୃଦ୍ଧ ପିତାଙ୍କ ସହିତ, ଅନେକ ସମୟରେ ବସି କାବ୍ୟ କବିତା ଚର୍ଚ୍ଚା କରନ୍ତି ସେ, ଏତିକି ମାତ୍ର ମୋତେ ଜଣା । କିନ୍ତୁ ତତ୍କାଳୀନ ଯେ ସେ ଏ ବୟସରୁ ଏତେ ସୁନାମ ଅର୍ଜ୍ଜନ କରି ପାରିଛନ୍ତି, ଏହା ମୋର ଧାରଣା ନ ଥିଲା । ମନ୍ଦ ନୁହେଁ, ଭବିଷ୍ୟତ ଜୀବିକା ଅର୍ଜ୍ଜନ ଲାଗି ଏ ଏକ ଅଭିନବ ପନ୍ଥା ନିଶ୍ଚୟ ।

ମଞ୍ଜୁ । (ହସି) ଘୁମୁସରର ସିଂହାସନ କଣ ଏତେ ଦରିଦ୍ର ଯେ,ଏଥିରେ ବସି ସୁଦ୍ଧା, ଜେନାମଣିଙ୍କୁ ତାଙ୍କର ଭବିଷ୍ୟତ୍ ଜୀବିକା ଅର୍ଜ୍ଜନ ଲାଗି ଆଜିଠାରୁ ପନ୍ଥା ଖୋଜି ରଖିବାକୁ ହେବ ?

ଶାଳ । ଘୁମୁସର ସିଂହାସନ ! କାହିଁ, କେଉଁଠାରେ ? ସେଥିରେ ଜେନାମଣି ଉପେନ୍ଦ୍ରଙ୍କର ଦାବୀ କାହିଁ ଯେ ସେ ସେଥିରେ ବସିବେ ?

ମଞ୍ଜୁ । ଘୁମୁସର ଯୁବରାଜ ହିସାବରେ ମଣିମାଙ୍କର ସିଂହାସନରେ ଦାବୀ ଥିବା ସ୍ଥଳେ, ମଣିମାଙ୍କ ଅନ୍ତେ, ଜେନାମଣି ତ ସେହି ସିଂହାସନର ଉତ୍ତରାଧିକାରୀ ?

ଶାଳ । କିନ୍ତୁ ଘୁମୁସରର ଯୁବରାଜ ତ ମୁଁ ନୁହେଁ ମଞ୍ଜୀରୀକା; ସୁତରାଂ ଉପେନ୍ଦ୍ରଙ୍କର ଏ ରାଜ୍ୟରେ ସ୍ଥାନ କାହିଁ ?

ମଞ୍ଜୁ । (ହସି) ଯୁବରାଜଙ୍କର ଏ ସନ୍ଦେହକୁ ରାଜନର୍ତ୍ତକୀ ବିଶ୍ୱାସ କରିବ ବୋଲି ଭାବିଛନ୍ତି ମଣିମା ? ମୁଁ ସବୁ ଜାଣେ, ରାଜକୁମାର ଗଙ୍ଗାଧର ହିଁ ଏ ରାଜ୍ୟର ଯୁବରାଜ ଥିଲେ ସତ । କିନ୍ତୁ ରାଣୀମା ମଣ୍ଡା ଦେବୀଙ୍କର ଇଚ୍ଛା ଅନୁସାରେ ମହାରାଜ ବହୁପୂର୍ବରୁ ସିଦ୍ଧାନ୍ତ କରି ସାରିଛନ୍ତି ଯେ,ମଣିମାଙ୍କୁହିଁ ସିଂହାସନ ଦେବେ । କୁଲାଡ଼ ଗଡ଼ର ରାଜନର୍ତ୍ତକୀ ମୁଁ, ଏ ସମ୍ବାଦ ମୁଁ ରଖିଛି ଯୁବରାଜ !

ଶାଳ । ଏ ସମ୍ବାଦର ମଧୁର ସ୍ୱପ୍ନ ଆଉ ତୁମକୁ ଦେଖିବାକୁ ପଡ଼ିବ ନାହିଁ ମଞ୍ଜରିକା ! ଏ ରାଜ୍ୟର ରାଜଗାଦୀରେ ବସିବାର ଦାବୀ ଆଉ ମୋର ନାହିଁ । ଏହା ଅପ୍ରିୟ ହେଲେ ମଧ୍ୟ, କଠୋର ସତ୍ୟ ।

ମଞ୍ଜି । (ସାଶ୍ଚର୍ଯ୍ୟେ) କଣ କହୁଲେ ଯୁବରାଜ ? ମହାରାଜ ତେବେ କଣ ଇତିମଧ୍ୟରେ ତାଙ୍କ ମତ ପରିବର୍ତ୍ତନ କରି ରାଜକୁମାର ଗଙ୍ଗାଧରଙ୍କୁ ରାଜ୍ୟ ଦେବେ ବୋଲି ସ୍ଥିର କରିଛନ୍ତି ?

ନୀଳ । ତାହା ହୋଇଥିଲେ ତ ମୋର ଦୁଃଖ କିଛି ନ ଥିଲା । ରାଜକୁମାର ଗଙ୍ଗାଧର ଘୁମୁସରର ରାଜା ହେଲେ, ମୋର ତ ବରଂ ଆନନ୍ଦ । କାରଣ ନ୍ୟାୟତଃ, ସେ ଏ ରାଜ୍ୟର ଯୁବରାଜ, ସିଂହାସନ ପ୍ରକୃତରେ ତାଙ୍କରି ପ୍ରାପ୍ୟ । କିନ୍ତୁ ବୁଦ୍ଧିଭ୍ରଷ୍ଟ ମହାରାଜ, ଗୋଟାଏ ଭବିଷ୍ୟଦ୍‌ବାଣୀ ଶୁଣି କୁମାର ଘନଭଞ୍ଜଙ୍କୁ ରାଜ୍ୟ ଦେବାର ପ୍ରାୟ ସିଦ୍ଧାନ୍ତ କରି ସାରିଲେଣି । ସୁତରାଂ ମୋର ପ୍ରଶ୍ନ ଏଠି ଆଉ କାହିଁ ? ରାଜକୁମାର ଗଙ୍ଗାଧର ମଧ୍ୟ ଏ ସିଂହାସନ ଚିରଦିନ ଲାଗି ତ୍ୟାଗ କରିବେ ବୋଲି ଶପଥ ଗ୍ରହଣ କରି ସାରିଲେଣି । ସୁତରାଂ ଏ ରାଜ୍ୟର ଭବିଷ୍ୟତ୍ କର୍ଣ୍ଣଧାର ହେଉଛନ୍ତି, ଘନଭଞ୍ଜ ।

ମଞ୍ଜି । ଏହା ହୋଇ ପାରେ ନା । ନା ଯୁବରାଜ, ଏ ଅସମ୍ଭବ । ମହାରାଜାଙ୍କର ଅନୁଗ୍ରହରୁ ଗୋବିନ୍ଦଭଞ୍ଜ ଥାଟରାଜ ହୋଇ ପାରନ୍ତି । କିନ୍ତୁ ତାଙ୍କର ପୁତ୍ର ଘନଭଞ୍ଜଙ୍କର କୌଣସି ଅଧିକାର ନାହିଁ ଏ ସିଂହାସନରେ । ଏହା ଅନ୍ୟାୟ, ଅବିଚାର । ଯୁବରାଜ ! ଏହାର ପ୍ରତିବିଧାନ କରନ୍ତୁ ।

ନୀଳ । (ମଞ୍ଜରୀକାଙ୍କ ପାଖକୁ ଘୁଞ୍ଚି ଆସି) ସତ୍ୟ କୁହ ମଞ୍ଜରୀକା, ଏହା କଣ ତୁମ ଅନ୍ତରର ବାଣୀ ନା କପଟ ତୋଷାମୋଦ ?

ମଞ୍ଜି । ତୋଷାମୋଦ ନୁହେଁ ଯୁବରାଜ ! ରାଜକୁମାର ନୀଳକଣ୍ଠଙ୍କ ବ୍ୟତୀତ ଘୁମୁସର ସିଂହାସନରେ ବସିବାକୁ ଅନ୍ୟ କେହି ଯେ ଅଧିକ ଉପଯୁକ୍ତ, ଏହା ମୁଁ କେବେ କଳ୍ପନା କରି ନାହିଁ, ଆଉ ଧାରଣାବା କରିବି କିପରି ?

ନୀଳ । ତେବେ ବାସ୍ତବିକ କି ତୁମେ ଗମ୍ଭୀର ଭାବରେ ମୋର ପକ୍ଷ ସମର୍ଥନ କରୁଛ ?

ମଞ୍ଜୁ । ମଞ୍ଜରୀକା ତାର ଜୀବନରେ ଏହାଠାରୁ ବଳି ଅଧିକ ଗମ୍ଭୀର ଭାବରେ କେବେ କଥାବାର୍ତ୍ତା କରିବାକୁ ଅଭ୍ୟସ୍ତ ହୋଇ ନାହିଁ ବୋଲି ଜାଣିବେ, ଯୁବରାଜ !

ନୀଳ । ବେଶ୍, ତେବେ ମୋତେ ସାହାଯ୍ୟ କର, ରାଜନର୍ତ୍ତକୀ । ସେହି ସାହାଯ୍ୟ ଭିକ୍ଷା କରିବା ଲାଗି ନୀଳକଣ୍ଠ ଆଜି ତୁମର ଦ୍ୱାରସ୍ଥ । ଭତ୍ରୁକ-ଘନଭଞ୍ଜକୁ ସେ କୌଣସି ଉପାୟରେ କପରି ଏ ରାଜ୍ୟର ସୀମାରୁ ଦୂର କରିବାକୁ ହେବ ।

ମଞ୍ଜୁ । (ଦତ୍ତାକୁ ଲକ୍ଷ୍ୟ କରି) ଯୁବରାଜଙ୍କର ଏହି ସଙ୍ଗୀଟି କି ଏକାନ୍ତ ବିଶ୍ୱସ୍ତ ?

ନୀଳ । କିଏ ? ଦତ୍ତା କଥା କହୁଛ ? ସେ କେବଳ ବିଶ୍ୱସ୍ତ ନୁହେଁ, ମୋର ସୁଖ ଦୁଃଖର ଅବାଧ୍ୟ ସହଚର ।

ମଞ୍ଜୁ । ବେଶ୍, ତେବେ କୁହନ୍ତୁ, ମଣିମାଙ୍କର ମୋଠାରୁ କପରି ସାହାଯ୍ୟ ପ୍ରୟୋଜନ ?

ନୀଳ । ମୁଁ ଜାଣେ ମଞ୍ଜରୀକା ! ରାଜନର୍ତ୍ତକୀ ହିସାବରେ ବୃଦ୍ଧ ମହାରାଜାଙ୍କ ନିକଟରେ ତୁମେ ଅଛ ପ୍ରିୟ । ସୁତରାଂ ସେଠାରେ ଘନଭଞ୍ଜଙ୍କ ଚରିତ୍ର ବିରୁଦ୍ଧରେ ଗୁଡ଼ିଏ ମିଥ୍ୟା ଅଭିଯୋଗ ତୁମେ ସୃଷ୍ଟି କରି ପାରିଲେ, ମହାରାଜାଙ୍କର ମନ ନିଶ୍ଚୟ ବିଷାକ୍ତ ହୋଇ ପଡ଼ିବ । ଆଉ ମୋର ବିଶ୍ୱାସ, ତୁମେହିଁ ମୋର ଏ କାର୍ଯ୍ୟରେ ପ୍ରକୃତ ସହାୟତା କରି ପାରିବ । ମନେ ରଖ, ଘନଭଞ୍ଜ ଏ ରାଜ୍ୟରୁ ଦୂର ହୋଇ ଯିବାର ପରଦିନ, ତୁମର ପୁରସ୍କାର-ସହସ୍ର ସ୍ୱର୍ଣ୍ଣମୁଦ୍ରା ।

ମଞ୍ଜୁ । ନର୍ତ୍ତକୀ ମଞ୍ଜରୀକା ରୌପ୍ୟର ବିନିମୟରେ ତାର ରୂପର କାରବାର କରେ ସତ । କିନ୍ତୁ ଯୁବରାଜଙ୍କଠାରୁ ଏହି ସାମାନ୍ୟ କାର୍ଯ୍ୟ ନିମନ୍ତେ, ସେ ସ୍ୱର୍ଣ୍ଣମୁଦ୍ରା ପାଇବାର ପ୍ରତ୍ୟାଶୀ ରହେନି ନାହିଁ ମଣିମା ! ଘୁମୁସରର ଭାବୀ ମହାରାଜ ନୀଳକଣ୍ଠ ଭଞ୍ଜଙ୍କର ଅନୁଗ୍ରହ ମାତ୍ର ତାର ପ୍ରାପ୍ୟ । ତେଣିକରେ ସେ ଯଥେଷ୍ଟ ସନ୍ତୁଷ୍ଟ ହେବ ।

ନୀଳ । ତୁମର ଆଶା ପୂର୍ଣ୍ଣ ହେବ ମଞ୍ଜରୀକା, ଯଦି ମୋତେ ପୂର୍ଣ୍ଣ-ପ୍ରାଣରେ ସାହାଯ୍ୟ କର, ଧନଭଞ୍ଜର ସର୍ବନାଶହିଁ ମୋର ବର୍ତ୍ତମାନ ଏକମାତ୍ର ଚିନ୍ତା ।

ମଞ୍ଜ । ସେ ଭାର ମୁଁ ଆଜଠାରୁ ଗ୍ରହଣ କଲି ଯୁବରାଜ ! କିନ୍ତୁ ଆପଣଙ୍କର ଏହି ବିଶ୍ୱସ୍ତ ସଙ୍ଗୀଟିକୁ ମୋର ନିତାନ୍ତ ପ୍ରୟୋଜନ । ମୋର ଅଭିଯୋଗର ସପକ୍ଷରେ ତାଙ୍କୁ କେବଳ ଗୋଟିଏ ସାକ୍ଷୀର ଭୂମିକା ଅଭିନୟ କରିବାକୁ ହେବ ।

ନୀଳ । ଦତ୍ତା, ପାରିବୁ ତ ?

ଦତ୍ତା । ନା ଯୁବରାଜ ! ଅଭିନୟ କରିବାର ଛଳନାମୟୀ ଦକ୍ଷତା ମୋର ନାହିଁ । ସହଜ, ସରଳ ଓ ସ୍ପଷ୍ଟ ଭାବରେ କଥା କହିବାକୁ ମାତ୍ର ମୋର ଅଭ୍ୟାସ ଅଛି । ସେତିକି ଯଦି ନର୍ତ୍ତକୀଙ୍କର କୌଣସି ପ୍ରୟୋଜନରେ ଆସିପାରେ, ତେବେ ସେ ମୋର ସଦ୍‌ବ୍ୟବହାର କରି ପାରନ୍ତି ।

ମଞ୍ଜ । ମଣିମାଙ୍କର ସହକାରୀଟି ଅତି ରସିକ ଓ ବିବେକୀ ପୁରୁଷ ବୋଲି ବୋଧ ହେଉଛନ୍ତି ।

ଦତ୍ତା । ତୁମର ମନ୍ତବ୍ୟ ଗୁଡ଼ାକ, ଏକଦମ୍ ଭୁଲ ରାଜନର୍ତ୍ତକି ! ମୋର ଏ କମ୍ବୁତ କିମାକାର ବପୁ ମଧ୍ୟରେ ନବରସ ମଧ୍ୟରୁ କୌଣସି ଗୋଟିଏ ସୁଦ୍ଧା ରସର ଉଦ୍ରେକ ଆଜ ପର୍ଯ୍ୟନ୍ତ ହୋଇ ନାହିଁ । ସୁତରାଂ ରସିକ ହେବାଟା ମୋ ପକ୍ଷରେ ବିଡ଼ମ୍ବନା । ତା'ପର ବିବେକ । ଗୋଟାଏ ଗୃହୁଙ୍କ ଗୃହଜ ବୋବା ବଳୀବର୍ଦ୍ଧର ବିବେକ ଅପେକ୍ଷା, ଅଧିକ କିଛି ବିବେକ ଯେ ମୋର ଅଛି, ଏହା ତ ମୁଁ ଜାଣେନା । କେବଳ—ଯଥା ନିଯୁକ୍ତୋସି ତଥା କରୋମି । (ନୀଳକଣ୍ଠ ହସିଲେ ।)

ମଞ୍ଜ । (ହସି) ତେତିକହିଁ ମୋର ଏକାନ୍ତ ପ୍ରୟୋଜନ । ମୁଁ ଯେତିକି ଶିଖାଇବି, ତେତିକି କେବଳ ତୁମର ସହଜ, ସରଳ, ସ୍ପଷ୍ଟ ଭାଷାରେ କହି ପାରିଲେ, ଯଥେଷ୍ଟ । ତେଣିକି, ଧନଭଞ୍ଜଙ୍କ ଗଳାରେ ଅର୍ଦ୍ଧଚନ୍ଦ୍ର ଦେବାର ଭାର ମୋ ଉପରେ ।

ଦନ୍ତୀ । ବେଶ୍ ! ଏଣିକି ତାଁ ହେଲେ, ରାଜକୁମାର ଟିକିଏ ଶାନ୍ତିରେ ନିଶ୍ୱାସ ମାରି ପାରିବେ । ଆଉ ବିଗୃହ ବପୁବନ୍ତ ଦନ୍ତୀ ମଧ୍ୟ ଉପାୟ ଚିନ୍ତାରୁ ତ୍ରାହି ପାଇବ ।

ନୀଳ । ଆଉ ଦୁଇ ଦିନ ପରେ, ରାଜସଭାର ପ୍ରକାଶ୍ୟ ଅଧିବେଶନ ବସିବ, ଏ କଥା ମନେ ରୁହେ ଯେପରି ।

ମଞ୍ଜୁ । ରାଜନର୍ତ୍ତକୀ ଏ ଘୋଷଣାର ସମ୍ବାଦ ଅବଗତ ଅଛି ଯୁବରାଜ ! ନିଶ୍ଚିନ୍ତ ରୁହନ୍ତୁ । ମଞ୍ଜରୀକା ଉପଯୁକ୍ତ ସମୟରେ, ତାର ମାୟାଜାଲ ବିସ୍ତାର କରି ଜାଣେ । ଚାଲନ୍ତୁ ! (ହାତ ଦେଖାଇ ଦେଖାଇ ନୀଳକଣ୍ଠଙ୍କୁ ଭିତରକୁ ଅଭ୍ୟର୍ଥନା କରି ନେଉଥିବା ବେଳେ) ଏ ସମ୍ପର୍କରେ ମଣିମାଙ୍କ ସହିତ ନିଭୃତରେ ମୋର ଆଉ କିଛି ଗୁପ୍ତ ପରାମର୍ଶ କରିବାର ଅଛି । ମୋର ଯେତେଦୂର ମନେହୁଏ, ରାଜମାତା ମଣ୍ଡା ଦେବୀଙ୍କର ସାହାଯ୍ୟ ମଧ୍ୟ ଏଥି ଲାଗି ପ୍ରୟୋଜନ ପଡ଼ିବ । (ମଞ୍ଜରୀକା ଓ ନୀଳକଣ୍ଠଙ୍କର ପ୍ରସ୍ଥାନ ।)

ଦନ୍ତୀ । ବାଃ, ଏ ଯେ ଏକ ଅଭିନବ ପର୍ବର ସୂଚନା । ତେବେ, ମୋ ଭଳି ଗୋଟିଏ ମୂର୍ଖ ଛାଗଶିଶୁର ଗତି ବର୍ତ୍ତମାନ କୁଆଡ଼େ ? (ଇତସ୍ତତ ହେଉଥିବା ସମୟରେ ମଞ୍ଜରୀକା ପୁଣି ଆସି, ଦନ୍ତୀକୁ ତାହା ସହିତ ଆସିବାକୁ ଇଙ୍ଗିତ ଦେବାରୁ, ଦନ୍ତୀ ମଞ୍ଜରୀକାର ଅନୁସରଣ କଲା । )

---

## ଚତୁର୍ଥ ଦୃଶ୍ୟ

[ କବି ଉପେନ୍ଦ୍ରଙ୍କର ଦ୍ୱିତଳସ୍ଥିତ ଶୟନ କକ୍ଷ । କକ୍ଷଟିର ସମ୍ମୁଖସ୍ଥିତ ଦେଓ୍ୱାଲର ମଧ୍ୟଭାଗରେ ବାହାରକୁ ଯିବା ଲାଗି ପ୍ରକାଣ୍ଡ ଦ୍ୱାରଦେଶଟି ଉନ୍ମୁକ୍ତ । ସେହି ଦ୍ୱାରଦେଶର ଦୁଇ ପାଖରେ ଦୁଇଟି ବାତାୟନ । ସେହି ବାତାୟନ ମଧ୍ୟଦେଇ, ଦୂରସ୍ଥିତ ବୃହତ୍ ରାଜପଥର କିୟଦଂଶ ଦେଖା ଯାଉଥାଏ । ଦ୍ୱାରଦେଶକୁ ଲାଗି, କ୍ଷୁଦ୍ର ବାରନ୍ଦାଟିଏ । ଦ୍ୱିତଳ ପ୍ରାସାଦର ବାରନ୍ଦା ଯୋଗୁଁ, ସେହି ବାରନ୍ଦାର ଧାରେ ଧାରେ, କାରୁକାର୍ଯ୍ୟ ବିମଣ୍ଡିତ ଅର୍ଦ୍ଧ ପ୍ରାଚୀର । ବୋଧହୁଏ, ସେହି ପ୍ରାଚୀର ନିକଟରେ, ବାରନ୍ଦାରେ ଠିଆ ହୋଇ, କବିପତ୍ନୀ ନଗରୀର ଦୃଶ୍ୟ ଉପଭୋଗ କରନ୍ତି । କକ୍ଷର ବାମପାର୍ଶ୍ୱସ୍ଥ ଦେଓ୍ୱାଲକୁ ଲାଗି ସୁସଜ୍ଜିତ ପଲଙ୍କ ଓ ସେହି ପଲଙ୍କ ଉପରେ ବସି, କବିପତ୍ନୀ ବାଣପୁର ରାଜକୁମାରୀ ମାଳବିକା, ନିବିଷ୍ଟ ମନରେ ଗୋଟିଏ ତାଳପତ୍ର ପୋଥି ଗୁଣୁ ଗୁଣୁ ସ୍ୱରରେ ପଢୁଥିଲେ । କକ୍ଷର ଦକ୍ଷିଣ ପାର୍ଶ୍ୱସ୍ଥ ଦେଓ୍ୱାଲରେ ଦେବୀ ବୀଣାପାଣିଙ୍କର ଗୋଟିଏ ରଙ୍ଗିନ ଚିତ୍ରପଟ ପୁଷ୍ପଭୂଷିତ ହୋଇ ରହିଛି । ରାଜବାଟୀର ଭିତରକୁ ଯିବା ଲାଗି, ସେହି ଦକ୍ଷିଣ ପାର୍ଶ୍ୱସ୍ଥ ଦେଓ୍ୱାଲରେ ଆଉ ଗୋଟିଏ ଦ୍ୱାର । କକ୍ଷର ମଧ୍ୟସ୍ଥଳରେ ସୂଚୀଶିଳ୍ପଶୋଭିତ ମୂଲ୍ୟବାନ ଆସନ କେତୋଟି ଇତସ୍ତତ ବିକ୍ଷିପ୍ତ ହୋଇ ପଡ଼ିଛି । ଆଉ ପଲଙ୍କ ନିକଟରେ ଗୋଟିଏ ଛୋଟ ମାର୍ବଲ ପ୍ରସ୍ତର ଆଧାର ଉପରେ କୁଡ଼ିଏ ତାଳପତ୍ର ପୋଥି ସଯତ୍ନରେ ରଖା ହୋଇଛି । ସମୟ ସାୟାହ୍ନ । ମାଳବିକା ପୋଥି ପଢ଼ାରେ ଗଭୀର ଭାବରେ ନିମଜ୍ଜିତା । କିଛି ସମୟ ଗଲା ପରେ, ଧୀରେ ଧୀରେ ଦକ୍ଷିଣ ଦ୍ୱାର ଦେଇ ଉପେନ୍ଦ୍ର ପ୍ରବେଶ କଲେ । ]

ଉପେନ୍ଦ୍ର । (ନିକଟକୁ ଯାଇ) ମାଳବିକା ! ଏତେ ତନ୍ମୟ ହୋଇ କି ପୋଥି ପଢ଼ୁଛ ?

ମାଳବିକା । ଆପଣଙ୍କର "ପ୍ରେମସୁଧାନିଧି" କାବ୍ୟ, ପ୍ରିୟତମ ! କି ସୁନ୍ଦର ରଚନା ଶୈଳୀ । ଦେଖୁଛି, କାବ୍ୟର ଛନ୍ଦେ ଛନ୍ଦେ ବେଦନାର କରୁଣ ରାଗିଣୀଟା ଅତି ଅଧିକ ମାତ୍ରାରେ ବାଜି ଉଠିଛି । ମୋର ମନେ ହୁଏ, କେବଳ ଏହି କବିତ୍ୱ, ଏହି କାବ୍ୟ ଏକ ଅମର ସୃଷ୍ଟି ।

ଉପେନ୍ଦ୍ର । ବିଦୁଷୀ ତୁମେ । ଉପେନ୍ଦ୍ରର ମର୍ମବାଣୀକୁ ତୁମେ ଠିକ୍ ଧରି ପାରିଛ । ଜାଣ ମାଳବିକା, ଏ କାବ୍ୟ ମୋର ତରୁଣ ଜୀବନର ଏକ ଦୁଃଖମୟ ଇତିହାସ । ଲକ୍ଷ୍ମୀପ୍ରିୟାଙ୍କର ଅପାର୍ଥିବ ସ୍ମୃତିକୁ ବଞ୍ଚାଇ ରଖିବା ଲାଗି, ଏହି କାବ୍ୟଟି ମୋର ଗୋଟାଏ ଘନୀଭୂତ ସମାଧି । କଳ୍ପନାର ସଞ୍ଜୀବନୀ ଦେଇ ଏହାର ପ୍ରାଣପ୍ରତିଷ୍ଠା କରିଛି ମାତ୍ର ।

ମାଳବିକା । ଦେବତା ମୋର ! କବି ଆପଣ, ଆପଣଙ୍କର ଅନ୍ତର୍ନିହିତ ବ୍ୟଥା ଆପଣଙ୍କର ମୁଖମଣ୍ଡଳରେ ସ୍ପଷ୍ଟରୂପେ ପ୍ରତିଫଳିତ । ଆଦେଶ କରନ୍ତୁ ପ୍ରିୟତମ ! କଣ କଲେ ମାଳବିକା ତାର ପ୍ରିୟତମଙ୍କର ହୃଦୟର ପୂର୍ବ ପ୍ରଫୁଲ୍ଲତା ପୁଣି ଫେରାଇ ଆଣି ପାରିବ । ମୋର ଭୟ ହୁଏ, ବୋଧହୁଏ ମୋର ପ୍ରେମ ପୂଜାରେ କେଉଁଠାରେ କିଛି ତ୍ରୁଟି ରହିଯାଇଛି, ଯାହା ଯୋଗୁଁ ଆପଣ ଏତେ ବିଚଳିତ ।

ଉପେନ୍ଦ୍ର । (ହସି, ମାଳବିକାଙ୍କ ପାଖରେ ପଲଙ୍କ ଉପରେ ବସି) ମାଳବିକା, ପ୍ରିୟତମେ ! ତୁମର ଆଶଙ୍କା ଅମୂଳକ, ତୁମେ ମୋର ମାନସୀ । ତୁମର ପ୍ରେମ ଲାଭ କରି ଆଜି ଉପେନ୍ଦ୍ର ଲାବଣ୍ୟବତୀ ପରି କାବ୍ୟ ସୃଷ୍ଟି କରି ପାରିଛି । ମୋର ଧାରଣା, ବୋଧହୁଏ ମୁଁ ତୁମର ଉପଯୁକ୍ତ ମର୍ଯ୍ୟାଦା ଦେଇ ପାରୁନାହିଁ । ଯେବେ ରଜନୀର ତୃତୀୟ ପ୍ରହରରେ ବିନେ ବିନେ ଚନ୍ଦ୍ରକର-ସ୍ନାତ ତୁମର ସୁନ୍ଦର ମୁଖମଣ୍ଡଳକୁ ଚାହିଁ, ମୋର କଣ ମନେ ହୁଏ, ଜାଣ ମାଳବିକା ? ମୁଁ ଭାବେ ଯେ ଦେବତା-ବାଞ୍ଛିତ ଏ ସୌନ୍ଦର୍ଯ୍ୟକୁ ଚନ୍ଦନ ଲାଗି ଧରି ରଖିବାକୁ ବୋଧହୁଏ ଯଥେଷ୍ଟ ଶକ୍ତି ମୋର ନାହିଁ । କାରଣ, କବି ଜାତିଟା ଦୁନିଆଁରେ ଚିରଦିନ ହତଭାଗ୍ୟ ।

ଆଜି, କସ୍ତୁରିକାଙ୍କର ମୃତ୍ୟୁହିଁ ତାର ପ୍ରକୃଷ୍ଟ ପ୍ରମାଣ । ତଥାପି, ବିଶ୍ୱାସ କର ମୋତେ, ଅଜିର ମାଳବିକା ହିଁ କବି ଉପେନ୍ଦ୍ରର ଏକମାତ୍ର ଅବଲମ୍ବନ । ଆଜି ଏହା ସମ୍ଭବ ହୋଇ ପାରିଛି, କେବଳ ତୁମର ଅକୃତ୍ରିମ ପ୍ରଣୟ ଫଳରୁ ।

ମାଳବିକା । ଏହା ଆପଣଙ୍କର ଅଯଥା ପ୍ରଶଂସା ପ୍ରିୟତମ ! ମାଳବିକା ଯେ ଆପଣଙ୍କର କ୍ରୀତ ଦାସୀ ।

ଉପେନ୍ଦ୍ର । କିଏ କୁହେ, ତୁମେ ଦାସୀ ? ତୁମେ ଯେ ମୋର କଳ୍ପନାର ଦେବୀ, ରହସ୍ୟମୟୀ । ମୋର ବିଶ୍ୱାସ, ଦୁନିଆର ବାସ୍ତବତାଠାରୁ ତୁମର ସ୍ଥାନ ଢେର ଉଚ୍ଚରେ । ମଝେ ମଝେ ମୁଁ କଣ ଗୋଟାଏ ସ୍ୱପ୍ନ ଦେଖେଁ, ଜାଣ ମାଳବିକା ? ଏଇ ବିରାଟ ଆକାଶଟା ଗୋଟାଏ ବିଚିତ୍ର ରଙ୍ଗମଞ୍ଚ । ତାହାରି ଉପରେ ରହି, ସୃଷ୍ଟିର ଅନାଦିକାଳରୁ ଏଇ ଉଜ୍ଜ୍ୱଳ ଜ୍ୟୋତିଷ୍କପୁଞ୍ଜ ଗୋଟାଏ ଗୋଟାଏ ପବିତ୍ର ଚରିତ୍ରର ଭୂମିକା ଅଭିନୟ କରି ଯାଉଛନ୍ତି । ଅନାବିଳ କୌମୁଦୀ ପ୍ଲାବନର ଗୋଟାଏ ଶାଶ୍ୱତ ସଙ୍ଗୀତଧାରା ମଧ୍ୟରେ, ମହାନାଟକର ନାୟିକାରୂପେ ଠିଆ ହୋଇ ରହିଛ, ତୁମେ, ମୋର ମାନସୀ । ହୁଏତ, ତୁମକୁ ସ୍ପର୍ଶକରି ପାରିବାର ସ୍ପର୍ଦ୍ଧା ମୋର ନାହିଁ । କେବଳ କବି ଉପେନ୍ଦ୍ର, ଏଇ ଦୂର ଜଗତର ପ୍ରେକ୍ଷାଳୟରେ ବସି, ମାତ୍ର ଦର୍ଶକ ଭାବରେ ନିର୍ନିମେଷ ନୟନରେ ଦେଖି ଯାଉଛି, ତୁମର ସେଇ ଅପାର୍ଥିବ ପ୍ରେମର ଅଭିନୟ ।

ମାଳବିକା । (ହସି) ଭୁଲ ହେଲା ପ୍ରିୟତମ ! ନାୟକର ଅଭାବ ଯେ ନାଟକରେ ରହିଗଲା । ମୋର ବିଶ୍ୱାସ, ସେ ନାଟକର ନାୟକ—ମୋର ଦେବତା, ଘୁମୁସରର ମୁକୁଟହୀନ କବି ସମ୍ରାଟ । ସେ ପ୍ରେକ୍ଷାଳୟର ଦର୍ଶକ ନୁହନ୍ତି ।

ଉପେନ୍ଦ୍ର । ପ୍ରକୃତରେ ମାଳବିକା, ତୁମ ଭଳି ଜଣେ ମହୀୟସୀ ସଙ୍ଗିନୀ ପାଇ, ମୋର ଜୀବନ ଧନ୍ୟ ହୋଇଛି । ଲାବଣ୍ୟବତୀ କାବ୍ୟ ରଚନା କରିବାବେଳେ, ମୋର ମନେ ହେଉଥାଏ ଯେପରି ତୁମରି ସ୍ପର୍ଶ ମୁଁ ସର୍ବଦା ପ୍ରତି ମୁହୂର୍ତ୍ତରେ ଲାଭ କରି ପାରୁଛି । ଏତିକି ଅନୁଭୂତି ମୋର କବି ଜୀବନରେ ଏକ ଅବିଚ୍ଛିନ୍ନ ବସ୍ତୁ ନୁହେଁ, ପ୍ରିୟତମେ !

ମାଳବିକା । କିନ୍ତୁ କାହିଁ, ଲାବଣ୍ୟବତୀ ପୋଥିଟିକୁ ତ ମୁଁ ଏଠାରେ ଦେଖି ପାରୁନାହିଁ ? ଥରେ ପଢ଼ି ସୁଦ୍ଧା ଯେ ମୋର ତୃପ୍ତି ଅସି ନାହିଁ । ତେଣୁ ପୁଣି ଥରେ ପଢ଼ିବାକୁ ମୋର ଏକାନ୍ତ ଇଚ୍ଛା । ପୋଥିଟି କାହିଁ ?

ଉପେନ୍ଦ୍ର । ସେ କାବ୍ୟ ମୁଁ ପିତାମହଙ୍କୁ ଦେଇଛି । ମୋର କବି ଜୀବନରେ ପ୍ରେରଣାର କେନ୍ଦ୍ର ସେ । ସୁତରାଂ ମୋର ସମସ୍ତ କାବ୍ୟକୁ, ରଚନା ପରିସମାପ୍ତି ପରେ, ମୁଁ ପିତାମହଙ୍କ ଚରଣରେ ସମର୍ପଣ କରି ଦେଇ ଆସେ, ତାଙ୍କର ଆଶୀର୍ବାଦର ସଫଳତା ଭିକ୍ଷା କରି । ଆଚ୍ଛା, ମାଳବିକା, ତୁମେ ତ ମୋର ଲାବଣ୍ୟବତୀ ପଢ଼ି ସାରିଛ । କିପରି ଲାଗିଲା ? ଅବଶ୍ୟ ମୁଁ ତୁମର ନିରପେକ୍ଷ ମତ ଚାହେଁ ।

ମାଳବିକା । ପ୍ରିୟତମ ! ଆପଣଙ୍କର କାବ୍ୟ ପ୍ରତିଭାକୁ ସମାଲୋଚନା କରିବାର ପାଣ୍ଡିତ୍ୟ, ଦୀନା ମାଳବିକାର ନାହିଁ । ତେବେ, କାବ୍ୟଟିର ପ୍ରତି ଛନ୍ଦ ମଧ୍ୟରେ ଭାଷା ଶିଳ୍ପର ଯେଉଁ ଅପୂର୍ବ ପରିକାଷ୍ଠା ଆପଣ ଦେଖାଇ ଛନ୍ତି, ତାହା ଦେଖି ମୁଁ କେବଳ ମୁଗ୍ଧୀଭୂତ ହୋଇ ଯାଇଛି । ଏହି ତ, ଆପଣଙ୍କର କବିତ୍ୱର ଆରମ୍ଭ ମାତ୍ର । କିଏ ଜାଣେ, ଏହାର ଶେଷ କେଉଁଠାରେ !

ଉପେନ୍ଦ୍ର । ଏ ତ କେବଳ କତିଜା ପ୍ରଶଂସାର ଗାଥା । ତୁମ ଭଳି ବିଦୁଷୀଠାରୁ ମୁଁ ଆଶା କରେଁ ଯେ ମୋର କାବ୍ୟର ତ୍ରୁଟି ମଧ୍ୟ ତୁମେ ଧରାଇ ଦେଇ ପାରିବ ।

ମାଳବିକା । ମୁଁ ତ କହୁଛି ପ୍ରିୟତମ । ଆପଣଙ୍କର ପ୍ରତିଭା ଗଗନସ୍ପର୍ଶୀ । ତାକୁ ହାତମୁଠାରେ ଧରି ରଖିବାର ସ୍ପର୍ଦ୍ଧା ମୋର ନାହିଁ । ତେବେ, ଲାବଣ୍ୟବତୀ କାବ୍ୟର ଏକ ବିଶେଷତ୍ୱ ମୁଁ ଦେଖି ପାରୁଛି ଯେ, ଶୃଙ୍ଗାର ରସର ପ୍ରଭାବ କାବ୍ୟଟିର ସମସ୍ତ ପ୍ରାଣକୁ ଯେପରି ଉଦ୍‌ବେଳିତ କରି ରଖିଛି । ଅବଶ୍ୟ ମୁଁ ଜାଣେନା, ପ୍ରେମିକ କବିଙ୍କର କି ଉଦ୍ଦେଶ୍ୟ ଏଥିରେ ଅଛି ।

ଉପେନ୍ଦ୍ର । ଠିକ୍ କହୁଛ, ମାଳବିକା ! ଲାବଣ୍ୟବତୀ କାବ୍ୟଟି ଶୃଙ୍ଗାର-ରସ-ପ୍ରଧାନ । ତୁମେ ଜାଣ, ପ୍ରସିଦ୍ଧ ଅଳଙ୍କାରିକମାନଙ୍କ ମତରେ, ଶୃଙ୍ଗାର ରସକୁ ପ୍ରକୃଷ୍ଟରୂପେ ପରିବେଷଣ କରିପାରିବାର ଶକ୍ତି ଯାହା ଥାଏ, ସେହି କେବଳ ଶ୍ରେଷ୍ଠ କବି ପଦବାଚ୍ୟ । ଏହି ମତର ପୋଷକତା କରିବାକୁ ଯାଇ, ମହର୍ଷି ବାତ୍ସ୍ୟାୟନଙ୍କର କାମ ଶାସ୍ତ୍ରର ପ୍ରତ୍ୟେକ ଜଟିଳ ଓ ଗମ୍ଭୀର ସୂତ୍ରକୁ, ସାଧାରଣ ଲୋକର ବୋଧଗମ୍ୟ ହେବାଭଳି, ଲାବଣ୍ୟ-ବତୀର ପ୍ରତି ଛାନ୍ଦରେ ଗୋଟି ଗୋଟି କରି ବିଶ୍ଳେଷଣ କରି ଦେଖାଇ ଦେଇଛି ମାତ୍ର । ଏହି ଏତିକିହିଁ ମୋର ଉଦ୍ଦେଶ୍ୟ, ମାଳବିକା ! ସୁତରାଂ ଲାବଣ୍ୟବତୀ ପଢ଼ିସାରି ମନେ କରିବ ନାହିଁ ଯେ, ତୁମର କବି ଉପେନ୍ଦ୍ର ଜଣେ ଲମ୍ପଟ ।

ମାଳବିକା । ମାଳବିକା ତା'ର ଜୀବନ ଦେବତାଙ୍କୁ ଯେତିକି ଜାଣେ, ସେଥିରେ ସେ ସମ୍ପୂର୍ଣ୍ଣ ନିଶ୍ଚିନ୍ତ ଯେ,ଜଣେ ଲମ୍ପଟୀର ଲେଖଣୀରୁ ଲାବଣ୍ୟବତୀ ପରି ରସମୟୀ କାବ୍ୟକଳାର ଜନ୍ମ ହୋଇପାରେ ନା । ଗୋଟାଏ କଳୁଷପୂର୍ଣ୍ଣ ହୃଦୟରୁ, ପ୍ରେମର ଉଚ୍ଛ୍ୱାସମୟୀ ମନ୍ଦାକିନୀ, ଏପରି ସ୍ୱଚ୍ଛ ଭାବରେ, ଲୋକଚକ୍ଷୁର ସମକ୍ଷରେ ବହିଯାଇ ପାରେ ନା । ସୁତରାଂ, ଲାବଣ୍ୟବତୀ ପରି ପ୍ରେମର କାବ୍ୟ ପଢ଼ିବାକୁ, ଯେଉଁମାନେ ଆପଣଙ୍କୁ ଲମ୍ପଟୀ ଆଖ୍ୟା ଦେଇ ପାରନ୍ତି, ସେମାନେ ସେ କେବଳ ସାହିତ୍ୟର ଶତ୍ରୁ ତାହା ନୁହେଁ, ସେମାନେ ଏ ଜାତିର ଶତ୍ରୁ, ଏ ଦେଶର ଶତ୍ରୁ ।

ଉପେନ୍ଦ୍ର । ବାସ୍ତବିକ ମାଳବିକା, ଦେବୀ ବାଗ୍‌ଦେବୀଙ୍କର ଅପାର ଅନୁଗ୍ରହରୁ, ବେଳେବେଳେ ମୋର ଲେଖନୀରୁ ଏପରି ଗୋଟାଏ ଗୋଟାଏ ଅପୂର୍ବ କାବ୍ୟ ସୃଷ୍ଟି ହୋଇ ଯାଉଛି ଯେ, ମୁଁ ନିଜେ ବିଶ୍ୱାସ କରି ପାରେ ନା, କି ଭାବରେ ବିଭୋର ହୋଇ, ମୁଁ ସେହି କାବ୍ୟସ୍ରୋତରେ ନିଜକୁ ଭସାଇ ଦେଇଥିଲି । କସ୍ତୁରିକା ଆଉ ମାଳବିକା, ମୋ ଜୀବନର ଦୁଇଟି ଧ୍ରୁବତାରା ମାତ୍ର । ଏମାନଙ୍କ ବିନା ବ୍ୟତୀତ, ପାପର ପଙ୍କିଳ ପଥରେ ଉପେନ୍ଦ୍ରର ପାଦ ଏ ପର୍ଯ୍ୟନ୍ତ କର୍ଦ୍ଦମାକ୍ତ ହୋଇ ନାହିଁ । ତଥାପି ମୁଁ ବୁଝି ପାରେ ନା, ତୁମ ଦୁଇ ଜଣଙ୍କର ପ୍ରଭାବ, ମୋର ଜୀବନକୁ, ମୋର କାବ୍ୟ ସୃଷ୍ଟିକୁ କିପରି ଏତେଦୂର ରସମୟ କରି ପକାଇଛି ।

ମାଳବିକା । ପ୍ରିୟତମ ! ଆପଣ କବି, ରସିକ, ପ୍ରେମିକ । ଆପଣଙ୍କର ପ୍ରତିଭାର ଖ୍ୟାତି ଆଜି ସମଗ୍ର ଭୂମଣ୍ଡଳରେ ପରିବ୍ୟାପ୍ତ । ମୋତେ କ୍ଷମା କରିବେ, ଆପଣଙ୍କର ସେବାଦାସୀ ଆଜି ଆପଣଙ୍କ ଗୋଟାଏ ସାମାନ୍ୟ ପରୀକ୍ଷା କରିବ । ମାଳବିକା ଆଜି ସ୍ୱଚକ୍ଷୁରେ ଦେଖିବାକୁ ଚାହେଁ, ତାର ଦେବତାଙ୍କର ପ୍ରତିଭାର ପରିସର କେତେ ।

ଉପେନ୍ଦ୍ର । ସ୍ୱଚ୍ଛନ୍ଦରେ ପରୀକ୍ଷା କରିପାର ।

ମାଳବିକା । ତେବେ ଆସନ୍ତୁ, ଟିକିଏ କକ୍ଷର ବାହାରକୁ ଯିବା । (ଉପେନ୍ଦ୍ରଙ୍କୁ ଘେନି ଗଲେ, ସେହି କକ୍ଷର ସମ୍ମୁଖବର୍ତ୍ତୀ ବାରଣ୍ଡାକୁ । ପ୍ରାଚୀରକୁ ଭରା ଦେଇ ଠିଆ ହୋଇ, ଉଭୟେ ନିମ୍ନସ୍ଥିତ ବୃନ୍ଦାବ ରାଜ-ପଥର ଦୃଶ୍ୟ ଉପଭୋଗ କଲେ ।) ଦେଖନ୍ତୁ ପ୍ରିୟତମ ! ରାଜପଥର ଜନ-କୋଳାହଳର ଦୃଶ୍ୟ କି ସୁନ୍ଦର !

ଉପେନ୍ଦ୍ର । (ହସି) ତୁମେ ପରା ମୋତେ କଣ ପରୀକ୍ଷା କରୁଥିଲ ?

ମାଳବିକା । ଦାସୀର ଧୃଷ୍ଟତା ମାର୍ଜ୍ଜନା କରନ୍ତୁ । ଦେଖନ୍ତୁ, ସେହି ରାଜପଥର ପ୍ରାନ୍ତସ୍ଥିତ ବିଶାଳ ପୁଷ୍କରିଣୀ । ଆଉ ଦେଖନ୍ତୁ, ସେହି ଷୋଡ଼ଶୀ ଯୁବତୀଟି, କିପରି ଧୀରମନ୍ଥର ଗତିରେ ଜଳପୂର୍ଣ୍ଣ କଳସୀଟିଏ ନିଜର କାଖରେ ଘେନି ରାଜପଥ ଆଡ଼କୁ ଚାଲି ଆସୁଛି ।

ଉପେନ୍ଦ୍ର । ହଁ ଦେଖିଲି, ତାର ପର ?

ମାଳବିକା । ରସିକ କବି ଆପଣ, ଏହି ଷୋଡ଼ଶୀକୁ ଲକ୍ଷ୍ୟ କରି ଗୋଟିଏ ରସପୂର୍ଣ୍ଣ କବିତା ମୁଁ ଆପଣଙ୍କଠାରୁ ବର୍ତ୍ତମାନ ଭିକ୍ଷା କରୁଛି । ଦାସୀର ଆଶା ପୂର୍ଣ୍ଣ କରନ୍ତୁ, କବି !

ଉପେନ୍ଦ୍ର । (ହସି) ଏହି ପରୀକ୍ଷା ? ଅଚ୍ଛା, ଧର ଲେଖନୀ ତାଳପତ୍ର । ମୁଁ ସ୍ୱର ସଂଯୋଗ କରି ତୁମର ସେ କବିତା ଧୀରେ ଧୀରେ ରଚନା କରି ଯାଉଛି । ତୁମର ମନୋବାଞ୍ଛା ପୂର୍ଣ୍ଣ ହେଉ, ଆଉ ମୋର ପରୀକ୍ଷା ସଫଳ ହେଉ । ଜୟ ମା ବାଗ୍‌ଦେବି ! (ଉପେନ୍ଦ୍ର ଗାଇ ଚାଲିଲେ ଅନର୍ଗଳ କଣ୍ଠରେ ଓ ମାଳବିକା ଲେଖନୀରେ ତାଳପତ୍ର ଉପରେ ଲେଖି ବସିଲେ ।)

ରଖିଲ୍ଲ ମାନ ବମ୍ବାଧରୀ ଧରରେ ।
ରମଣୀ ସେ ତାହାର,　　　ନୁଆ ହୋଇ ବାହାର
ଗଡ ମନ୍ଦରେ ନନ୍ଦା କରି କସରେ ।୧।
ରସାଣିଲ୍ଲ ହାଟକ　　　ପରି କାନ୍ତ ଝଟକ
ଛବିକ ନକ ଅପସରୀ ସରରେ ।୨।
ରଦବାସେ ପ୍ରକାଶ　　　ଝଟକ ମୃଦୁହାସ
ପଳକେ ତାକୁ ଅନୁସରି ସରରେ ।୩।
ରଙ୍ଗ ନେଇ କହିତ　　　ତାକୁ କ ପ୍ରାଣକାନ୍ତ
ଦେଲ୍ଲ ମରମେ ସୁକୁମାରୀ ମାରରେ ।୪।

ମାଳବିକା । (ହଠାତ୍ ଲେଖନୀ ବନ୍ଦ କରି) କ୍ଷାନ୍ତ ହୁଅନ୍ତୁ କବି । ମୋର ପରୀକ୍ଷା ଶେଷ ହୋଇଛି । ଏ ଅସରନ୍ତ ରସ କବିତାର ଉତ୍ସକୁ ଲେଖନୀ ମୂନରେ ବାନ୍ଧି ରଖିବାକୁ ମାଳବିକାର ଯେ ଶକ୍ତି ନାହିଁ । ମୁଁ ଦେଖୁଛି ପ୍ରିୟତମ ! ଏହି ଉଚ୍ଛ୍ୱସିତ ସଙ୍ଗୀତ ଧାରା, ଯେପରି ଅନର୍ଗଳ ଭାବରେ ବହି ଚାଲିଛି, ଏହା ବୋଧହୁଏ ପୁଣି ଏକ ଅଭିନବ କାବ୍ୟର କଳେବର ଧାରଣ କରିବାର ପୂର୍ବ ଲକ୍ଷଣ ।

ଉପେନ୍ଦ୍ର । (ବିରକ୍ତ ହୋଇ) କିନ୍ତୁ ମୋର ରସ କଳ୍ପନାର ଗତି-ଧାରାକୁ ହଠାତ୍ ଅଦ୍ଧ ପଥରେ ଏପରି ପ୍ରତିରୋଧ କରି ଦେବାଟା, ଅନ୍ତତଃ ତୁମପରି ଜଣେ ବିଦୁଷୀଠାରୁ ମୁଁ ଆଶା କରି ନ ଥିଲି ।

ମାଳବିକା । ମୋର ଅପରାଧ ମାର୍ଜନା କରନ୍ତୁ ପ୍ରିୟତମ ! ମୋର ଉଦ୍ଦେଶ୍ୟ ସ୍ୱତନ୍ତ୍ର । ଏହି ରସକବିତାଟିର ଝଙ୍କାରକୁ, ଏ ଦେଶର ସାହିତ୍ୟରେ ଚିରଦିନ ଲାଗି ସାଇତି ରଖିବାକୁ କଳ୍ପନା ମୋର । ଅଥଚ ଆପଣଙ୍କର ରଚନା କ୍ଷିପ୍ରତାକୁ ଅନୁସରଣ କରି ଏହି ତାଳପତ୍ର ପୋଥି ଉପରେ, କବିତାଟିକୁ ସଙ୍ଗେ ସଙ୍ଗେ ଜୀବନ୍ତ କରି ରଖିବାକୁ, ମାଳବିକାର ସାମର୍ଥ୍ୟର ଯେ ଏକାନ୍ତ ଅଭାବ । କ୍ଷମା କରିବି, ତେଣୁ ନିଜକୁ ନିତାନ୍ତ ଅସହାୟ ମନେ କରି, ଆପଣଙ୍କର ଏହି ରସମୟ ରଚନାରେ ବାଧା ଦେଇଛି ।

ଉପେନ୍ଦ୍ର । ତା ହେଲେ, ଏହି ଅସମ୍ପୂର୍ଣ୍ଣ ରସ କବିତାକୁ ତୁମକୁହିଁ ଗ୍ରହଣ କରିବାକୁ ହେବ ।

ମାଳବିକା । ମୋର ଜୀବନ ଦେବତାଙ୍କର ଯେ କୌଣସି ଦାନକୁ ମୁଁ ଅକୁଣ୍ଠିତ ଚିତ୍ତରେ ଗ୍ରହଣ କରିବି, କବି । କିନ୍ତୁ ଏ କବିତାକୁ ଅସମ୍ପୂର୍ଣ୍ଣ କରି ରଖିଲେ,କବିଶ୍ରେଷ୍ଠ ଉପେନ୍ଦ୍ର ତାଙ୍କ ପ୍ରତିଭାର ଅବମାନନା କରିଛନ୍ତି, ଏ ନିନ୍ଦାର ଭାର ଯେ ଆପଣଙ୍କୁ ବହନ କରିବାକୁ ପଡ଼ିବ । ମୋର ପ୍ରିୟତମଙ୍କ ପକ୍ଷରେ ଏ ନିନ୍ଦାଟା ଲୋଭନୀୟ ନୁହେଁ ନିଶ୍ଚୟ ।

ଉପେନ୍ଦ୍ର । ତେବେ ଆଦେଶ କର ପ୍ରିୟତମେ ! କେଉଁ ଉପାୟରେ ତୁମର କବି ଏହି ଅସମ୍ପୂର୍ଣ୍ଣ ରସମୟ ଗାଥାର ଜୀବନ୍ୟାସ ଦେବ । ତୁମେହିଁ ମୋର ମାନସୀ । ସୁତରାଂ ଆଜିର ଏହି ବାସନ୍ତୀ ସନ୍ଧ୍ୟାର ନିବିଡ଼ ଆବରଣ ତଳେ, ତୁମର ସ୍ୱପ୍ନ ସଫଳ କରିବାକୁ,ଉପେନ୍ଦ୍ର ଯଥାର୍ଥରେ ବ୍ୟଗ୍ର । କୁହ, ତୁମେ ଏହି ଅସମ୍ପୂର୍ଣ୍ଣ କବିତା ସମ୍ବନ୍ଧରେ କଣ ଚାହଁ ?

ମାଳବିକା । ଆଦେଶ ଦେବାର ଅଧିକାର ମୋର ନାହିଁ କବି, କେବଳ ମୋର ଏକାନ୍ତ ଅନୁରୋଧ ଯେ, ଏହି ରସ କବିତା, ତାର ପୂର୍ଣ୍ଣ ରୂପ-ରେଖ ନେଇ ଏ ଦେଶର ସାହିତ୍ୟରେ ଚିରସ୍ମରଣୀୟ ହୋଇ ରହୁ, କେବଳ ମାଳବିକାର ସ୍ମୃତି ବହନ କରି । ଏହି ଧରନ୍ତୁ ଲେଖନୀ, ଆଉ ଏହି ନିଅନ୍ତୁ, ଆପଣଙ୍କର ସେହି ଅସମ୍ପୂର୍ଣ୍ଣ ରସ କବିତାର ପୋଥି । (ଲେଖୁଥିବା ପୋଥି ଓ ଲେଖନୀ ଧରାଇ ଦେଇ) ଆପଣଙ୍କର ମାନସୀର ମର୍ଯ୍ୟାଦା ରକ୍ଷା କରନ୍ତୁ, କବି !

ଉପେନ୍ଦ୍ର । ଅଚ୍ଛା, ତାହାହିଁ ହେବ । (କିଛିଏ ଭାବି) ତୁମର ଏ ରସ କବିତାକୁ, ବୋଲି, ଛନ୍ଦ, ଚଉପଦୀ, ଚଉତିଶା ଓ ଗୀତ, ଏହି ପଞ୍ଚବିଧ ଉପାୟରେ ରୂପାନ୍ତରିତ କରିବି, ଏହି ପ୍ରତିଶ୍ରୁତି ମୁଁ ତୁମକୁ ଦେଉଛି । ନର୍ମସୁଖର ସ୍ମାରକରୂପେ, ଏ ସଙ୍ଗୀତ ନାୟକ ନାୟିକା ଲକ୍ଷଣରେ ପରିପୂର୍ଣ୍ଣ ହେବ । ଆଉ ଏହି ଅଳଙ୍କାରିକ କାବ୍ୟର ନାମ ରଖିବି "ରସପଞ୍ଚକ"; ର, ସ, ପ, ଚ ଓ କ ଏହି ପାଞ୍ଚ ଅକ୍ଷରକୁ ଅବଲମ୍ବନ କରି, ଏହାର ବର୍ଣ୍ଣନା ପରିସମାପ୍ତ ହେବ । ତୁମର ସ୍ମୃତିଚିହ୍ନ ବକ୍ଷରେ ଧରି ରସପଞ୍ଚକ ଏ ଦେଶର ସାହିତ୍ୟରେ ଯେ ନିଜର ଉପଯୁକ୍ତ ସ୍ଥାନ ନିରୂପଣ କରି ପାରିବ, ଏ ଭରସା ଉପେନ୍ଦ୍ରର ଅଛି ।

ମାଳବିକା । ଆପଣଙ୍କର ଏ ଅଯାଚିତ ଅନୁଗ୍ରହକୁ, ମାଳବିକା ତାର ଦେବତାର ଶ୍ରେଷ୍ଠ ପ୍ରସାଦରୂପେ ଗ୍ରହଣ କରୁଛି, ପ୍ରିୟତମ !

( ଭୃତ୍ୟ ମାଧବ ଦକ୍ଷିଣଦ୍ୱାର ଦେଇ ପ୍ରବେଶ କଲା । )

ମାଧବ । ଜ୍ୟୋତିର୍ମଣି ଆସନ୍ତେ, ମହାରାଜ ନିଜେ ଏ ଅଡ଼କୁ ବିଜେ କରୁଛନ୍ତି । ( ପ୍ରସ୍ଥାନ )

[ ସଙ୍ଗେ ସଙ୍ଗେ ଧନଞ୍ଜୟ ଭଞ୍ଜଙ୍କର ପୋଥି ହସ୍ତରେ ପ୍ରବେଶ । ଉପେନ୍ଦ୍ର ଓ ମାଳବିକା ଠିଆ ହୋଇ ପଡ଼ିଲେ, ତାଙ୍କୁ ସମ୍ମାନ ଦେବା ଲାଗି । ]

ଧନ । କବି ! ସନ୍ଧ୍ୟାର ପ୍ରାକ୍‌କାଳରେ କଣ ଚକ୍ରବାକ ଯୁଗଳର ପ୍ରେମ ଗୁଞ୍ଜରଣ ଚାଲିଛି ? ତା ହେଲେ, ମୋର ଆଗମନରେ ତ ଯଥେଷ୍ଟ ରସଭଙ୍ଗ ହୋଇଥିବ ?

ଉପେନ୍ଦ୍ର । ନା ପିତାମହ, ମାଳବିକାଙ୍କ ସହିତ ଟିକିଏ କବିତାଚର୍ଚ୍ଚା ଚାଲିଥିଲା ମାତ୍ର ।

ଧନ । ଉପେନ୍ଦ୍ର, ମୁଁ ଆସିଥିଲି କେବଳ ତୁମର ଲାବଣ୍ୟବତୀ କାବ୍ୟ ସୃଷ୍ଟି ଯୋଗୁଁ, ଏ ବଂଶର ପ୍ରଦୀପକୁ ମୋର ଅନ୍ତରର ଅଭିନନ୍ଦନ ଜଣାଇବାକୁ । କବିଶ୍ରେଷ୍ଠ ଜ୍ୟୋତିର୍ମଣି, ବୃଦ୍ଧ ଧନଞ୍ଜୟ ତାର ପରପାର ଯାତ୍ରା ଲାଗି,ଗୋଟାଏ ପାଦ ବହୁଦିନରୁ ଆଗକୁ ବଢ଼ାଇ ସାରିଲାଣି । ମୃତ୍ୟୁ-ନଦୀ ତୀରରେ ଠିଆ ହୋଇ, ତୁମର ଏ ଲାବଣ୍ୟବତୀ ପାଠ କରିସାରି, ମୋର ଦୁଃଖ ହେଲା ଯେ,ଏ ଅପାର୍ଥିବ ପ୍ରତିଭାର ପୂର୍ଣ୍ଣ ବିକାଶ ଦେଖିବାର ସୌଭାଗ୍ୟ ମୋର ବୋଧହୁଏ ହେବ ନାହିଁ । ଆଚ୍ଛା, ଜ୍ୟୋତିଷ ଶାସ୍ତ୍ର ଉପରେ ତୁମର ଏପରି ଅଖଣ୍ଡ ଅଧିକାର କେବେଠାରୁ ହେଲା କବି ?

ଉପେନ୍ଦ୍ର । କେଉଁ କଥାକୁ ଲକ୍ଷ୍ୟ କରି, ଏହା କହୁଛନ୍ତି ପିତାମହ ?

ଧନ । କାହିଁକି ? ତୁମର ଲାବଣ୍ୟବତୀ କାବ୍ୟକୁ ଲକ୍ଷ୍ୟ କରି, ଶୁଣ । (ଧରିଥିବା ପୋଥି ଖୋଲି ପଢ଼ିଲେ ।)

ଶୁକ୍ଳପକ୍ଷ ଦଶମୀ ବୁଧବାରେ—ସିଦ୍ଧ ସାଧ୍ୟ ଯୋଗ ଯୋଗ ହେବାରେ,
ଦିନ ଅଷ୍ଟଦଣ୍ଡ ଭୋଗ ଅଦିତ୍ୟ—ଶୁଭ ବେଳା ତୁଲ ଲଗ୍ନ ଉଦିତ ।
ପୁଷ୍ୟା ନକ୍ଷତ୍ର କର୍କଡ଼ା ଚନ୍ଦ୍ରରେ—ବୃହସ୍ପତି ଛନ୍ତି ଉଚ୍ଚ କେନ୍ଦ୍ରରେ ।
ସ୍ଥିତ ଶତ୍ରୁଘ୍ନ ମଙ୍ଗଳ ମକରେ—ମେଷେ ଅସୁର ଗୁରୁ ଲୀଳା କରେ ।
ଧନ୍ୟ ହୋଇ ଅଛି ରାହୁ କନ୍ୟାରେ—ବୁଧ ମିଥୁନରେ କେତୁ ମୀନରେ,
ସିଂହେ ସ୍ଥିତ ହୋଇଛି ଦିବାପତି—ସୌମ୍ୟ ଗ୍ରହ ଦୃଷ୍ଟି ଲଗ୍ନେ ପଡନ୍ତି ।

ଏ କିଏ, କବି ?

ଉପେନ୍ଦ୍ର । (ହସି) ଏହା ଲାବଣ୍ୟବତୀଙ୍କ ପ୍ରଥମ ପୁତ୍ରର ଲଗ୍ନ ନିରୂପଣ, ପିତାମହ ! ପ୍ରାନ୍ତ ଦୁଇ ଅକ୍ଷରର ଅନୁପ୍ରାସରେ ସମଗ୍ର ଛନ୍ଦଟି ରଚିତ ।

ଧନ । ମୁଁ ତାହା ଦେଖିଛି, କେନାମଣି । କିନ୍ତୁ ତୁମର ପ୍ରତିଭା କି ଚତୁର୍ଦ୍ଦିଗକୁ ପରିବ୍ୟାପ୍ତ ? ସେ ଦିନ ପ୍ରେମସୁଧାନିଧି କାବ୍ୟରେ ଦେଖିଥିଲି ବୈଷ୍ଣବାନନ୍ଦ ଉପେନ୍ଦ୍ରକୁ— "ରବିକର ନ ଛାଡ଼ିଲା ପରି ଏ ମେରୁକୁ" ପାଠ କରି । ଆଜି ପୁଣି ଲାବଣ୍ୟବତୀରେ ଦେଖୁଛି, ଜ୍ୟୋତିଷୀ ଉପେନ୍ଦ୍ରକୁ । ମୁଁ କେବଳ ବିସ୍ମିତ ହେଉଛି, ତୁମର ପ୍ରତିଭାର ଏ ସମ୍ଭାର ସବୁ ଦେଖି ଉପେନ୍ଦ୍ରକବି । ସତ କୁହ, କିଏ ତୁମ୍ଭେ ? ଘୁମୁସର ରାଜବଂଶରେ କି ଜନ୍ମ ତୁମ୍ଭର ? ମୁଁ ଯେ ବିଶ୍ୱାସ କରି ପାରୁ ନାହିଁ ।

ଉପେନ୍ଦ୍ର । କାହିଁକି ପିତାମହ ! ମୁଁ ଯେ ଘୁମୁସର ରାଜବଂଶର, ବିଶେଷତଃ ଆପଣଙ୍କର ସନ୍ତାନ—ଏ ପରିଚୟ ତ ମୁଁ ଦେଇଛି, ଲାବଣ୍ୟବତୀର ଷୋଡ଼ଶ ଛାନ୍ଦରେ । ଶୁଣନ୍ତୁ (ପୋଥି ନେଇ ପଢ଼ିଲେ)

ଯେ ବଂଶେ ଇଷ୍ଟ ଦୁର୍ଗା ଦେବୀ, ବରଗୀ କୋଟରୁ ସମ୍ଭବି,
ମନୁଷ୍ୟ ଏହି ଅଦଭୁତ ଭଞ୍ଜାନୁଭକ୍ତି ନାମ ସତ
ବଶିଷ୍ଟ ବଶିଷ୍ଟ ପାଳକା, ଶ୍ରୀରାମେ ଦତ୍ତ ରାଜଟୀକା,
ସେ କୁଳେ ରାଜା ଧନଞ୍ଜୟ, ସମସ୍ତ ଗୁଣର ନିଳୟ ।
ଘୁମୁସର ଅଧିପ ପଣେ, ଲୋକେ ବିଖ୍ୟାତ କବିଗୁଣେ,
ତଦ୍‌ବିତ ତାହାଙ୍କ ତନୁଜ ନରେଶ ନୀଳକଣ୍ଠ ଭଞ୍ଜ,
ତାହାଙ୍କ ଜ୍ୟେଷ୍ଠ ସୁତ ମୁହିଁ, ଉପେନ୍ଦ୍ର ଭଞ୍ଜ ନାମ ବହି ।

ଧନ । ଉପେନ୍ଦ୍ର ! ବୃଦ୍ଧ ଧନଞ୍ଜୟ ତୁମର କି ପ୍ରଶଂସା ଆଉ କରିପାରେ କହ ? ତୁମର ସୃଷ୍ଟି ଯେ ମୋର ପ୍ରଶଂସାର ସୀମାରେଖାର ବହୁତ ଉପରେ । ଏହି ଲାବଣ୍ୟବତୀ କାବ୍ୟରେ କେବଳ ବସନ୍ତ ଋତୁ ବର୍ଣ୍ଣନାର ଛନ୍ଦପୁଞ୍ଜକ ଦେଖି, ମୁଁ ବିସ୍ମୟରେ ନିର୍ବାକ ହୋଇ ଯାଇଛି । କବି, ବୃଦ୍ଧ ଧନଞ୍ଜୟର ଆଶା, ତୁମ କଣ୍ଠ ସ୍ୱର ସଂଯୋଗରେ ତୁମର ଋତୁ ବର୍ଣ୍ଣନାର ଗୋଟିଏ ଦୁଇଟି ଛନ୍ଦ, ସେ ଆଜି ଆକଣ୍ଠ ପାନ କରିବ । (ଗୋଟାଏ ଆସନରେ ବସି ପଡ଼ିଲେ । )

ଉପେନ୍ଦ୍ର । ମୋର ସୌଭାଗ୍ୟ ଯେ ଏତେଦୂର ହେବ, ତାହା ମୁଁ ଆଶା କରି ନ ଥିଲି । ପ୍ରଥମେ, ବସନ୍ତ ଋତୁ ବର୍ଣ୍ଣନା ଶୁଣନ୍ତୁ, ପିତାମହ ! (ଉପେନ୍ଦ୍ର ପୋଥି ଖୋଲି ଗାଇଲେ ଓ ଧନଞ୍ଜୟ ଉପଭୋଗ କରୁଥିଲେ ।)

ମଳୟ ଶିଖରୀ ଶିରୀ ଗୈରିକର ବହିଲାଣି ମନ୍ଦ ସମୀର,
ସୁମନାଙ୍କ ବାସ ଗୈରିକ ନେବଟି, ଦୋଳି କହିଲାଣି ଭ୍ରମର,
କେଶର, କେଶରେ ହେଲେଣି ମଞ୍ଜୁଳ,
କେଶରେ ମଣ୍ଡନ କରିବା ଭଳିରେ ଫୁଟିଲେଣି କେତେ ବଞ୍ଜୁଳ ।୧।
ମଲ୍ଲୀ, ମାଧବୀ, ମକରନ୍ଦ ସାଧବୀ, ହୋଇଲେଣି ବାନ୍ଧବୀ କାନନେ,
ତୁଷାର ନାଶ ବୃଦ୍ଧି ହାସ ପ୍ରକାଶ କଲେଣି ପଙ୍କଜ ଆନନେ,
ହେଲାଣି, ଚର୍ଚ୍ଚିଗ ପ୍ରକିନ୍ନ କଣ୍ଠକେ,
ଅତନୁ ଫୁଲର ଦଶିଖ କାର୍ମୁକ ଘେନି ଚଳଲେଣି କାମୁକେ ।୨।

ଧନ । ତା ପରେ, ବର୍ଷା ବର୍ଣ୍ଣନାଟି ଗାଅ, କବି ।

ଉପେନ୍ଦ୍ର । (ପୋଥି ଧରି ଗାଇଲେ)

ପ୍ରବେଶ ହୋଇଲା ବରଷା କାଳ
ପ୍ରମାଦମାନଙ୍କ ଜନମସ୍ଥଳ,
ଜଳଦ କଜ୍ଜଳ କାନ୍ତି ଶାର୍ଦ୍ଦୁଳ,
ସୁଖେ ବହିଲେ ଶିଖରୀ ଚୂଳ
ଗର୍ଜ୍ଜି ସନ୍ତତ
ପ୍ରକାଶି ଝଳ ବଳାବଳୀ ଦନ୍ତ ।୧।

ବିଧାତା ବିଧାନ ଶତା ବିଚ୍ଛୁରି,
କାବ୍ୟାବଳୀ ଯୋଗେ ଉଠିଲ୍ଲି ଜଳି ।
ଝଞ୍ଜାନିଳ ଲାଗି ପ୍ରଭା ପ୍ରକାଶି,
ସଙ୍ଗୀତରେ ଦଗ୍ଧ ଦିଏ ବିଦେଶୀ,
ତାହୁଁ ଅଗ୍ନି କଣ,
ଉଡ଼ି ବୋଲାଇଲେ ଜ୍ୟୋତିରିଙ୍ଗଣ ।୨।

ଧନି । (ଗୀତ ଶୁଣି ଅତ୍ୟଧିକ ଆନନ୍ଦରେ ବିହ୍ୱଳ ହୋଇ ବାଡ଼ି ପକାଇଲେ ଓ ଉଠି ଆସି ଉପେନ୍ଦ୍ରଙ୍କୁ ଆଲିଙ୍ଗନ କରି) ଉପେନ୍ଦ୍ର—କବୀନ୍ଦ୍ର—ମୋ ବଂଶର ଗୌରବ, ମୋ ଜାତିର ରତ୍ନ, ମୋ ଦେଶର ସମ୍ପତ୍ତି । ଦେଖ ବାବା—ତୁମର ଉକ୍ତ ବର୍ଣ୍ଣନାର ଏହି ଲୋକତୀୟ ରଚନା ମାଧୁରୀ, ଆଜି ବୃଦ୍ଧ ଧନଞ୍ଜୟର ଆଖିରେ ଆଣି ଦେଇଛୁ, ଗର୍ବର ଆନନ୍ଦାଶ୍ରୁ । (ଅଶ୍ରୁ ପୋଛି) ରାଜଜେମା ମାଳବିକା ! ମା ମୋର, ଆଜି ମୁଁ ସୁସ୍ପଷ୍ଟରୂପେ ଜାଣି ପାରୁଛି ଯେ, ଏହି ଅମୂଲ୍ୟ ରତ୍ନର ଦୀପ୍ତିରେ, ଘୁମୁସର ସିଂହାସନର ପ୍ରଭା ଚିରଦିନ ଲାଗି ମଳିନ ପଡ଼ିଯାଉଛି । ଖାଲି ତେତିକି ନୁହେଁ, ହୁଏତ ଘୁମୁସର ରାଜ୍ୟ ଶୁଦ୍ଧ ନିକଟ-ଭବିଷ୍ୟତରେ ଦିନେ ବିସ୍ମୃତିର ଅତଳ ଅନ୍ଧକାରରେ ଲୁପ୍ତ ହୋଇ ଯାଇପାରେ । କିନ୍ତୁ ଗଜପତିଙ୍କର କଳିଙ୍ଗ ସାମ୍ରାଜ୍ୟକୁ, ଘୁମୁସର ଯୁବକର ଏହି ଅପୂର୍ବ ଦାନ, ଶାଶ୍ୱତ, ଅବିନଶ୍ୱର । ତୁମେ ହୁଏତ ଜାଣ ନା, ରାଜଜେମା, ମୋର ଏହି ନେତାମଣିର ସାଧନାରେ ଘୁମୁସରର ଅଧିଷ୍ଠାତ୍ରୀ ଦେବୀ ବାଗ୍‌ଦେବୀଙ୍କର କି ପ୍ରଚ୍ଛନ୍ନ ଆଶୀର୍ବାଦ ରହିଛି । କିନ୍ତୁ ସେ ଦୃଶ୍ୟ ମୁଁ ସ୍ୱଚକ୍ଷୁରେ ଦେଖିଛି । ତେଣୁ କହୁଛି, ରାଜଜେମା ! କାବ୍ୟ ଜଗତର ଜ୍ୱଳନ୍ତ ମୀହାରିକା ଏ; ଏ ରତ୍ନକୁ କଦାପି ଅବହେଳା କରିବ ନାହିଁ ।

ମାଳବିକା । ଆପଣଙ୍କର ଏହି ସତର୍କ ବାଣୀ ଶୁଣିବା ପୂର୍ବରୁ, ମୁଁ ମଧ୍ୟ ଅନୁଭବ କରି ପାରିଛି ପିତାମହ, ଆପଣଙ୍କର କବି, କେବଳ ମୋର ନାହିଁକି, ଆଗଙ୍ଗଗୋଦାବରୀବିସ୍ତୃତ ସମଗ୍ର କଳିଙ୍ଗ ସାମ୍ରାଜ୍ୟର ମଧ୍ୟ ଅବହେଳାର ବସ୍ତୁ ନୁହନ୍ତି ।

ଧନ । କବି, ରାମଚରିତ ବିଷୟକ କାବ୍ୟ ଲେଖିବାର ଯେଉଁ ପ୍ରତିଶ୍ରୁତି ମୋତେ ଦେଇଥିଲ, ତାହା ସ୍ମରଣ ଅଛି ତ ? ଏ ସଂସାରର ସମସ୍ତ ବନ୍ଧନ ତ୍ୟାଗ କରି ଯିବା ପୂର୍ବରୁ, ସେହି କାବ୍ୟଟିକୁ ଥରେ ଦେଖି ଯିବା ଲାଗି ମୋର ପ୍ରବଳ ଆକାଂକ୍ଷା । ଆଜି କେନାମଣି, ମୋର ଆଶା, ତୁମର ସେହି କାବ୍ୟ ଯେପରି ତୁମ ପ୍ରତିଭାର ସର୍ବଶ୍ରେଷ୍ଠ ଚରମ ନିଦର୍ଶନ ହେବ ।

ଉପେନ୍ଦ୍ର । (ନମ୍ରଭାବେ) ଯେଉଁ ରାଜକବି ଧନଞ୍ଜୟଙ୍କର ଆଶୀର୍ବାଦ ଓ ପ୍ରେରଣା ଯୋଗୁଁ ମୋର ଜୀବନ ସାର୍ଥକ ହୋଇଛି, ସେହି ରାଜକବିଙ୍କର ବାଣୀକୁ, ମୁଁ କି କେବେ ଭୁଲି ପାରେ, ପିତାମହ ? ଅସମ୍ଭବ ! ସେଥି ଲାଗି ତ ନୟାଗଡ଼ ଯାତ୍ରାର ନିର୍ଦ୍ଦେଶ ମୁଁ ପାଇଛି ।

ଧନ । ହଁ, ସତେତ, ମୁଁ ଭୁଲି ଯାଇଥିଲି, ଉପେନ୍ଦ୍ର ! କେବେ ନୟାଗଡ଼ ଯାତ୍ରା କରୁଛ ?

ଉପେନ୍ଦ୍ର । ବୋଧହୁଏ ଆଜି ଦିନେ ଦୁଇ ଦିନ ମଧ୍ୟରେ, ମୋର ଗୋଟିଏ ଅସମ୍ପୂର୍ଣ୍ଣ କାବ୍ୟ ରସପଞ୍ଚକର ରଚନା ଶେଷ କରି ସାରି, ଯାତ୍ରାର ଆୟୋଜନ କରିବି । କିନ୍ତୁ ଯାତ୍ରା କରିବାର ଅବ୍ୟବହିତ ପୂର୍ବରୁ, ପିତାମହଙ୍କର ସ୍ନେହାଶୀର୍ବାଦ ଭିକ୍ଷା କରିନେବି ନିଶ୍ଚୟ ।

ଧନ । (ଉପେନ୍ଦ୍ରଙ୍କର ମସ୍ତକରେ ହାତ ବୁଲାଇ) ବୃଦ୍ଧ ଧନଞ୍ଜୟର ସମସ୍ତ ପୁଞ୍ଜୀଭୂତ ଆଶୀର୍ବାଦ ଯେ ସର୍ବଦା ତୁମରି ଲାଗି ଉଦ୍ଦିଷ୍ଟ, କେନାମଣି ! ସୁତରାଂ ଭିକ୍ଷାର ପ୍ରଶ୍ନ ତ ଏଠି ନାହିଁ । ଅଛି କେବଳ ଅଖଣ୍ଡ ଦାବୀ । (ଧୀରେ ଧୀରେ ଆସିବା ପଥ ଦେଇ ଚାଲିଗଲେ ।)

ଉପେନ୍ଦ୍ର । ସତେ ! ଲାବଣ୍ୟବତୀର ରଚନାରେ ବ୍ୟସ୍ତ ରହି, ନୟାଗଡ଼ ଯାତ୍ରା କଥା ମୁଁ ଯେ ଏକାବେଳକେ ଭୁଲି ଯାଇଥିଲି ! ନାଃ—କାଲି ମଧ୍ୟରେ ରସପଞ୍ଚକର ରଚନା ଶେଷ କରି ମୋତେ ଯଥା ଶୀଘ୍ର ନୟାଗଡ଼ ଯାତ୍ରାର ବ୍ୟବସ୍ଥା କରିବାକୁ ହେବ । ସନ୍ନ୍ୟାସିନୀଙ୍କର ସେ ଦିନର ବାଣୀ ଏ ପର୍ଯ୍ୟନ୍ତ ସୁଦ୍ଧା ମୋର ରୋମାଞ୍ଚ ଜାତ କରୁଛି, ପ୍ରିୟତମେ !

ମାଳବିକା । କିନ୍ତୁ ପ୍ରିୟତମ, ଆପଣଙ୍କର ନୟାଗଡ଼ ଯାତ୍ରା କଥା ଶୁଣି, ମୋ ମନରେ କିପରି ଗୋଟାଏ ଦ୍ୱିଧା ଜାତ ହେଉଛି । ଯେପରି ଗୋଟାଏ ଅସ୍ପଷ୍ଟ ପ୍ରତିଧ୍ୱନି ମୋର କର୍ଣ୍ଣ ନିକଟରେ ବାରମ୍ବାର୍ ଜଣାଇ ଦେଉଛି ଯେ, ଆପଣଙ୍କର ଏ ଯାତ୍ରା ମୋର ସମସ୍ତ ସୌଭାଗ୍ୟରୁ ମୋତେ ବଞ୍ଚିତ କରିଦେବ ।

ଉପେନ୍ଦ୍ର । ଛି—ମାଳବିକା ! ମୋର ବିଦୂଷୀ ସହଧର୍ମିଣୀ ତୁମେ । ସୁତରାଂ ମୋର ଅଗ୍ରଗତିରେ ପ୍ରେରଣା ଦେବା ପରିବର୍ତ୍ତିରେ, ଏପରି ଦୁର୍ବଳତା ପ୍ରକାଶ କରିବା ତୁମ ପକ୍ଷରେ ଆଦୌ ପ୍ରଶଂସନୀୟ ନୁହେଁ । ମୁଁ ଜାଣେ, ଜୀବନରେ ଅନେକ ସମୟରେ ଅଳସ ଓ ଦୁର୍ବଳ ମୁହୂର୍ତ୍ତ ଉପୁଜାଏ ଅସେ, ଆଉ ସେହି ସମୟରେ ଦୁନିଆର ସମସ୍ତ ଅବସାଦ ଆସି ମାନବର କର୍ମମୟ ଜୀବନକୁ ପଙ୍ଗୁ କରିଦିଏ । କିନ୍ତୁ ଏ ସବୁ ଦୁର୍ବଳତାକୁ ପ୍ରଶ୍ରୟ ଦେବାକୁ ଉପେନ୍ଦ୍ର ଅନୁମୋଦନ କରିପାରେ ନା ।

ମାଳବିକା । ଦେବତା ମୋର, ଆପଣଙ୍କର ନୟାଗଡ଼ ଯାତ୍ରା ପଥରେ ବାଧା ଦେବାର ଅଭିପ୍ରାୟ ମୋର ନାହିଁ । କିନ୍ତୁ ଜାଣେନା, କି ଗୋଟାଏ ଅଜ୍ଞାତ ଆଶଙ୍କାରେ ହୃଦୟ ମୋର ଆଜି ଅସ୍ଥିର ହୋଇ ଉଠୁଛି । ମୋର ମନେହୁଏ, ଆମର ଏ ବିଚ୍ଛେଦ କ୍ଷଣସ୍ଥାୟୀ ନୁହେଁ । ହୁଏତ, ଏହା ଚିରଦିନ ଲାଗି ।

ଉପେନ୍ଦ୍ର । (ହସି) ବିରହ ବିଜ୍ଞାନର ପ୍ରଥମ ପର୍ଯ୍ୟାୟ ଆରମ୍ଭ ହେଲା ବୋଧହୁଏ, ନୁହେଁ ? ଆଚ୍ଛା, ସତ୍ୟ କୁହ ମାଳବିକା, ମୋର କ୍ଷଣିକ ଅଦର୍ଶନ ଜନିତ ବିରହ କି ବାସ୍ତବିକ ତୁମ ପକ୍ଷରେ ଏତେ ମର୍ମନ୍ତୁଦ ?

ମାଳବିକା । ପ୍ରେମିକ ପକ୍ଷରେ ଏହା ଏକ ଚିରନ୍ତନ ପ୍ରଶ୍ନ, ପ୍ରିୟତମ ! ଯାର ଯଥାର୍ଥ ଉତ୍ତର ଦେବାକୁ ଅନେକ ପ୍ରେମିକା ଅନେକ ସମୟରେ ହୁଏତ ଅସମର୍ଥା ହୋଇ ପଡ଼ନ୍ତି । ତେଣୁ ସେମାନଙ୍କୁ ଛଳନାର ଆଶ୍ରୟ ନେବାକୁ ପଡ଼େ । କିନ୍ତୁ, ମାଳବିକା ଆଜି ଆପଣଙ୍କର ପ୍ରଶ୍ନର କେବଳ ଗୋଟିଏ ମାତ୍ର ସରଳ ଉତ୍ତର ଦେବ ଯେ, ଆପଣଙ୍କର କ୍ଷଣିକ ବିଚ୍ଛେଦ ସୁଦ୍ଧା, ତା ପ୍ରାଣରେ ମୃତ୍ୟୁତୁଲ୍ୟ ଗୋଟାଏ ଅସହ୍ୟ ଯନ୍ତ୍ରଣା ଦିଏ । ମୋର

ଦୁର୍ଭାଗ୍ୟ ଯେ, ଅନ୍ତରର ଏ ଯନ୍ତ୍ରଣା ହୃଦୟର ଖୋଲି ଆଖି ଆଗରେ ଦେଖାଇ ଦିଆଯାଇ ପାରେ ନା—ସୁତରାଂ କି ପ୍ରମାଣ ଯେ ଦେବି, ମୁଁ ଭାବିପାରୁ ନାହିଁ, କବି !

ଉପେନ୍ଦ୍ର । (ମାଳବିକାଙ୍କୁ ଆଲିଙ୍ଗନ କରି ) କିନ୍ତୁ ଦିନେ ଏହାର ପରୀକ୍ଷା ମୁଁ କରିବି, ମାଳବିକା ! ଆଜି, ତୁମର ଏହି ଉକ୍ତିର ସତ୍ୟତା କେତେ, ତାର ଉପଯୁକ୍ତ ପ୍ରମାଣ ମଧ୍ୟ ମୁଁ ତେଣିକିବେଳେ ତୁମଠାରୁ ପାଇ ପାରିବି ବୋଲି ଆଶାକରେଁ । ବର୍ତ୍ତମାନ ଚାଲ, ମୋର କମ୍ପାଗଡ଼ ଯାତ୍ରା ପୂର୍ବରୁ, ଆଜି ପୌର୍ଣ୍ଣମାସୀ ରଜନୀର ଏହି ସ୍ୱଚ୍ଛନ୍ଦ ଶୁଭ୍ର କିଦତାକୁ ଆରେ ପୂର୍ଣ୍ଣ ପ୍ରାଣରେ ଉପଭୋଗ କରିବା । (ଉଭୟେ ସମ୍ମୁଖ ଦ୍ୱାର ଦେଇ ବାରନ୍ଦା ଆଡ଼କୁ ଅଗ୍ରସର ହେଲେ ଓ କ୍ରମେ ଅଦୃଶ୍ୟ ହୋଇଗଲେ ।)

---

# ପଞ୍ଚମ ଦୃଶ୍ୟ

[ ଭୂଲଡ଼ ଦୁର୍ଗ ମଧ୍ୟସ୍ଥିତ ଘୁମୁସର ରାଜଦରବାରର ସୁବୃହତ୍ କକ୍ଷ । କକ୍ଷର ଦୁଇ ପାର୍ଶ୍ୱରେ ମର୍ମର ପ୍ରସ୍ତରର ଖଚିତ ସ୍ତମ୍ଭମାନ ଦଣ୍ଡାୟମାନ । ସମସ୍ତ ପୂର୍ବାଭିମୁଖୀ ! କକ୍ଷର ଶେଷ ପ୍ରାନ୍ତର ମଧ୍ୟଭାଗରେ, ଗୋଟିଏ ଉଚ୍ଚ ପିଣ୍ଡି ଉପରେ ସୁସଜ୍ଜିତ ସ୍ୱର୍ଣ୍ଣ ସିଂହାସନ । ସେହି ସିଂହାସନରେ ରାଜପୋଷାକ ପରିହିତ ଆଠରାଜା ଗୋବିନ୍ଦ ଭଞ୍ଜ ଆସୀନ । ତାଙ୍କର ଦକ୍ଷିଣ ପାର୍ଶ୍ୱରେ, ତାଙ୍କ ପାଖକୁ ଲାଗି, ଆଉ ଗୋଟିଏ ଗଜଦନ୍ତ ନିର୍ମିତ ଆସନରେ ସାଧାରଣ ପରିଚ୍ଛଦ ପରିହିତ ବୃଦ୍ଧ ମହାରାଜ ଧନଞ୍ଜୟ ଭଞ୍ଜ ବସି ରହିଛନ୍ତି । ସିଂହାସନର ପଶ୍ଚାତ୍‌ରେ ପରିଚାରିକା ଦୁଇଜଣ ବ୍ୟଜନ ଚାଳନା କରୁଛନ୍ତି । ତାଙ୍କଠାରୁ କିଛି ଦୂରରେ ଠିଆ ହୋଇଛନ୍ତି, ରାଜାଙ୍କର ସମସ୍ତ ଦେହରକ୍ଷୀଗଣ । ଦରବାର କକ୍ଷର ଦକ୍ଷିଣ ପାର୍ଶ୍ୱରେ ଦେଢ଼େଗୁଡ଼ିଏ ଆସନ ସନ୍ନିବେଷ୍ଟ । ସେଥିରେ ବସିଛନ୍ତି, ମହାମନ୍ତ୍ରୀ ବୃଷଭାନୁ, ତାଙ୍କ ପାଖକୁ ଲାଗି ବସିଛନ୍ତି ରାଜକୁମାର ଗଙ୍ଗାଧର, ହରିଶରଣ, ଜଗନ୍ନାଥ, ନୀଳକଣ୍ଠ ଓ ଘନ । କକ୍ଷର ବାମ ପାର୍ଶ୍ୱରେ ସେହିପରି ଗୁଡ଼ିଏ ଆସନରେ ବସି ରହିଛନ୍ତି ଘୁମୁସର ସେନାପତି, ରାଜଗୁରୁ, ରାଜକବିରାଜ, ଦୁଇଜଣ ସଭାସଦ୍ ଆଉ ଗାଲେରି ମୁଠାର କନ୍ଧ ସର୍ଦ୍ଦାର । ଦରବାରର ଏକ ପାର୍ଶ୍ୱରେ ଦଣ୍ଡାୟମାନ ଘୁମୁସର ରାଜ୍ୟର ଗୁପ୍ତଚର । ଏତଦ୍‌ବ୍ୟତୀତ ଦୁଇଜଣ ପ୍ରହରୀ ଦରବାର କକ୍ଷର ଦୁଇ ପାର୍ଶ୍ୱରେ ପ୍ରବେଶ ଦ୍ୱାର ନିକଟରେ ଧୀର ଦେହଚାରଣା କରୁଥିଲେ । ]

ଧନ । ମହାମନ୍ତ୍ରୀ ବୃଷଭାନୁ ! ଆଜି ଦରବାରରେ ମୁଁ ପ୍ରକାଶ୍ୟଭାବରେ ଘୋଷଣା କରୁଛି ଯେ, ରାଜ୍ୟ ପରିଚାଳନାରୁ ମୁଁ କ୍ଷଣକାଳ ଲାଗି ଅବସର ନେଇଛି । ଅତ, ମୋର ସ୍ଥାନରେ ମୁଁ ମୋର କନିଷ୍ଠ ଗୋବିନ୍ଦ ଭଞ୍ଜଙ୍କୁ

ନିର୍ବାଚିତ କରିଛନ୍ତି, ଏ ରାଜ୍ୟର ପାଟରାଜାରୂପେ । ସୁତରାଂ ଆଜିର ଏହି ଦରବାରର ପରିଚାଳକ ସ୍ୱୟଂ ପାଟରାଜା ଗୋବିନ୍ଦ ଭଞ୍ଜ । ମୁଁ ଏହି ଦରବାର କକ୍ଷକୁ ଆସିଛି କେବଳ ଜଣେ ନୀରବ ଦର୍ଶକ ହିସାବରେ । ପ୍ରୟୋଜନ ପଡ଼ିଲେ, ପାଟରାଜା ମୋର ପରାମର୍ଶ ମାତ୍ର ଗ୍ରହଣ କରି ପାରନ୍ତି । ବର୍ତ୍ତମାନ ଗୁପ୍ତଚର ! ତୁମର ସମ୍ବାଦ ତୁମ ପାଟରାଜାଙ୍କ ନିକଟରେ ପ୍ରକାଶ କରିପାର ।

ଗୁପ୍ତଚର । ମହାରାଜ, ମୁଁ ଯେତେଦୂର ସମ୍ବାଦ ସଂଗ୍ରହ କରିଛି, ସେଥିରୁ ମୁଁ ଜାଣି ପାରିଛି ଯେ, ବୁଗୁଡ଼ା ମୁଠାର ସର୍ଦ୍ଦାର ଓ ଜଗନ୍ନାଥପ୍ରସାଦ ମୁଠାର ସର୍ଦ୍ଦାର, ଏହି ଦୁଇଜଣ ଘୁମୁସର ସିଂହାସନର ଆଧିପତ୍ୟ ସ୍ୱୀକାର କରିବାକୁ ନାରାଜ । ସେମାନେ ଏକତ୍ର ବୋଧହୁଏ ଘୁମୁସର ରାଜାଙ୍କ ବିରୁଦ୍ଧରେ କୌଣସି ବିଦ୍ରୋହ ଘୋଷଣା କରିବା ମତଲବରେ ବ୍ୟସ୍ତ । ତାର ପ୍ରମାଣ, ଏହି ରାଜଦରବାରରେ ଆଜ ସେମାନଙ୍କର ଅନୁପସ୍ଥିତି । ଅଥଚ ଏହି ଦରବାର ଅଧିବେଶନରେ ଯୋଗ ଦେବା ଲାଗି, ସେମାନଙ୍କୁ ବିଶେଷ ଭାବରେ ଜଣାଇ ଦିଆ ଯାଇଥିଲା ।

ଗୋବିନ୍ଦ । ଗାଲେରି ସର୍ଦ୍ଦାର ! ତୁମକୁ ଏ ବିଷୟ କିଛି ଜଣା ଅଛି ?

ଗା: ସର୍ଦ୍ଦାର । ନା ରାଜା । ମୋତେ ଏ ସମ୍ବାଦ କିଛି ମାଲୁମ୍ ନାହିଁ । ମୁଁ ତୋର ହୁକୁମ ପାଇଲାମାତ୍ରେ ଏଠାକୁ ଆସିଛି ।

ବୁଗ୍ର । ପ୍ରଭୁଙ୍କ ନିକଟରେ ମୋର ନିବେଦନ ଯେ, ବୁଗୁଡ଼ା ଓ ଜଗନ୍ନାଥ ପ୍ରସାଦ ମୁଠାର ସର୍ଦ୍ଦାରମାନଙ୍କୁ ଶୀଘ୍ର କାର୍ଯ୍ୟଚ୍ୟୁତ କରାଯାଉ । ନୋଚେତ୍, ଭବିଷ୍ୟତରେ ମହାରାଜାଙ୍କୁ ବ୍ୟତିବ୍ୟସ୍ତ ହେବାକୁ ପଡ଼ିବ ।

ଗୋବିନ୍ଦ । ମହାମନ୍ତ୍ରୀ ! ଆଜଠାରୁ ବୁଗୁଡ଼ା ଓ ଜଗନ୍ନାଥ ପ୍ରସାଦ ମୁଠାର ସର୍ଦ୍ଦାରମାନଙ୍କୁ କାର୍ଯ୍ୟଚ୍ୟୁତ କରାଗଲା । ତାଙ୍କ ସ୍ଥାନରେ, କୁମାର ହରିଶରଣଙ୍କୁ ବୁଗୁଡ଼ା ମୁଠାର ଓ କୁମାର ଜଗନ୍ନାଥଙ୍କୁ ଜଗନ୍ନାଥ ପ୍ରସାଦ ମୁଠାର ସର୍ଦ୍ଦାରରୂପେ ନିଯୁକ୍ତ କରାଗଲା । ଏହାର ଉପଯୁକ୍ତ ବ୍ୟବସ୍ଥା ଆପଣ ଶୀଘ୍ର କରନ୍ତୁ । ଆଶାକରେଁ ରାଜକୁମାର ହରିଶରଣ ଓ ରାଜକୁମାର ଜଗନ୍ନାଥଙ୍କର ଏଥିରେ କୌଣସି ଆପତ୍ତି ନାହିଁ ?

ହର ଓ ଜଗା । (ଉଭୟେ) ମହାରାଜାଙ୍କର ଆଦେଶ ନତ ଶିରରେ ପାଳନ କରିବୁଁ ।

ଗୋବିନ୍ଦ । ରାଜକୁମାର ! ଘୁମୁସର ରାଜ୍ୟର ଭବିଷ୍ୟତ୍ କର୍ଣ୍ଣଧାର ତୁମ୍ଭେ, ମୋତେ ଆଜି ଏ ଆଦେଶ ଦେବାକୁ ପଡ଼ିଲା । ଆଶାକରେଁ, ତୁମେ ହୁଦ୍ଧେଁ, ତୁମର ମୁଠାରେ ସ୍ୱଚ୍ଛନ୍ଦ ସୈନ୍ୟଚାଳନା କରି ଅବାଧ ସର୍ଦ୍ଦାରମାନଙ୍କୁ ବଶୀଭୂତ କରି ପାରିବ । ଆଉ ପ୍ରୟୋଜନ ବୋଧ କଲେ ସେମାନଙ୍କୁ ଘୁମୁସର ରାଜ୍ୟ ସୀମାରୁ ମଧ୍ୟ ଦୂର କରି, ଦେବାକୁ କୁଣ୍ଠିତ ହେବ ନାହିଁ । ଘୁମୁସର ରାଜ୍ୟର ସ୍ୱାର୍ଥ ସର୍ଦ୍ଦାରମାନଙ୍କ ଦାୟିତ୍ୱବୋଧ ଉପରେ ନିର୍ଭର କରେ, ଏ କଥା ତୁମର ମନେରୁହେ ଯେପରି ।

ଜଗା । ମୋର ନିର୍ଦ୍ଦିଷ୍ଟ ମୁଠାକୁ ମୁଁ ବିନା ଅଯ୍ୟାସରେ ଅଯୃତକୁ ଆଣି ପାରିବ ବୋଲି ମୋର ବିଶ୍ୱାସ ଅଛି ମହାରାଜ !

ହର । ଭୁଗୁଡ଼ା ମୁଠାର ବିଶ୍ୱସ୍ତ ସର୍ଦ୍ଦାରରୂପେ, ଘୁମୁସର ରାଜ୍ୟ ପ୍ରତି ମୋର କର୍ତ୍ତବ୍ୟ ପାଳନରେ ମୁଁ ତ୍ରୁଟି କରିବ ନାହିଁ ମହାରାଜ !

ରାଜଗୁରୁ । ରାଜକୁମାର ଦ୍ୱୟଙ୍କର ଏହି ଯାବେଗେତ ପ୍ରତିଶ୍ରୁତି ଲାଗି ଘୁମୁସର ରାଜ୍ୟର ପ୍ରଜାମାନଙ୍କ ପକ୍ଷରୁ ମୁଁ ସେମାନଙ୍କୁ ଅଭିନନ୍ଦନ ଜଣାଉଛି ।

ଗୋବିନ୍ଦ । ଆଉ ଗାଲେର ସର୍ଦ୍ଦାର ?

ଗା: ସର୍ଦ୍ଦାର । କଣ ହୁକୁମ୍ କରୁଛ, ରାଜା ?

ଗୋବିନ୍ଦ । ଘୁମୁସର ରାଜାଙ୍କର ଜଣେ ଅନୁରକ୍ତ ସର୍ଦ୍ଦାରରୂପେ, ମୁଁ ତୁମ୍ଭଙ୍କୁ ବିଶ୍ୱାସ କରି ପାରେ କି ?

ଗା: ସର୍ଦ୍ଦାର । ରାଜା, ଆମେ ବଣୁଆ ଲୋକ । ଅସଭ୍ୟ ଜାତି । କିନ୍ତୁ ଆମର କଥା ଓ କାର୍ଯ୍ୟ ଏକ ! ମୁଣ୍ଡ କଟିଯିବ ପଛେ, ଆମେ ଆମ ରାଜାର ବିପକ୍ଷରେ ଠିଆ ହୋଇ ପାରିବୁ ନାହିଁ । ତୁମର ଉଚ୍ଚଜାତିର ସଭ୍ୟଲୋକମାନଙ୍କର କଥାବାର୍ତ୍ତାରେ ସବୁବେଳେ ଦୁଇଟା ଅର୍ଥ ଥାଏ । ସେମାନେ ଉପରେ ହସନ୍ତି; କିନ୍ତୁ ଭିତରେ ଛୁରୀ ମାରିବାର ମତଲବ ରଖନ୍ତି । ଆମ

କିନ୍ତୁ ଢାଙ୍କରେ ଏ ନିମକ୍‌ହାରାମି ତୁ ପାଇବୁ ନାହିଁ, ରାଜା। ଅମ ରଜା ଆମର ବାପ, ଆମର ଦେବତା, ବୁଝିଲୁ ?

ରାଜଗୁରୁ। ସାଧୁ ସାଧୁ, ଗାଲେଶ୍ୱ ସର୍ଦ୍ଦାର।

ଗୋବିନ୍ଦ। ନବନିର୍ବାଚିତ ସର୍ଦ୍ଦାରଗଣ! ଗାଲେଶ୍ୱ ସର୍ଦ୍ଦାରଙ୍କର ଅଭିବ୍ୟକ୍ତି ଶୁଣିଲ ତ ? ଏ ରାଜ୍ୟର ସିଂହାସନ ପ୍ରତି କନ୍ଧଜାତିର କି ଅପୂର୍ବ ମମତା, କି ନିର୍ବିଶେଷ ରାଜଭକ୍ତି। ମୋର ବିଶ୍ୱାସ, ମହାରାଜ ଧନଞ୍ଜୟ ଭଞ୍ଜଙ୍କର ଗୌରବ ବର୍ଦ୍ଧନ ନିମିତ୍ତ ତୁମ୍ଭେମାନେ ଏହା ଅପେକ୍ଷା ଉଚ୍ଚ-ସ୍ତରକୁ ଯାଇ ପାରିବ।

( ଦ୍ୱାର ଦେଶରେ ମଞ୍ଜରୀକା ପ୍ରବେଶ କଲା। ପ୍ରହରୀ ବାଧାଦେଲା।)

ପ୍ରହରୀ। ମହାରାଜ, ରାଜନର୍ତ୍ତକୀ ମଞ୍ଜରୀକା ଦରବାର କକ୍ଷକୁ ଆସିବାକୁ ଚାହାନ୍ତି।

ଗୋବିନ୍ଦ। (ଆଶ୍ଚର୍ଯ୍ୟ ହୋଇ) ଦରବାର କକ୍ଷକୁ ରାଜନର୍ତ୍ତକୀ !! ଅଚ୍ଛା—ଆସିବାକୁ କହ।

( ପ୍ରହରୀ ପଥ ଛାଡିଦେଲା। ମଞ୍ଜରୀକା ପ୍ରବେଶ କଲେ। )

ରାଜନର୍ତ୍ତକୀ ! ଏ ସମୟରେ ଦରବାର କକ୍ଷକୁ ପ୍ରବେଶ କରିବାର ଉଦ୍ଦେଶ୍ୟ ?

ମଞ୍ଜରୀକା। ଉଦ୍ଦେଶ୍ୟ ? ଘୁମୁସର ରାଜ ସିଂହାସନ ନିକଟରେ ମୋର ଗୋଟାଏ ଗୁରୁତର ଅଭିଯୋଗ ଉପସ୍ଥାପିତ କରିବାକୁ, ମହାରାଜ।

ଗୋବିନ୍ଦ। ଅଭିଯୋଗ ? କାହା ବିରୁଦ୍ଧରେ ?

ମଞ୍ଜରୀକା। ରାଜକୁମାର ଧନ ଭଞ୍ଜଙ୍କ ବିରୁଦ୍ଧରେ।

ଧନଞ୍ଜୟ। (ଆଶ୍ଚର୍ଯ୍ୟେ) ମଞ୍ଜରୀକା ! ତୁମର ବୁଦ୍ଧିଭ୍ରଂଶ ଘଟି ନାହିଁ ତ ?

ମଞ୍ଜରୀକା। ମହାରାଜ, ଘୁମୁସର ରାଜବଂଶର ବେତନଭୋଗୀ ରାଜ-ନର୍ତ୍ତକୀ ମୁଁ। ରାଜକୁମାରଙ୍କ ବିରୁଦ୍ଧରେ ଅଭିଯୋଗ ଆଣି, ତାର ବିଚାର

ପ୍ରତ୍ୟାଶୀ ହେଲେ, ମୋର ବୁଦ୍ଧିଭ୍ରଂଶ ହେଲା ବୋଲି ଯଦି ମତ ପ୍ରକାଶ କରାଯାଏ, ତେବେ ମୋତେ ବୁଝିବାକୁ ହେବ ଯେ, ରାଜନର୍ତ୍ତକୀ ଜଣେ ନାରୀ ବୋଲି, ତାର ଅଭିଯୋଗକୁ ବିଚାର କରିବାକୁ ଘୁମୁସର ଦରବାର ଏକାନ୍ତ ନାରାଜ ।

ଗୋବିନ୍ଦ । ଉତ୍ତମ । ତୁମର ଅଭିଯୋଗକୁ ତୁମେ ପ୍ରକାଶ୍ୟ ଦରବାରରେ ଉପସ୍ଥାପିତ କରିପାର, ରାଜନର୍ତ୍ତକୀ !

ମଞ୍ଜରୀକା । ରାଜନର୍ତ୍ତକୀ ମଞ୍ଜରୀକା ସାଧାରଣ ବାରାଙ୍ଗନା ନୁହେଁ, ମହାରାଜ ! ତଥାପି କୁମାର ଘନଭଞ୍ଜ ଇତିମଧ୍ୟରେ ମୋ ଉପରେ ନାନାଦି ଅଶ୍ଲୀଳ ଅତ୍ୟାଚାର ଆରମ୍ଭ କରି ଦେଇଛନ୍ତି । ଏ ଅନ୍ୟାୟର ପ୍ରତିବାଦ କରିବାକୁ ଯାଇ, ମଞ୍ଜରୀକା ପୁରସ୍କାରରୂପେ ପାଇଛି, ବେତ୍ରାଘାତ । ଆଜି ସେହି ବେତ୍ରାଘାତର ଚିହ୍ନକୁ, ନିଜର ପୃଷ୍ଠଦେଶରେ ଧାରଣ କରି, ଆଜି ପ୍ରକାଶ୍ୟ ଦରବାର କକ୍ଷକୁ ଆସିଛି, ମହାରାଜ, ଏ ଅନ୍ୟାୟର ପ୍ରତିକାର ଭିକ୍ଷା ନିମନ୍ତେ ।

ଧନଞ୍ଜୟ । ରାଜକୁମାର ଘନଭଞ୍ଜ ତୁମ ପ୍ରତି ଏପରି ଅତ୍ୟାଚାର କେବେଠାରୁ ଆରମ୍ଭ କଲେଣି ?

ମଞ୍ଜରୀକା । ଆଜିକୁ ତିନି ଚାରି ଦିନ ତଳେ, ତାଙ୍କର ପ୍ରଥମ ଅଭିଯାନ ଆରମ୍ଭ ହୋଇଥିଲା । ଏଥିପାଇଁ ସେ ପୁଣି ଏ ଅଧୀନା ନିକଟରେ ପ୍ରକାଶ କରିଛନ୍ତି ଯେ, ମହାରାଜ ଧନଞ୍ଜୟ ଭଞ୍ଜଙ୍କ ଅନ୍ତେ, ଭବିଷ୍ୟତରେ ଏ ସିଂହାସନ ତାଙ୍କର । ସୁତରାଂ ଘୁମୁସର ରାଜ୍ୟର ଭବିଷ୍ୟତ ଭାଗ୍ୟବିଧାତା ହିସାବରେ, ମୁଁ ତାଙ୍କର ରକ୍ଷିତା ଗଣିକାରୂପେ, ତାଙ୍କର ଆଦେଶ ପାଳନ କରିବାକୁ ବାଧ୍ୟ । ତାଙ୍କର ଏ ପ୍ରସ୍ତାବରେ ମୁଁ ରାଜି ନ ହେଲେ,ମୋ ପ୍ରତି ଅଦ୍ଭୁତ ଅମାନୁଷିକ ଅତ୍ୟାଚାର କରାଯିବ । ମହାରାଜ, ମଞ୍ଜରୀକା ଗୋଟାଏ ସାଧାରଣ ଗଣିକାର ଜୀବିକା ଅବଲମ୍ବନ କରିବାକୁ ଏକାନ୍ତ ଅସମର୍ଥା ।

ଗୋବିନ୍ଦ । କୁମାର ଘନଭଞ୍ଜ, ଏ ଅଭିଯୋଗ ବିରୁଦ୍ଧରେ ତୁମର କିଛି କହିବାର ଅଛି ?

ଘନ । ମହାରାଜ ! ମୋ ବିରୁଦ୍ଧରେ ଏପରି ଅଭିଯୋଗ ଯେ ଆସିପାରେ, ଏହା ମୁଁ ଆଜି ଏହିଠାରେ ପ୍ରଥମ ଥର ଶୁଣି ପାରି, ମୋର ନିଜର କର୍ଣ୍ଣକୁ ମୁଁ ଅବିଶ୍ୱାସ କରୁଛି । ଏହା ଛଡ଼ା ଅଧିକ କିଛି ପ୍ରତିବାଦ କରିବାର ମୋର ନାହିଁ ।

ଗୋବିନ୍ଦ । ନିର୍ଲଜ୍ଜ ରାଜକୁମାର ! କେବେଠାରୁ ତୁମେ ଘୁମୁସର ରାଜ୍ୟର ଭବିଷ୍ୟତ୍ ରାଜା ହେବା ଲାଗି କଳ୍ପନା କରୁଛ ? ମୂର୍ଖ ! ଏହି ଇତରୋଚିତ କଳ୍ପନାକୁ ପ୍ରଚାର କରିବା ପୂର୍ବରୁ ଆତ୍ମହତ୍ୟା କରିବା ତୁମର ଉଚିତ ନ ଥିଲା କି ?

ଘନ । ମହାରାଜ ! ନିର୍ଦ୍ଦୋଷିକୁ ଏପରି ଅପମାନ ଦେବା ପୂର୍ବରୁ ଥରେ ବିଚାର କରି ଦେଖନ୍ତୁ, ଏହା ବାସ୍ତବିକ ସତ୍ୟ କି ଗୋଟାଏ ମିଥ୍ୟା ଷଡ଼ଯନ୍ତ୍ର ? ତଥାପି, ନିରପରାଧ ଘନଭଞ୍ଜଙ୍କୁ ଶାସ୍ତି ଦେବା ଯଦି ମହାରାଜାଙ୍କର ନିତାନ୍ତ ଅଭିପ୍ରେତ, ତେବେ ଏହି ମୁହୂର୍ତ୍ତରେ, ରାଜାଦେଶ ପାଇବା ପୂର୍ବରୁ, ଘନଭଞ୍ଜ ସ୍ୱଇଚ୍ଛାରେ ତାର ଆତ୍ମଦାନ କରିବାକୁ କୁଣ୍ଠିତ ହେବ ନାହିଁ ।

ଗୋବିନ୍ଦ । ଧୃଷ୍ଟକର ଘନଭଞ୍ଜ ! ରାଜନର୍ତ୍ତକୀର ସାଧାରଣ ଅଭିଯୋଗକୁ ମୁଁ ବିଶ୍ୱାସ କରି ନ ଥାନ୍ତି । କିନ୍ତୁ ତୁମର ଭବିଷ୍ୟତ୍ ରାଜତ୍ୱର କଳ୍ପନା କଥାଟି, ମୋତେ ଆଜି ନିଃସନ୍ଦେହ କରି ଦେଇଛି ଯେ, ଭବିଷ୍ୟଦ୍‌ବାଣୀ ଶୁଣିଲା ପରଠାରୁ, ତୁମର ଏହି ସିଂହାସନର ସ୍ୱପ୍ନ ଦେଖିବାଟା ଅତି ଅସାଧାରଣଭାବେ ପ୍ରାବଲ୍ୟ ହୋଇ ପଡ଼ିଛି, ଯାହାର ଫଳରେ ତୁମେ ଆଜି ଗୋଟାଏ ହୀନଚରିତ୍ର ପ୍ରଜାଠାରୁ ମଧ୍ୟ ଅଧମ ସ୍ତରକୁ ଚାଲି ଆସିଛ । ତୁମର କଠୋର ଶାସ୍ତି ପ୍ରୟୋଜନ ।

ଗଙ୍ଗା । ମହାରାଜ ! ଘନଭଞ୍ଜଙ୍କୁ ଶାସ୍ତି ଦେବା ପୂର୍ବରୁ ମୋର ଗୋଟାଏ ସାମାନ୍ୟ ନିବେଦନ ଅଛି ।

ଗୋବିନ୍ଦ । ପ୍ରକାଶ କର, କୁମାରୀ ।

ଗଙ୍ଗା । ମୋର ମନେ ହୁଏ, ଏହି ଅଭିଯୋଗ ମିଥ୍ୟା । ଘନଭଞ୍ଜଙ୍କର ମୁଖର ଭାବଭଙ୍ଗୀକୁ ନିରୀକ୍ଷଣ କରନ୍ତୁ ମହାରାଜ ! କ୍ଷଣେ ଅବସ୍ଥା କୁ

ଦୋଷୀର ମୁଖରେ ଏପରି ସାରଲ୍ୟ, ଏପରି ତେଜସ୍ୱିତା, ଏପରି ନିର୍ଲିପ୍ତ-ଭାବ ମୂର୍ତ୍ତି ଉଠିବା ଅସମ୍ଭବ । ସୁତରାଂ ଘନଭଞ୍ଜଙ୍କୁ ଶାସ୍ତି ଦେବା ପୂର୍ବରୁ, ମଞ୍ଜରୀକା ତାଙ୍କର ଅଭିଯୋଗର ସତ୍ୟତା ସମ୍ବନ୍ଧେ କୌଣସି ପ୍ରମାଣ ଦେଖାଇ ପାରିବେ କି ?

ମଞ୍ଜରୀକା । ରାଜକୁମାର ଘନଭଞ୍ଜଙ୍କ ବିରୁଦ୍ଧରେ ସାକ୍ଷ୍ୟ ପ୍ରମାଣ ସଂଗ୍ରହ କରିବା, ଦୁଷ୍କର ବ୍ୟାପାର । ତେବେ ମୋର ପୃଷ୍ଠଦେଶରେ ଥିବା କାଲି ରାତିର ବେତ୍ରାଘାତ ଚିହ୍ନ, ଏ ପର୍ଯ୍ୟନ୍ତ ମୋର ପ୍ରତ୍ୟକ୍ଷ ପ୍ରମାଣରୂପେ ରହିଛି । ହଁ, ଭୁଲି ଯାଇଥିଲି, ରାଜକୁମାରଙ୍କ ସହିତ ଦନ୍ତା ବୋଲି ଜଣେ କେହି ବନ୍ଧୁ ମଧ୍ୟ ଯାଇଥିଲେ । ତାଙ୍କୁ ଡକାଯାଉ । ସେ ଏ ବିଷୟରେ ମଧ୍ୟ କିଛି ପ୍ରମାଣ ଦେଇ ପାରନ୍ତି ।

ଗଙ୍ଗା । (ଅତ୍ମଗତ) ଆମର ବିଶ୍ୱସ୍ତ ପରିଚାରକ ଦନ୍ତା ! !

ଗୋବିନ୍ଦ । ପ୍ରହରୀ—ପରିଚାରକ ଦନ୍ତା ଦସ୍ୟୁ । ( ଇଙ୍ଗିତ ପାଇ ପ୍ରହରୀ ଚାଲିଗଲା । )

ମଞ୍ଜରୀକା । ସେହି ଦନ୍ତା କି ରାଜକୁମାରଙ୍କ ପରିଚାରକ ? ତେବେ, ମୋର ଭୟ ହୁଏ, ତାଙ୍କଠାରୁ ସତ୍ୟ ପ୍ରକାଶର ଆଶା ବୋଧହୁଏ ବିଫଳ ହେବ ।

ମହାମନ୍ତ୍ରୀ । ସେହି ପରିଚାରକର ନାମ ତୁମେ କିପରି ଜାଣିଲ ?

ମଞ୍ଜରୀକା । କୁମାର ଘନଭଞ୍ଜ ମଧ୍ୟେ ମଧ୍ୟେ ତାଙ୍କୁ ସମ୍ବୋଧନ କରି ତାଙ୍କର ନାମ ଉଚ୍ଚାରଣ କରୁଥାନ୍ତି । ତାହାହିଁ ଶୁଣିଥିଲି ମାତ୍ର ।

( ପ୍ରହରୀ ସହିତ ଦନ୍ତା ଦସ୍ୟୁର ପ୍ରବେଶ ଓ ଅଭିବାଦନ । )

ଗୋବିନ୍ଦ । ଦନ୍ତା, ଆଜନ୍ମ ରାଜଅନ୍ନରେ ପ୍ରତିପାଳିତ ବିଶ୍ୱସ୍ତ ପରିଚାରକ ତୁମେ । ସତ୍ୟକହ, କାଲି କୁମାର ଘନଭଞ୍ଜଙ୍କ ସହିତ ତୁମେ ମଞ୍ଜରୀକାଙ୍କ ଗୃହକୁ ଯାଇଥିଲ ?

ଦନ୍ତା । ଛମୁ—(ଭୟରେ) ମୁଁ କିଛି କହି ପାରିବି ନାହିଁ ।

ଗୋବିନ୍ଦ । (ଗର୍ଜନ କରି) ସତ୍ୟ କହ ଦନ୍ତା, ପ୍ରକୃତ ଘଟଣା କଣ । ନୋଚେତ୍ ଏହି ମୁହୂର୍ତ୍ତରେ ତୁମ୍ଭଙ୍କୁ ବନ୍ଦୀ କରାଯିବ ।

ଦନ୍ତା । ପ୍ରଭୁ—ମୋର କୌଣସି ଦୋଷ ନାହିଁ । କାଲି ସନ୍ଧ୍ୟାରେ କୁମାର ଧନଭଞ୍ଜଙ୍କ ଆଦେଶ ଅନୁସାରେ ତାଙ୍କ ସହିତ ମୁଁ ଏହି ନର୍ତ୍ତକୀଙ୍କର ଗୃହକୁ ଯାଇଥିଲି । ମୁଁ ବହିର୍ଦ୍ଦେଶରେ ଅପେକ୍ଷା କଲି, କୁମାରଙ୍କ ନିର୍ଦ୍ଦେଶ ଅନୁସାରେ । କୁମାର ଭିତରକୁ ଗଲେ । ଅନେକ ବେଳ ଯାଏ ଅପେକ୍ଷା କରି ରହିଲି । ମଧ୍ୟେ ମଧ୍ୟେ କୁମାରଙ୍କ କ୍ରୋଧଦୀପ୍ତ ସ୍ୱର ଓ ଗୋଟାଏ ନାରୀ କଣ୍ଠର କ୍ଷୀଣ କ୍ରନ୍ଦନ ମୋତେ ଶୁଣା ଯାଉଥାଏ । ତା ପର ଯେତେବେଳେ କୁମାର ଅତି ଉତ୍ତେଜିତ ଭାବରେ, ସେହି ଗୃହରୁ ବାହାରକୁ ଆସିଲେ, ମୁଁ ତାଙ୍କୁ ବିନୀତ ଭାବରେ ଉତ୍ତେଜନାର କାରଣ ପଚାରିଥିଲି । ସେ କିଛି କହିଲେ ନାହିଁ । କେବଳ ଟିକିଏ ବିରକ୍ତ ହୋଇ କହିଲେ "ଗୋଟାଏ ରାଜନର୍ତ୍ତକୀର ଏତେଦୂର ସ୍ପର୍ଦ୍ଧା ଯେ, ସେ ଏ ରାଜ୍ୟର ଭବିଷ୍ୟତ୍ ରାଜାକୁ ଅବଜ୍ଞା କରିପାରେ । ଅଚ୍ଛା ଦେଖାଯିବ ।" ଏହା ଶୁଣି, ମୁଁ ଆଉ କିଛି ନ କହି, ନୀରବରେ କୁମାରଙ୍କର ଅନୁସରଣ କଲି । ଏହା ବ୍ୟତୀତ ମୁଁ ଆଉ କିଛି ଜାଣେ ନା, ମହାରାଜ ।

ଗୋବିନ୍ଦ । ଅଚ୍ଛା, ବର୍ତ୍ତମାନ ତୁମେ ଯାଇପାର, ଦନ୍ତା । (ଦନ୍ତାର ଅଭିବାଦନାନ୍ତେ ପ୍ରସ୍ଥାନ) ଶୁଣିଲ କୁମାର ଗଙ୍ଗାଧର, ଏ ପ୍ରମାଣ ପାଇ ସାରିବା ପରେ, ମୁଁ କଣ ବିଶ୍ୱାସ କରିବି, କହି ପାରିବ ?

ଗଙ୍ଗା । (ନିରୁତ୍ତର ରହିଲେ ।)

[ଏହି ସମୟରେ ମଣ୍ଡାଦେବୀ ଦରବାର କକ୍ଷକୁ ପ୍ରବେଶ କଲେ]

ଧନ । (ଆଶ୍ଚର୍ଯ୍ୟେ) ରାଣି ! ରାଜଦରବାର ମଧ୍ୟକୁ ତୁମର ଏପରିଭାବରେ ହଠାତ୍ ପ୍ରବେଶ କରିବାର ଅର୍ଥ ? ଏଟା ଯେ ରାଜ ଅନ୍ତଃପୁର ନୁହେଁ, ଏ ଧାରଣା କଣ ତୁମର ନାହିଁ ?

ମଣ୍ଡା । (ବେଦନ ସ୍ୱରେ) ମହାରାଜ, ମୁଁ ଏ ରାଜ୍ୟରୁ ବିଦାୟ ନେବାକୁ ଯୁମ୍ଭସର ଦରବାରର ଅନୁମତି ଭିକ୍ଷା କରିବାକୁ ଆସିଛି । ଯେଉଁଠାରେ ମୋର ଏକମାତ୍ର ପୁତ୍ର ନୀଳକଣ୍ଠର ଜୀବନ ବିପନ୍ନ, ସେଠାରେ ରାଜରାଣୀ ହେଲେ ସୁଦ୍ଧା, ମୋର ତିଷ୍ଟି ରହିବା ଅସମ୍ଭବ ।

ଗୋବିନ୍ଦ । (ସିଂହାସନରୁ ଉଠିଆସି) କି ବ୍ୟାପାର ମହାରାଣି ? ଆଶ୍ଚର୍ଯ୍ୟ ! ଆପଣଙ୍କର ଚକ୍ଷୁରେ ଯେ ଅଶ୍ରୁ । ମୁଁ ଯେ କିଛି ବୁଝିପାରୁ ନାହିଁ । କୁମାର ନୀଳକଣ୍ଠଙ୍କର ଜୀବନ ବିପନ୍ନ, କିପରି, କାହିଁକି ?

ଧନ । କୁମାର ନୀଳକଣ୍ଠ । ତୁମର କଣ ଅଭିଯୋଗ ଅଛି ? କି କାରଣରୁ ତୁମର ଜୀବନ ବିପନ୍ନ ?

ନୀଳ । ମୁଁ ତ କିଛି ଜାଣେ ନାହିଁ ମହାରାଜ ! ଏ ଯେ ଏକ ଅଦ୍ଭୁତ ସମ୍ବାଦ !

ଗୋବିନ୍ଦ । କୁହ ମହାରାଣି ! ବିଳମ୍ବ କର ନାହିଁ । କାହା ଯୋଗୁଁ ଧୁମୁସର ରାଣୀଙ୍କର ଚକ୍ଷୁ ଆଜି ଅଶ୍ରୁଭାରାକ୍ରାନ୍ତ । ଆଠଗଡ଼ରାଜା ଗୋବିନ୍ଦଭଞ୍ଜ, ନିଜର ସମସ୍ତ ଶକ୍ତି ବିନିମୟରେ ସେ କାରଣର ମୂଳୋତ୍ପାଟନ କରିବ ।

ମଣ୍ଡା । ଆପଣଙ୍କ ପୁତ୍ର ଘନଭଞ୍ଜହିଁ ମୋର ଅଶାନ୍ତିର ମୂଳକାରଣ, ଆଠଗଡ଼ରାଜ ! ନୀଳକଣ୍ଠଙ୍କୁ ବିଷ ପ୍ରୟୋଗ କରି ହତ୍ୟା କରିବା ଲାଗି, କାଲି କୁମାର ଘନଭଞ୍ଜ ରାନ୍ଧୁଣୀ ଚମ୍ପାନାମୀଙ୍କୁ ଯଥେଷ୍ଟ ଉତ୍କୋଚ ଦାନ କରିଛନ୍ତି, ଆଜି ଚମ୍ପା ଭୟରେ ସେ ସବୁ ମୋ ଆଗରେ ପ୍ରକାଶ କରିଛି । (ବେଦନ ସ୍ୱରରେ) ଓଃ—ମୋର ଏକମାତ୍ର ପୁତ୍ର ନୀଳକଣ୍ଠଙ୍କ ବିରୁଦ୍ଧରେ ଯେଉଁଠାରେ ଏତେ ବଡ଼ ଷଡ଼ଯନ୍ତ୍ର କରାଯାଇ ପାରେ, ସେଠାରେ ମୋର ଜୀବନ ମଧ୍ୟ ବିପନ୍ନ, ମହାରାଜ ! ଆପଣ ଏହା ଅବିଶ୍ୱାସ କରି ପାରନ୍ତି କିନ୍ତୁ ମୁଁ ଦୃଢ଼ରୂପେ ବୁଝିଛି, ଏହା ଚରମ ସତ୍ୟ । ଘନଭଞ୍ଜଙ୍କର ଏହି ଷଡ଼ଯନ୍ତ୍ର ଯୋଗୁଁ ନୀଳକଣ୍ଠଙ୍କର ଜୀବନ ଉପରେ ମୋର ଆଉ ଭରସା ନାହିଁ । ସୁତରାଂ ମୋତେ ଓ କୁମାର ନୀଳକଣ୍ଠଙ୍କୁ ମୁକ୍ତି ଦିଅନ୍ତୁ, ମହାରାଜ ! ଏ କୁଲଙ୍ଗ ଦୁର୍ଗରେ ଆମର ଆଉ ସ୍ଥାନ ନାହିଁ ।

ଗୋବିନ୍ଦ । ଓଃ ଏତେଦୂର ! ଘନଭଞ୍ଜ । ତୁମର ସିଂହାସନର ନିଶା ଯେ ଇତିମଧ୍ୟରେ ଅନେକ ଦୂରକୁ ଅଗ୍ରସର ହୋଇ ଯାଇଛି, ଦେଖୁଛି ! ମହାମନ୍ତ୍ରୀ—ନେଇ ଯାଆନ୍ତୁ, ଏହି ମୁହୂର୍ତ୍ତରେ ଏହି ବର୍ବରକୁ ହତ୍ୟା କରି, ତାହାର ଛିନ୍ନ ମୁଣ୍ଡ ଆଣି ରାଣୀଙ୍କର ପଦତଳେ ଉପସ୍ଥାପିତ କରନ୍ତୁ । ଶାନ୍ତି

ହେଉନ୍ତୁ,ମହାରାଣି ! ମୁଁ ସମସ୍ତ ଚକ୍ରାନ୍ତର ମୂଳୋତ୍ପାଟନ ଏହି ମୁହୂର୍ତ୍ତରେ କରି ଦେଉଛି । ଓଃ, ଏ ଯେ ଅଭିଯୋଗ ଉପରେ ଅଭିଯୋଗ ! ଏଡ଼େ ବଡ଼ ଅପଦାର୍ଥର ପିତା ଯେ ମୁହିଁ ହତଭାଗ୍ୟ, ଏହା ଭାବିଲାବେଳକୁ ଲଜ୍ଜାରେ ମୋର ମସ୍ତକ ଅବନତ ହୋଇ ଯାଉଛି । ମହାମନ୍ତ୍ରି ! ନେଇ ଯାଆନ୍ତୁ, ଧନଭଞ୍ଜର ପ୍ରାଣଦଣ୍ଡ ଆଦେଶ ଏହି ମୁହୂର୍ତ୍ତରେ ଯେପରି ପ୍ରତିପାଳିତ ହୁଏ ।

ରାଜଗୁରୁ । ତତ୍‌ପୂର୍ବରୁ ଥରେ ଚମ୍ପାକାଶାଙ୍କୁ ପଚାରିଯା କରାଯାଉ, ମହାରାଜ !

ରୋହିଦ । ଆଉ ପ୍ରମାଣ ପରୀକ୍ଷାର କୌଣସି ପ୍ରୟୋଜନ ନାହିଁ, ରାଜଗୁରୁ ! ହୁଏତ ଦଳାର ସାକ୍ଷ୍ୟ ଭିନ୍ନ, ଚମ୍ପାର ସାକ୍ଷ୍ୟ ଶୁଣିଲେ ମୋର ଧୈର୍ଯ୍ୟଚ୍ୟୁତ ଘଟିପାରେ । ତା ପର, ଘୁମୁସରର ରାଜରାଣୀ ମଣ୍ଡା ଦେବୀଙ୍କର ଚକ୍ଷୁରେ ଅଶ୍ରୁ । ଏହା ଅପେକ୍ଷା ବେଶୀ ପ୍ରତ୍ୟକ୍ଷ ପ୍ରମାଣ ଆଉ କଅଣ ଦରକାର, ରାଜଗୁରୁ ? ମହାମନ୍ତ୍ରି ! ଅଣାକର୍ଣ୍ଣେ, ଥାଠରାଜାଙ୍କର ଆଦେଶ ଶୀଘ୍ର କାର୍ଯ୍ୟରେ ପରିଣତ କରାଯିବ ।

ଧନ । ଆସନ୍ତୁ ମହାମନ୍ତ୍ରି ! ସଙ୍କୋଚ କାହିଁକି ? ରାଜ୍ୟର ଏତେ ଗୁଡ଼ାଏ କପୋଳକଳ୍ପିତ ଅଭିଯୋଗର ତରବାରୀ ଯେତେବେଳେ ମୋର ନିରୀହ ମସ୍ତକ ଉପରେ, ସାମାନ୍ୟ ଘାତକର ଆଉ ଗୋଟାଏ ତରବାରିକୁ ସାଦରେ ନିମନ୍ତ୍ରଣ କରି ଆଣିବା ବ୍ୟତୀତ, ଧନଭଞ୍ଜର ତ ଅନ୍ୟ କୌଣସି ଗତି ନାହିଁ । ରାଜାଙ୍କର ଆଦେଶ ପାଳନ କରି, ନିଜର କର୍ତ୍ତବ୍ୟ କରନ୍ତୁ, ମହାମନ୍ତ୍ରି ! ବିଦାୟ, ମହାରାଜ ! ମୋ ଭଳି ଜଣେ ନାରକୀ ପକ୍ଷରେ, ଆପଣଙ୍କର ଚରଣ ସ୍ପର୍ଶ କରିବାର ସ୍ପର୍ଦ୍ଧା ରଖିବା ଉଚିତ ନୁହେଁ, ମୁଁ ହାସ୍ୟମୁଖରେ ରାଜାଦେଶ ପାଳନ କରିବା ପାଇଁ, ଘାତକ ଆଗରେ ନିଜର ଶିର ଦେଖାଇ ଦେବି । କିନ୍ତୁ ମୃତ୍ୟୁ ପୂର୍ବରୁ ସ୍ପଷ୍ଟ ମୁଁ କହି ଯାଉଛି-ଧନଭଞ୍ଜ ନିର୍ଦ୍ଦୋଷ, ନିରପରାଧ । ଗୁଲନ୍ତୁ, ମହାମନ୍ତ୍ରି, ବର୍ତ୍ତମାନ ମୋର ଆଉ କୌଣସି ଦୁଃଖ ନାହିଁ । ଘୁମୁସରର ମଙ୍ଗଳ ଲାଗି ବୋଧହୁଏ ମୋ ଭଳି ଗୋଟାଏ ବଳିର ଆଜି ପ୍ରୟୋଜନ ହୋଇ ପଡ଼ିଛି । (ମହାମନ୍ତ୍ରୀ ଧନଭଞ୍ଜଙ୍କୁ ନେଇ ଯିବାକୁ ଅଗ୍ରସର ହେଲେ । )

ଧନ । (ଅଗରୁ ବାହାର ଆସି) ଟିକିଏ ଅପେକ୍ଷା କରନ୍ତୁ, ମହାମନ୍ତ୍ରି ! ମୁଁ ମନେ କରେଁ, ମୋର ଏଠାରେ ପରାମର୍ଶ ଦେବାର ଅତ୍ୟନ୍ତ ପ୍ରୟୋଜନ । ଆଜ୍ଞା ରାଜେ, ରାଜକୁମାର ଘନଭଞ୍ଜଙ୍କ ପ୍ରାଣଦଣ୍ଡର ଆଦେଶ ରହିତ କରାଯାଉ ଏବଂ ତା' ପରିବର୍ତ୍ତରେ, ତାଙ୍କୁ ଏ ରାଜ୍ୟରୁ ନିର୍ବାସିତ କରାଯାଉ । ମୋ ବିବେଚନାରେ, ଏହା ବୋଧହୁଏ ତାଙ୍କ ପ୍ରତି ଉଚିତ ଶାସ୍ତି ହେବ ।

ମହାମନ୍ତ୍ରୀ । ଏହି ପ୍ରସ୍ତାବକୁ ମୁଁ ମଧ୍ୟ ଅନ୍ତରର ସହିତ ଅନୁମୋଦନ କରୁଛି; ମହାରାଜ ! ଆଜ୍ଞା ରାଜେ । ଦୟା କରି ପ୍ରାଣଦଣ୍ଡର ଆଦେଶ ପ୍ରତ୍ୟାହାର କରନ୍ତୁ ।

ଗୋବିନ୍ଦ । କିନ୍ତୁ ମହାମନ୍ତ୍ରି, ଘୁମୁସରର ରାଣୀ ମଣ୍ଡାଦେବୀ ସେଥିରେ ସନ୍ତୁଷ୍ଟ ହେବେ କି ? ସେ ଓ ତାଙ୍କର ସନ୍ତାନର ଜୀବନ ଯେ ବିପନ୍ନ !

ମଣ୍ଡା । ଆଜ୍ଞା ରାଜେ, ମୁଁ ନାରୀ ପୁଣି ଜନନୀ । ସୁତରାଂ ଜନନୀ କଦାପି କୌଣସି ସନ୍ତାନର ପ୍ରାଣଦଣ୍ଡାଜ୍ଞାକୁ ଗୌରବରେ ଅନୁମୋଦନ କରି ନ ପାରେ ।

ଗୋବିନ୍ଦ । ବେଶ୍, ତେବେ ତାହାହିଁ ହେଉ । ଘନଭଞ୍ଜ, ଯାଅ, ଏହି ମୁହୂର୍ତ୍ତରେ ତୁମ୍ଭଙ୍କୁ ଘୁମୁସର ରାଜ୍ୟରୁ ନିର୍ବାସିତ କରାଗଲା । କାଲି ସୂର୍ଯ୍ୟୋଦୟ ପୂର୍ବରୁ ତୁମ୍ଭଙ୍କୁ ଆଉ ଘୁମୁସର ରାଜ୍ୟର ସୀମା ଭିତରେ କେହି ଯେପରି ଦେଖି ପାରିବେ ନାହିଁ । ଏ ଆଦେଶର ଅବମାନନା କଲେ, ତୁମର ପ୍ରାଣଦଣ୍ଡ ନିଶ୍ଚିତ । ତୁମ ବିରୁଦ୍ଧରେ ଏତେ ଗୁରୁତର ଅଭିଯୋଗ ଥିବା ସତ୍ତ୍ୱେ ତୁମେ ଯେ ପ୍ରାଣଦଣ୍ଡରୁ ଅବ୍ୟାହତି ପାଇ ପାରିଲ, ଏଥିଲାଗି ମହାରାଜ ଧନଞ୍ଜୟ ଭଞ୍ଜଙ୍କର ମହାନୁଭବତାହିଁ ଦାୟୀ । ଏ ରାଜ୍ୟ ତ୍ୟାଗ କରିବା ପୂର୍ବରୁ, ତାଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରିବା ତୁମର ଉଚିତ ।

ଘନ । ମହାରାଜାଙ୍କର ଅପରିସୀମ ଦୟା ଓ ଅନନ୍ତ ସହାନୁଭୂତିକୁ ଘନଭଞ୍ଜ ତାର ନିରୁଦ୍ଦେଶଯାତ୍ରାର ପାଥେୟ ସ୍ୱରୂପ ଗ୍ରହଣ କରୁଛି, ମହାରାଜ । (ଦ୍ରୁତ ପ୍ରସ୍ଥାନ ।)

ଗୋବିନ୍ଦ । ଯାଅ, ଗୁପ୍ତଚର, ଘନଭଞ୍ଜଙ୍କର ଗତିବିଧି ପର୍ଯ୍ୟବେକ୍ଷଣ କର । କାଲି ସୂର୍ଯ୍ୟୋଦୟ ପୂର୍ବରୁ ଯେ ଘନଭଞ୍ଜ ଏ ରାଜ୍ୟର ସୀମା ପାର

ହୋଇ ଯାଇ ପାରିଛ, ଏ ସମ୍ବାଦ ମୁଁ ତୁମଠାରୁ ପାଇବାର ପ୍ରତ୍ୟାଶା ରଖିଲି । (ଅଭିବାଦନାନ୍ତେ ଗୁପ୍ତଚରର ପ୍ରସ୍ଥାନ) ଆଉ ନର୍ତ୍ତକୀ ମଞ୍ଜରୀକା, ମୋର ବିଶ୍ୱାସ, ତୁମେ ତୁମର ଅଭିଯୋଗର ବିଚାରରେ ବର୍ତ୍ତମାନ ବୋଧହୁଏ ସନ୍ତୁଷ୍ଟ ।

ମଞ୍ଜରୀକା । ଆଠଗଡ଼ରାଜାଙ୍କର ଜୟ ହେଉ, କିନ୍ତୁ ମହାରାଜ ! ରାଜ-କୁମାରଙ୍କର ଶାସ୍ତି ବୋଧହୁଏ ଖୁବ୍ ଅଧିକ ହୋଇ ପଡ଼ିଲା ।

ଗୋବିନ୍ଦ । ଅନଧିକାର ଚର୍ଚ୍ଚା କରନା, ରାଜନର୍ତ୍ତକୀ ! ଦୋଷୀର ଶାସ୍ତି କଅଣ ଓ କପରି ହେବା ଉଚିତ, ତାହା ଘୁମୁସର ରାଜାଙ୍କର ବିଚାର୍ଯ୍ୟ, ରାଜନର୍ତ୍ତକୀଙ୍କର ନୁହେଁ ।

ମଞ୍ଜରୀକା । ଅପରାଧ କ୍ଷମା କରିବେ, ମହାରାଜ !

ଗୋବିନ୍ଦ । ତୁମେ ବର୍ତ୍ତମାନ ଦରବାର କକ୍ଷ ତ୍ୟାଗ କରିପାର । (ମଞ୍ଜରୀକା ଅଭିବାଦନାନ୍ତେ ପ୍ରସ୍ଥାନ କଲେ ।)

ମନ୍ତ୍ରୀ । କୁମାର ଧନଞ୍ଜୟଙ୍କ ବିରୁଦ୍ଧରେ, ରାଜନର୍ତ୍ତକୀଙ୍କର କଣ କିଛି ଅଭିଯୋଗ ଥିଲା ?

ଗୋବିନ୍ଦ । ହଁ ମହାରାଣୀ ! କିନ୍ତୁ ମୋ ଅଧୀନସ୍ଥଙ୍କର ଅଭିଯୋଗର ସମ୍ବାଦ ମନ୍ତ୍ରୀଦେବୀଙ୍କ ପକ୍ଷରେ ନ ଶୁଣିବାହିଁ ଉଚିତ । ମହାମନ୍ତ୍ରି ! ଆଜିକାର ଦରବାର ଏହିଠାରେ ଶେଷ ହେଲା । ବର୍ତ୍ତମାନ, ଆପଣମାନେ ସମସ୍ତେ ଏ ସ୍ଥାନ ପରିତ୍ୟାଗ କରି ପାରନ୍ତି ।

[ ଏ ଆଦେଶମାନେ ରାଜକୁମାରଗଣ ଓ ମନ୍ତ୍ରୀରାଣୀ ଏକ ଦିଗରେ ଓ ଅନ୍ୟମାନେ ଅନ୍ୟ ଦିଗରେ ଚାଲିଗଲେ । ସର୍ବଶେଷରେ ଧୀରେ ଧୀରେ ଆଠଗଡ଼ରାଜା ଚାଲି ଯାଉଥିବା ସମୟରେ, ପଶ୍ଚାତରୁ ଧନଞ୍ଜୟ ଭଞ୍ଜ ଡାକିଲେ । ]

ଧନ । ଗୋବିନ୍ଦ !

ଗୋବିନ୍ଦ । ଆଦେଶ କରନ୍ତୁ !

ଧନ । କିଛି ବୁଝି ପାରିଲ, ଆଜିକାର ଏ ଘଟଣା ସ୍ରୋତରୁ ?

ଗୋବିନ୍ଦ । ନା ମହାରାଜ, ମୁଁ କିଛି ବୁଝି ପାରୁନାହିଁ । କିନ୍ତୁ ଘନଭଞ୍ଜ ମୋର ପୁତ୍ର । ମୁଁ ତାକୁ ପିଲାଦିନରୁ ଜାଣେ । ଏତେଦୂର ଅଧଃପତନ ତାର କିପରି ଯେ ହେଲା, ମୁଁ ଏହା ଚିନ୍ତା କରିବାକୁ ଅବସର ସୁଦ୍ଧା ପାଇଲି ନାହିଁ ।

ଧନ । କିଏ କୁହେ, କୁମାର ଘନଭଞ୍ଜର ଅଧଃପତନ ହୋଇଛି ? ସରଳ, ଉଦାର, ରାଜଭକ୍ତ ଯୁବକ ସେ । ସେ ଚରିତ୍ରହୀନ ନୁହେଁ, ଗୋବିନ୍ଦ ! ମୁଁ ଅନୁମାନ କରି ପାରୁଛି, ଭବିଷ୍ୟଦ୍‌ବାଣୀ ଶୁଣିଲା ପରଠାରୁ କୁମାର ଘନଭଞ୍ଜଙ୍କ ବିରୁଦ୍ଧରେ ଗୋଟାଏ ଗଭୀର ଷଡ଼ଯନ୍ତ୍ରର ସୂତ୍ରପାତ କରା ଯାଉଥିଲା । ଆଜିର ଘଟଣା ବୋଧହୁଏ ତାର ଶେଷ ପରିଣତି ।

ଗୋବିନ୍ଦ । ତେବେ ମହାରାଜ ! ମୋର ବିଚାରରେ କଣ କିଛି ତ୍ରୁଟି ରହିଗଲା ? ବାସ୍ତବିକ କି ଘନଭଞ୍ଜ ଉପରେ ଅନ୍ୟାୟ ଦଣ୍ଡାଦେଶ ଦିଆଗଲା ?

ଧନ । ଧୈର୍ଯ୍ୟଧର ଆଚାର୍ଯ୍ୟ ! ମୁଁ ଜାଣେ, ନିୟତିର ଗତିପଥକୁ ରୁଦ୍ଧ କରିବା ଲାଗି, କୁଲାଡ଼ ଦୁର୍ଗ ମଧ୍ୟରେ ଅନେକ କିଛି ବନ୍ଦୋବସ୍ତ ଆୟୋଜନ କରା ଯାଇଛି । ସୁତରାଂ କୁମର ପ୍ରାଣଦଣ୍ଡର ଆଦେଶଟା ଘନଭଞ୍ଜଙ୍କ ପ୍ରତି ନିର୍ମମ ଅବିଚାର ହୋଇ ଥାଆନ୍ତା ନିଶ୍ଚୟ । ତେଣୁ,—ବୋଧହୁଏ ନିୟତିର ନିର୍ଦ୍ଦେଶରେ, ଆଜି ଘନଭଞ୍ଜଙ୍କର ନିର୍ବାସନ ବାଞ୍ଛନୀୟ ହୋଇଛି । ଗୋବିନ୍ଦ ! କୁମାର ଘନଭଞ୍ଜ ଏ କଳୁଷିତ ସଂସର୍ଗରେ ନ ରୁହନ୍ତୁ, ଏହାହିଁ ମୋର କଳ୍ପନା ଥିଲା । ସୁତରାଂ ଆଜି ତାର ନିର୍ବାସନରେ ତାର ଜୀବନ ସମ୍ବନ୍ଧରେ ମୁଁ ଏକପ୍ରକାର ନିଶ୍ଚିନ୍ତ ।

( ଅପର ଦିଗରୁ ଉପେନ୍ଦ୍ରଙ୍କର ପ୍ରବେଶ )

ଉପେନ୍ଦ୍ର । ପିତାମହ, ପିତୃବ୍ୟ ଘନଭଞ୍ଜଙ୍କର ନିର୍ବାସନ ଦଣ୍ଡଟା କଣ ଘୁମୁସର ଦରବାରର ପ୍ରକୃତ ବିଚାର ନା ବିଚାରର ଅଭିନୟ ?

ଧନ । କାହିଁକି ନୟନମଣି ? ବିଚାର ଉପରେ କବିଙ୍କର ଏପରି ଶ୍ଳେଷାତ୍ମକ ଉଦ୍ଦେଶ୍ୟ ?

ଉପେନ୍ଦ୍ର । ପିତାମହ ! ଜଣେ ନିରପରାଧ ରାଜକୁମାରଙ୍କର ଦୋଷର ବିଚାର ଯେ ଏତେ ଅଳ୍ପ ସମୟରେ କିପରି ହୋଇ ପାରିଲା, ତାହାହିଁ ଭାବି ମୁଁ ଆଶ୍ଚର୍ଯ୍ୟ ହେଉଛି । ଏ ଯେ ଗୋଟାଏ ବିରାଟ ଚକ୍ରାନ୍ତ !

ଧନି । ସେ କଥା ମୁଁ ଜାଣେ, କେନାମଣି । କିନ୍ତୁ ଏ ଯେ ରାଜନୀତି । ଏଥିରେ ତୁମଭଳି କବିଙ୍କର ଭାବପ୍ରବଣତାର ସ୍ଥାନ ନାହିଁ । ଅଛି କେବଳ, ନିଷ୍ଠୁରତା, କଠୋରତା ।

ଗୋବିନ୍ଦ । ଘନଭଞ୍ଜଙ୍କ ପ୍ରତି ଅନ୍ୟାୟ ଅବିଚାର କରାଯାଇଛି, ଏହା କି ତୁମର ସୁନିଶ୍ଚିତ ଅଭିମତ, କେନାମଣି ?

ଉପେନ୍ଦ୍ର । ଘୁମୁସର ରାଜଦରବାରର ବିଚାର ଉପରେ ଆଜି ଏପରି ଅବାଞ୍ଛିତ ମନ୍ତବ୍ୟ ପ୍ରକାଶ କରିବାକୁ ମୁଁ ଲଜ୍ଜିତ, ପିତାମହ ! କିନ୍ତୁ ତଥାପି ମୁଁ ବାଧ୍ୟ ହେଉଛି କହିବାକୁ ଯେ, ଗୋଟାଏ ଘୃଣ୍ୟ ଷଡ଼ଯନ୍ତ୍ର ଜାଲକୁ ଭେଦ କରିବାକୁ, ଘୁମୁସର ଦରବାରରେ ଦୂରଦର୍ଶିତାର ଆଜି ଏକାନ୍ତ ଅଭାବ । ଏ ସମସ୍ତ କଳ୍ପିତ ଅଭିଯୋଗର ସୂତ୍ରଧର ଯେ କିଏ ମୋର ପିତା ନୀଳକଣ୍ଠ ଓ ତାଙ୍କର ରାଜ୍ୟଲିପ୍ସା, ଏହା କଣ ମହାରାଜ ଧନଞ୍ଜୟ ଭଞ୍ଜଙ୍କୁ ସୁଦ୍ଧା ଏ ପର୍ଯ୍ୟନ୍ତ ଅବିଦିତ ?

ଧନି । (ବ୍ୟସ୍ତ ହୋଇ, ଉପେନ୍ଦ୍ରଙ୍କର ମୁଖ ବନ୍ଦ କରି) ଉପେନ୍ଦ୍ର, ଚୁପ୍‌କର ! କୁଳଡ଼ ଦୁର୍ଗର ପଙ୍କିଳ ଜଳାଶୟରେ ଏକମାତ୍ର ସୁଗନ୍ଧ ପଦ୍ମ ତୁମେ । ମୋର ଅନୁରୋଧ, ତୁମେ ଅନ୍ତତଃ ପବିତ୍ର ଥାଅ । ଏହି ପଙ୍କିଳତା ମଧ୍ୟରେ ଧାଣ୍ଡି ହୋଇ, ତୁମର ଅମୂଲ୍ୟ କବି ଜୀବନକୁ ବିପନ୍ନ କର ନାହିଁ, ବାବା ! କେବଳ ମନେ ରଖ, ଘନଭଞ୍ଜର ନିର୍ବାସନ, ରାଜନୀତି ଦୃଷ୍ଟିରୁ ଆଜି ବିଶେଷ ପ୍ରୟୋଜନ ହୋଇ ପଡ଼ିଛି, କେବଳ ତାର ସମୁଜ୍ଜ୍ୱଳ ଭବିଷ୍ୟତ ଲାଗି ।

ଗୋବିନ୍ଦ । (ବ୍ୟଙ୍ଗ ହାସ୍ୟସହ) ଗୋଟାଏ ନିର୍ବାସିତର ପୁଣି ସମୁଜ୍ଜ୍ୱଳ ଭବିଷ୍ୟତ୍ ? ।

ଧନ । ହିଁ ଏହା ବୃଦ୍ଧ ଧନଞ୍ଜୟ ଭକ୍ତିର ଦିବ୍ୟ ଦୃଷ୍ଟି । ମେଘାବୃତ ସୂର୍ଯ୍ୟ ଚିରଦିନ ଅନ୍ଧକାର ଗର୍ଭରେ ଲୁଚିରହି ପାରେ ନା । ବରଂ ଆନନ୍ଦ କର ଗୋବିନ୍ଦ ଯେ, ଜୟୀଙ୍କର ନିର୍ଦ୍ଦେଶ ନିଶ୍ଚୟ ସଫଳ ହେବ । ଆଜି ଘନଭଞ୍ଜର ନିର୍ବାସନ, କେବଳ ରାମ ବନବାସ ପର୍ବର ସୂଚନା ମାତ୍ର । ଧୈର୍ଯ୍ୟ ଧରି ଅପେକ୍ଷା କର ସେହି ଦିନକୁ ଗୋବିନ୍ଦ, ଯେଉଁ ଦିନ ଯୋଗୀରାଜ ଅଶ୍ୱତ୍ଥାମାଙ୍କର ଅଭ୍ରାନ୍ତ ଭବିଷ୍ୟଦ୍‌ବାଣୀର ମେଘମନ୍ଦ୍ର ପ୍ରତିଧ୍ୱନିରୂପେ, ଏହି କୁଳଡ଼ ଦୁର୍ଗରେ ପୁଣି ଅଯୋଧ୍ୟା ପ୍ରତ୍ୟାବର୍ତ୍ତନର ମହନୀୟ ଦୃଶ୍ୟ ଉଦ୍‌ଘାଟନ କରିବ—ଏହି ନିର୍ବାସିତ ଘନଭଞ୍ଜ ।

(ଏ କଥା ଶୁଣି, ଉପେନ୍ଦ୍ର ଓ ଗୋବିନ୍ଦ ଅଶ୍ରୁପୂର୍ଣ୍ଣ ହୋଇ କେବଳ ଧନଞ୍ଜୟଙ୍କ ମୁଖକୁ ଚାହିଁ ରହିଲେ । )

—ଯବନିକା ପତନ—

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ଜଗନ୍ନାଥପ୍ରସାଦସ୍ଥ ସର୍ଦାର ଜଗନ୍ନାଥଙ୍କର ପ୍ରାସାଦ କକ୍ଷର ଅଳିନ୍ଦ । ସ୍ଥାନଟି ପରିଷ୍କାର ପରିଚ୍ଛନ୍ନ ଓ ଅଯଥା ଶୌଖିନରେ ଭାରାକ୍ରାନ୍ତ ନୁହେଁ । କେବଳ କେତେଗୋଟି ମୂଲ୍ୟବାନ ଆସନ ଅଳିନ୍ଦର ବିଭିନ୍ନ ସ୍ଥାନରେ ସଜ୍ଜିତ । ତନ୍ମଧ୍ୟରୁ ଦୁଇଗୋଟି ଆସନରେ ମୁଖାମୁଖୀ ହୋଇ ବସିଛନ୍ତି, ଜଗନ୍ନାଥ ଓ ହରିଶରଣ । ସମୟ ଦ୍ୱିପ୍ରହର । ଅଳିନ୍ଦର ଉନ୍ମୁକ୍ତ ବାତାୟନ ମଧ୍ୟଦେଇ ଜଗନ୍ନାଥପ୍ରସାଦର ଜଗନ୍ନାଥ ମନ୍ଦିର ଧ୍ୱଜା ସ୍ପଷ୍ଟରୂପେ ପ୍ରତିଭାତ । ]

ହରି । ସୌଭାଗ୍ୟର ବିଷୟ ଯେ, ଇତିମଧ୍ୟରେ ବୁଗୁଡ଼ା ମୁଠାର ପୂର୍ଣ୍ଣ କର୍ତ୍ତୃତ୍ୱ ମୋର ହସ୍ତଗତ ହୋଇ ପାରିଛି । ଅଭି ବିଦ୍ରୋହୀ ସର୍ଦ୍ଦାର ବନ୍ଦୀ ହେବା ପୂର୍ବରୁ, ଆତ୍ମହତ୍ୟା କରି ସମସ୍ତ ବିଗ୍ନର ହାତରୁ ମୁକ୍ତିଲାଭ କରିଛି ।

ଜଗ । କିନ୍ତୁ, ମୋର ଏଠାକାର ଅବସ୍ଥା ସ୍ୱତନ୍ତ୍ର । ମୁଁ ଏ ମୁଠାକୁ ଆୟତ୍ତରେ ଆଣିବା ପୂର୍ବରୁ, ମୋର ଆଗମନର ସମ୍ବାଦ ମାତ୍ର ପାଇ, ବିଦ୍ରୋହୀ ସର୍ଦ୍ଦାର ଆପେ ଆପେ ସ୍ଥାନ ତ୍ୟାଗ କରି ପଳାୟନ କରିଛି ।

ହରି । ମନ୍ଦ ନୁହେଁ, ଏହା ବି ମଧ୍ୟ ଏକ ପ୍ରକାର ରାଜତ୍ୱ । କୁଲାଡ଼ ଦୁର୍ଗର କୁଟିଳ ରାଜନୀତି ମଧ୍ୟରେ ପଡ଼ି ସନ୍ତପ୍ତ ହେବା ଅପେକ୍ଷା, ଏଠାରେ ନିରୁପଦ୍ରବ ଭାବରେ ବସି, ଗୋଟାଏ ମୁଠାକୁ ଶାସନ କରିବାରେ, ଅନ୍ତତଃ ମାନସିକ ଶାନ୍ତି ଅଛି । ଅଚ୍ଛା, ଜଗନ୍ନାଥ ! ଘନଭଞ୍ଜଙ୍କର କିଛି ସମ୍ବାଦ ତୁମେ ପାଇଛ ?

ଜଗ । କେବଳ ଏତିକି ଜାଣି ପାରିଛି ଯେ, ଘନଭଞ୍ଜ ଏବେ ଧରିତ୍ରୀକୋଟ ରାଜାଙ୍କର ଆଶ୍ରୟପ୍ରାର୍ଥୀ ହିସାବରେ ଅଛନ୍ତି । ହତଭାଗ୍ୟ ଘନଭଞ୍ଜ, ଉଦ୍ଧତ ନୀଳକଣ୍ଠଙ୍କର ସିଂହାସନ ଅଭିଯାନ ପଥରେ ସେହି ହେଲେ ପ୍ରଥମ ବଳି ! ଓଃ—କି ଅନ୍ୟାୟ !

ହରି । ଛାଡ଼ ! ସେ ଗୋଟାଏ ନରକର ଦୁଃସ୍ୱପ୍ନ ! ମୋର କିନ୍ତୁ ମନେ ହୁଏ, ଏ ଅନ୍ୟାୟର ପ୍ରତିଶୋଧ ଘନଭଞ୍ଜ ନିଶ୍ଚୟ ନେବେ । ବୋଧହୁଏ, ସେଥିଲାଗି ସେ ଧରିତ୍ରୀକୋଟର ସାମନ୍ତ ରାଜା ରାମଚନ୍ଦ୍ର ସିଂହ ଦେବଙ୍କର ସାହାଯ୍ୟପ୍ରାର୍ଥୀ ।

ଜଗ । ଅସମ୍ଭବ ନୁହେଁ, ଜ୍ୟୋତିଷୀଙ୍କର ଭବିଷ୍ୟଦ୍‌ବାଣୀ ହୁଏ ତ ସତ୍ୟ ହୋଇପାରେ । କିଏ ଜାଣେ, ଭବିତବ୍ୟର ଗତି କଣ !

ହରି । କେନାମଣି ଉପେନ୍ଦ୍ର ଏଠାରେ ତୁମ ପାଖରେ ଅଛନ୍ତି ବୋଲି ଯେ ଖବର ଶୁଣିଥିଲି, ଏହା କଣ ସତ୍ୟ ?

ଜଗ । ଅଦ୍ଭୁତ ଶିଳ୍ପୀ ଯୁବକ ଏହି କେନାମଣି । ନୟାଗଡ଼ ଯିବାର ଉଦ୍ଦେଶ୍ୟ ନେଇ ସେ ଦିନ ମୋ ସହିତ କୁଲାଡ଼ ଦୁର୍ଗରୁ ଏଠାକୁ ଆସିଲେ ।

କିନ୍ତୁ ଏଠାକାର ପ୍ରାକୃତିକ ଦୃଶ୍ୟ ଦେଖି, ଏକାବେଳକେ ତନ୍ମୟ ହୋଇ ପୁଣି ଗୋଟାଏ ନୂତନ କାବ୍ୟ ସୃଷ୍ଟିରେ ବଦ୍ଧୋଦ୍ୟମ ହୋଇ ପଡ଼ିଲେ । କାବ୍ୟ ରଚନାର ସ୍ଥାନ ପୁଣି—ଜଗନ୍ନାଥ ମନ୍ଦିର ପ୍ରାଙ୍ଗଣ । ବାସ୍ତବିକ ସାଇଁ, ଅଦ୍ଭୁତ କବିତ୍ୱ ତାଙ୍କର । ମୁଁ ନିଜେ ମଧ୍ୟ ଦିନେ ପୁରୀରେ ଯାଇ, ତାଙ୍କର କାର୍ଯ୍ୟକଳାପ ସ୍ୱଚକ୍ଷୁରେ ନିରୀକ୍ଷଣ କରିଛି । ଦେଖିଲି, ତାଳପତ୍ର ଉପରେ ନିବଦ୍ଧ ଦୃଷ୍ଟି ତାଙ୍କର; ଆଉ ତାଙ୍କର ଲେଖନୀର ଅବିଶ୍ରାନ୍ତ ଗତିରେ ଅନର୍ଗଳ କବିତାର ଧାରା ଯେପରି ଶତଧାରରେ ଝରି ପଡୁଛି ।

ହରି । ଅଥଚ ବିସ୍ମୟର କଥା ଯେ, ଏହି ରତ୍ନର ଜନ୍ମଦାତା ପୁଣି ନୀଳକଣ୍ଠ ! ବିଧିର ବିଡ଼ମ୍ବନା । କିନ୍ତୁ ସେ କାହାନ୍ତି ?

ଜଗ । ବୋଧହୁଏ ସେ ବର୍ତ୍ତମାନ ଜଗନ୍ନାଥ ମନ୍ଦିର ପ୍ରାଙ୍ଗଣର ଚତ୍ୱର ଉପରେ ବସି, କାବ୍ୟ ସୃଷ୍ଟିରେ ବ୍ୟସ୍ତ ଥିବେ । ଜଗତର କାର୍ଯ୍ୟଧାରା ପ୍ରତି ଏକାବେଳକେ ନିର୍ଲିପ୍ତ—ନିରାଲମ୍ବ । ନିଜର କ୍ଷୁଧା ତୃଷା ପ୍ରତି ମଧ୍ୟ ଭ୍ରୂକ୍ଷେପ ନାହିଁ ।

[ ସହସା ପୋଥି ଓ ଲେଖନୀ ହସ୍ତେ ଉପେନ୍ଦ୍ରଙ୍କର ପ୍ରବେଶ ]

ଉପେ । କିଣ କରିବି, ପିତୃବ୍ୟ ! ଜଗନ୍ନାଥପ୍ରସାଦର ପ୍ରାକୃତିକ ଐଶ୍ୱର୍ଯ୍ୟ, କ୍ଷୁଧା ତୃଷା କିଣ, ଏପରିକି ମୋର ଅସ୍ତିତ୍ୱ ପର୍ଯ୍ୟନ୍ତ ମୋତେ ଭୁଲାଇ ଦେଇଛି । ଆଉ ସର୍ବୋପରି—ଏହି ଜଗନ୍ନାଥ ମନ୍ଦିର, ମୋର ପ୍ରାଣରେ ଆଣି ଦେଇଛି ଗୋଟାଏ ଅଭିନବ ପ୍ରେରଣା, ଯାହାକୁ ପ୍ରତିରୋଧ କରିବା ଉପେନ୍ଦ୍ରର ଦୁଃସାଧ୍ୟ । ତାରି ଫଳରେ, ମୋର ଏହି ନୂତନ କାବ୍ୟ କୋଟି ବ୍ରହ୍ମାଣ୍ଡସୁନ୍ଦରୀର ସୃଷ୍ଟି । ମୋର ମନେହୁଏ, ଏହି ସମୃଦ୍ଧିଶାଳୀ ବିରାଟ ଜନପଦଟା ପ୍ରକୃତରେ ଜଗନ୍ନାଥଙ୍କର ପ୍ରସାଦ । ସୁତରାଂ ଏ ସ୍ଥାନର ପ୍ରତ୍ୟେକ ଦୃଶ୍ୟ ମୋତେ ଉନ୍ମାଦ କରି ଦେଇଛି ପିତୃବ୍ୟ ! ନୋହିଲେ ମୋର ନୟାଗଡ଼ ଯିବାର ମହାଲକ୍ଷ୍ୟ ସାଧନାରେ ଏତେ ବିଳମ୍ବ ହୋଇ ନ ଥାନ୍ତା ।

ହରି । ଅଚ୍ଛା ଉପେନ୍ଦ୍ର, କାବ୍ୟ ସୃଷ୍ଟି ଛଡ଼ା ତୁମର ଜୀବନରେ କି ଅନ୍ୟ କିଛି ଉଦ୍ଦେଶ୍ୟ ନାହିଁ ?

ଉପେ । ପିତୃବ୍ୟ ! ଏ ପ୍ରଶ୍ନର ଉତ୍ତର ଦେଇ ପାରନ୍ତି ସେହି ଜଗନ୍ନାଥ ସ୍ୱୟଂ । ମୋ ଭଳି ଅର୍ବାଚୀନ ପକ୍ଷରେ ଏହାର ମୀମାଂସା କରିବା ଅସମ୍ଭବ । ଏହି ଜଗନ୍ନାଥ ମନ୍ଦିରକୁ ଦେଖି, ମୋର ବାଲ୍ୟକାଳର ନୀଳାଚଳ ଦର୍ଶନର ସ୍ମୃତି ଜାଗରିତ ହୋଇ ଉଠିଛି । କି ସେ ମନ୍ଦିର, କି ସେ ଦେବତା ଅଉ କି ତାହାର ମାହାତ୍ମ୍ୟ, ତାହା ମୁଁ ଏ ପର୍ଯ୍ୟନ୍ତ ଉପଲବ୍ଧି କରିପାରୁ ନାହିଁ । କେବଳ ବାତୁଳ ଶବ୍ଦରେ ସେ ସ୍ମୃତିର ମାତ୍ର ଉଦ୍‌ବୋଧନ କରିଛି, ଏହି ମୋର କୋଟି ବ୍ରହ୍ମାଣ୍ଡସୁନ୍ଦରୀ କାବ୍ୟରେ ।

ଜଗ । କାହିଁ, ସ୍ୱର ସଂଯୋଗ କରି, ମୋତେ କିଛି ଶୁଣାଇଲ, କେନାମଣି ?

ଉପେ । (ପୋଥି ଖୋଲି ଜଗନ୍ନାଥ ବନ୍ଦନାଟି ଗାଇବାକୁ ଲାଗିଲେ)

ଶୁଣ କୋବିଦେ ଭରତ ଖଣ୍ଡେ ପୁଣ୍ୟଧାମ,
ଯେଣୁ ନାରାୟଣ ଦେହ୍ରା, ତେଣୁ ସେହି ନାମ ।
ଏଣୁ କ୍ଷେତ୍ର ନରେନ୍ଦ୍ର, ପଦ ତ ସମ୍ଭାବିତ
ବିନାଶେ ଭୁଜଙ୍ଗ ଦୋଷ ତାକୁ କେତେ ମାତ୍ର ।
ଶ୍ରୀ ମହାପ୍ରସାଦ ନଦ ପଦ ଘଣ୍ଟ ଘୋଷ
ଭକ୍ଷଣେ ଶ୍ରବଣେ ଯେ କଳିଦୋଷ ବିଷ ନାଶ ।
ଉନ୍ନତ ପ୍ରାସାଦ ବିଜ ପତାକା ଉଡ଼ାଇ,
ଏ ପ୍ରଦେଶେ ସମଶ୍ରେଣୀ ପ୍ରାଣୀ କାହିଁ ନାହିଁ ।
ସେ ଜମ୍ବୁ କଣ୍ଟକ ମଧ୍ୟ ନାମ ଜଗନ୍ନାଥ
ଗୃହି ବର୍ଣ୍ଣେ ଚତୁର୍ବର୍ଗ ଦେବାକୁ ସମର୍ଥ ।
ଯାର କଟାକ୍ଷ ବିପାକ ପତନ ମାତ୍ରରେ,
ଅନେକ ଦୁଃଖ ଅନୋକହଙ୍କୁ ଛେଦପାରେ ।
କୋଟି କନ୍ଦର୍ପ ଲାବଣ୍ୟ ମୂର୍ତ୍ତି ଦରଶନ
ଦେବାକୁ ସୁଦେଶେ ବସିଲେ ରତ୍ନ ସିଂହାସନ ।
ଶିରେ ହେମ ରତନ-ମୁକୁଟ ସପ୍ତ ଶାଖା,
କରୁଣା ସିନ୍ଧୁରେ କି ବଡ଼ବାନଳ ଶିଖା ।

ହରି । (ଶୁଣି ସାରି) ଚମତ୍କାର ! କିନ୍ତୁ ଏ କଅଣ କେନାମଣି ! ତୁମର ଚକ୍ଷୁରେ ଯେ ଅଶ୍ରୁ ?

ଉପେ । ପିତୃବ୍ୟ ! ଜଗନ୍ନାଥଙ୍କର ଅପାର ମହିମାରୁ କଣିକାଏ ମାତ୍ର ବର୍ଣ୍ଣନା କରି ପାରିଛି ବୋଲି, ଅତ୍ୟଧିକ ଆନନ୍ଦରେ ନେତ୍ରଜଳରୁ ମୋର ରୋଧ କରି ପାରୁ ନାହିଁ । ଦେଖନ୍ତୁ, ଏଥିଲାଗି ସାରା ଶରୀରଟା ମୋର କିପରି ଏ ପର୍ଯ୍ୟନ୍ତ ରୋମାଞ୍ଚିତ ହୋଇ ରହିଛି ।

ଜଗ । କେନାମଣି ! ଏହି ଅପାର୍ଥିବ ଭାବମୟ ଜୀବନ ଯେଉଁ ତୁମେ ଦୁମୁସର ରାଜ୍ୟରେ ଜନ୍ମହେଲ କିପରି, ମୁଁ ଏଥାହିଁ ମାତ୍ର ଭାବୁଛି । କୁଳଡ଼ ଗଡ଼ର ପଙ୍କିଳ ଅବେଷ୍ଟନୀ ମଧ୍ୟରେ ଏ କବିତ୍ୱର ଛଟା ତ ସମ୍ଭବ ହୋଇ ପାରେ ନା ?

ଉପେ । କାହିଁକି ପିତୃବ୍ୟ ! ପିତାମହ ଧନଞ୍ଜୟ ଭଞ୍ଜଙ୍କର କବି ପ୍ରତିଭା ତ ଏ ଦେଶରେ ନୂତନ ନୁହେଁ । ତାଙ୍କର ଦାୟାଦ ମୁଁ । ତାଙ୍କର କଳା ପ୍ରଭାବ ମୋ ଉପରେ ପଡ଼ିବା ତ ବିଚିତ୍ର ନୁହେଁ ।

ହରି । କିନ୍ତୁ ଏ ଯେ ଅଭିନବ କବି ପ୍ରତିଭା । ତରୁଣ ବୟସର ପ୍ରାରମ୍ଭରେ, ଏପରି ମର୍ମସ୍ପର୍ଶୀ କବିତା ଏ ଦେଶରେ ଦୁର୍ଲ୍ଲଭ,କେନାମଣି ! ତୁମର ପିତୃବ୍ୟ ମୁଁ—ସତ କହୁଛି—ତୁମେ ବୋଧହୁଏ କୌଣସି ଶାପଭ୍ରଷ୍ଟ ଦେବତା ! ତା' ନ ହେଲେ, ଏ ବୟସରୁ ଅବଲୀଳାକ୍ରମେ କାବ୍ୟ ପରେ କାବ୍ୟ ସୃଷ୍ଟି କରି ପାରିବାର ଦକ୍ଷତା, ଜଣେ ସାଧାରଣ ମାନବ ପକ୍ଷରେ ଏକାବେଳକେ କଳ୍ପନାତୀତ ।

ଉପେ । ମୋତେ ଅପରାଧୀ କରନ୍ତୁ ନାହିଁ, ପିତୃବ୍ୟ ! ଉପେନ୍ଦ୍ର ଆପଣଙ୍କର ସନ୍ତାନ । ରକ୍ତମାଂସରେ ଗଢ଼ା ତା ଶରୀର । ତାର ଯଦି କିଛି ବଇଶିଷ୍ଟ ଥାଏ, ତେବେ ତାହା କେବଳ ଆପଣମାନଙ୍କ ଆଶୀର୍ବାଦରୁ ସମ୍ଭବ ହୋଇଛି ।

ହରି । ଆଉ ଅଧିକ କଣ କହିବି, କେନାମଣି ! ଜଗନ୍ନାଥ ତୁମକୁ କେବଳ ମାର୍କଣ୍ଡେୟଙ୍କର ପରମାୟୁ ଦିଅନ୍ତୁ, ଯାହା ଫଳରେ ଏ ଦେଶରେ ତୁମେ ପୁଣି ଗୋଟାଏ ସାହିତ୍ୟର କୋଣାର୍କ ଗଢ଼ିବାକୁ ସମର୍ଥ ହେବ ।

ଉପେ । (ଗୌରବରେ ହରିଶରଣଙ୍କ ପାଦଧୂଳି ନେଇ ମୁଣ୍ଡରେ ବୋଳି ହେଲେ ।)

ହରି । ମୋତେ ଏବେ ବିଦାୟ ଦିଅ, ଜଗନ୍ନାଥ ।

ଜଗ । ଅଳ୍ପ ଦିନଟା ଏଠାରେ ବିଶ୍ରାମ କରନ୍ତୁ ଭାଇ !

ହରି । ନା, ତୁମେ ଜାଣ ନା, ବୁଗୁଡ଼ାରେ ମୋର ଉପସ୍ଥିତି ଆଜି କାଲି ଏକାନ୍ତ ପ୍ରୟୋଜନ । ବିଦ୍ରୋହୀ ସର୍ଦ୍ଦାରର ଅନୁଚରଗଣ ଏ ପର୍ଯ୍ୟନ୍ତ ମୋର ପୂର୍ଣ୍ଣ ବଶୀଭୂତ ହୋଇ ନାହାନ୍ତି । ହୁଏ ତ,ମୋର ଅନୁପସ୍ଥିତିରେ ପୁଣି ଗୋଟାଏ କି କାଣ୍ଡ ସୃଷ୍ଟି କରି ବସିବେ । ତା ପରି ମୋର ସଙ୍ଗୀ ପାଇକ ବରକନ୍ଦାଜ ପ୍ରଭୃତି ସମସ୍ତେ ବାହାରେ ଅପେକ୍ଷା କରୁଛନ୍ତି । କେବଳ ତୁମ୍ଭମାନଙ୍କ ସମ୍ବାଦ ଜାଣିବା ନିମିତ୍ତ କୌତୂହଳ ହେବାରୁ ଏଠାକୁ ଚାଲି ଆସିଥିଲି ମାତ୍ର । ସୁତରାଂ ଏଠାରେ ମୋର ରହିଯିବାଟା, ବୋଧହୁଏ ଉଚିତ ହେବ ନାହିଁ । ମୋତେ ବିଦାୟ ଦିଅ ।

ଜଗ । (ଉଠି) ଚାଲନ୍ତୁ, ମୁଁ ମଧ୍ୟ କିଛିଦୂର ପର୍ଯ୍ୟନ୍ତ ଆପଣଙ୍କର ଅନୁଗମନ କରିବି ।

[ ଜଗନ୍ନାଥ ହରିଶରଣଙ୍କର ପଛେ ପଛେ ଚାଲିଗଲେ । ଉପେନ୍ଦ୍ର ମଧ୍ୟ ତାଙ୍କ ପଛରେ ଯିବାଲାଗି ଉଦ୍ୟତ ହେଉଥିଲେ । ଏପରି ସମୟରେ ଅନ୍ୟ ଦିଗରୁ ଉପେନ୍ଦ୍ରଙ୍କର ଭୃତ୍ୟ ମାଧବ ଆସି ପ୍ରବେଶ କଲା । ]

ମାଧ । କେନାମଣି ସାଆନ୍ତେ—

ଉପେ । (ଫେରି) କିଏ, ମାଧବ । ତୋର ପୁଣି କି ପ୍ରୟୋଜନ ?

ମାଧ । ସାଆନ୍ତେ । ଆପଣଙ୍କର ପରା ନୟାଗଡ଼ ଯିବାର କଥା ଥିଲା ? କାହିଁ, ତାହାର କୌଣସି ଲକ୍ଷଣ ତ ଜଣା ପଡ଼ୁ ନାହିଁ ? ଆଉ କେତେ ଦିନ ଏଠାରେ ଏହିପରି ବସି ରହିବେ ? ଆପଣ ତ ଜଗନ୍ନାଥ ମନ୍ଦିର ଭିତରେ ବସି ପୋଥି ଲେଖିବାରେ ଲାଗିଛନ୍ତି । କେବେ ଯେ ସେ ପୋଥି ଲେଖା ସରିବ, ଆଉ କେବେ ଯେ ଆପଣ ନୟାଗଡ଼ ଯିବେ, ମୁଁ ତ ଭାବି ପାରୁ ନାହିଁ ।

ଉପେ । ମୋର ପୋଥି ଲେଖା ପ୍ରାୟ ସରିଗଲାଣି, ମାଧବ ! ଆଉ ବେଶୀ ବିଳମ୍ବ ହେବ ନାହିଁ । ବୋଧହୁଏ, ଆଉ ଦୁଇ ତିନି ଦିନ ପରେ ମୁଁ ଜଗନ୍ନାଥପ୍ରସାଦ ଛାଡି ନୟାଗଡ଼ ଅଭିମୁଖେ ଯାତ୍ରା କରିବି ।

ମାଧ । ଯେତେ ଶୀଘ୍ର ପାରନ୍ତି, ପୋଥି ଲେଖା ଶେଷ କରନ୍ତୁ, ସାଆନ୍ତେ । ନୟାଗଡ଼ ଦେଖିବାକୁ ମୋର ମନ ଯେ ଭାରି ଚଞ୍ଚଳ ହେଲାଣି ।

ଉପେ । କିନ୍ତୁ ତୋର ତ ମୋ ସହିତ ନୟାଗଡ଼ ଯିବାର କଥା ନୁହେଁ ? ତୁ ଯେ ଏଠାରୁ କୁଲଡ଼ା ଗଡ଼କୁ ଫେରିଯିବୁ ।

ମାଧ । କାହିଁକି ସାଆନ୍ତେ ?

ଉପେ । ଏହାରି ମଧ୍ୟରେ ମୁଣି ସବୁ ଭୁଲିଗଲୁଣି ? ସେ ଦିନ ମୁଁ ତୋତେ କଅଣ କହିଥିଲି ?

ମାଧ । ସେହି ବାଘ ବେଶ କଥା ? ସାଆନ୍ତେ ମୁଁ ଭାବିଥିଲି, ଆପଣ କେବଳ ପରିହାସ କରୁଛନ୍ତି ମୋ ସହିତ ।

ଉପେ । ନା ମାଧବ—ଏଥିରେ ପରିହାସର କଥା କିଛି ନାହିଁ । ମୁଁ ରାଜକେମା ମାଳବିକାଙ୍କ ପ୍ରକୃତରେ ପରୀକ୍ଷା କରିବାକୁ ଚାହେଁ । ମୋ ପ୍ରତି ତାଙ୍କର କେତେଦୂର ମମତା ଅଛି, ତାହାହିଁ ଦେଖିବା ଲାଗି, ତୋତେ ଏହି ସମ୍ବାଦ ନେଇଯିବାକୁ ହେବ ।

ମାଧ । ମା ରାଜ୍ଞାଣୀଙ୍କର ମନ ପରୀକ୍ଷା କରିବାକୁ କଣ ଅନ୍ୟ କିଛି ଉପାୟ ନାହିଁ, କେନାମଣି ସାଆନ୍ତେ ଯେ, ସେଥିପାଇଁ ଏପରି ଗୋଟାଏ ଭୟାନକ ମିଥ୍ୟା ସମ୍ବାଦ ମୋତେ ନେଇଯିବାକୁ ହେବ ?

ଉପେ । ମୋଠାରୁ ବେଶୀ ବୁଦ୍ଧିମାନ ହେବାକୁ ତୁ ଚେଷ୍ଟା କରନା, ମାଧବ ! ମୁଁ ଯାହା କହୁଛି, ଠିକ୍ ତୋତେ ତାହାହିଁ କହିବାକୁ ହେବ । କେନାମଣି ପଞ୍ଚକୂଟ ଜଙ୍ଗଲକୁ ବ୍ୟାଘ୍ର ଶିକାରକୁ ଯାଇଥିଲେ । ସେଠାରେ ବ୍ୟାଘ୍ର ମୁଖରେ କେନାମଣିଙ୍କର ମୃତ୍ୟୁ ହୋଇଛି । ଏହି ଏତିକି ସମ୍ବାଦ ଦେବୁ । ଆଉ ସମ୍ବାଦ ଦେଲାବେଳେ, ଦୁଃଖରେ ମୁହଁ ଶୁଖାଇ କାନ୍ଦିବୁ ମଧ୍ୟ । ତା ପରେ, ଏ କଥା ଶୁଣି ମା ରାଜ୍ଞାଣୀ କଣ କହିବେ ବା କରିବେ, ତାହାର ଠିକ୍ ଠିକ୍ ସମ୍ବାଦ ମୋତେ ଆଣି ଦେବୁ ।

ମାଧ । ନାହିଁ ସାଆନ୍ତେ, ଏତେ ବଡ଼ ମିଥ୍ୟା କଥାଟାକୁ ମୁଁ କହି ପାରିବି ନାହିଁ । ମୋର ମୁଖରୁ ତ ଏ କଥା ମୋଟେ ବାହାରିବ ନାହିଁ । ମୋତେ ଏ ଜଞ୍ଜାଳରେ ପକାନ୍ତୁ ନାହିଁ ।

ଉପେ । (ଈଷତ୍ କ୍ରୋଧେ) ମୋର କଥାର ଅବାଧ ହେବାକୁ ସାହସ କରୁଛୁ, ମାଧବ ! ଜାଣୁ, ଏହାର ପରିଣାମ କ'ଣ ହେବ ?

ମାଧ । ସାଆନ୍ତେ; ଅପଣଙ୍କ କଥାର ଅବାଧ୍ୟ ମୁଁ ହେଉ ନାହିଁ । ଭାବି ଦେଖନ୍ତୁ, ଆପଣ ପଣ୍ଡିତ । ମୂର୍ଖ ମୁଁ—ଆପଣଙ୍କ ପାଦସେବା କରି, ମୋର ଦିନ ଯିବାର କଥା । କିନ୍ତୁ ତାହା ନ କରି, ମୋର ଅନ୍ନଦାତା ପ୍ରଭୁଙ୍କ ମିଥ୍ୟା ମୃତ୍ୟୁ ଖବରଟା, କେଉଁ ସାହସରେ ସାମ୍ରାଣୀଙ୍କୁ ଯାଇ ଜଣାଇବି କହନ୍ତୁ । ମହାରାଜା ନିଜେ ଏ କଥା ଶୁଣିଲେ, କି ଆପଣଙ୍କର ପିତା କି ମହାରାଣୀମା ଶୁଣିଲେ, ମୋର ମୁଣ୍ଡଟା ଅକାରଣେ ଉଡ଼ିଯିବ ସିନା ?

ଉପେ । ମୂର୍ଖ, ତୁ ତ ମାଳତୀଙ୍କୁ ଏ ସମ୍ବାଦ ଦେବୁ । ମହାରାଜା ବା ଅନ୍ୟ କେହି, ଏ ସମ୍ବାଦ ଜାଣିବେ କିପରି ?

ମାଧ । ଏ କଥା ଶୁଣି, ମା ସାମ୍ରାଣୀ କି ଥିର ଧରି ରହି ପାରିବେ ? ସୁତରାଂ ମହାରାଜା ବା ଦୁର୍ଗର ଅନ୍ୟ କେହି ଏ ଖବର ନ ଜାଣିବେ କିପରି ? ସାଆନ୍ତେ,—ଆପଣ କଣ ପୋଥି ଲେଖି ଲେଖି ପାଗଳ ହୋଇ ଗଲେ ନା କଣ ? ଏତେ ବଡ଼ ଦାରୁଣ ସମ୍ବାଦଟା ଏ ମୁଁ ମା' ସାମ୍ରାଣୀଙ୍କୁ ଦେବି, ଆଉ ସେ ଗୋଳ ନ କରି, ତୁନି ହୋଇ ରହି ପାରିବେ ? ଏ କଥା କଣ ସମ୍ଭବ ?

ଉପେ । ମୁଁ ତ ସେତିକି ଜାଣିବାକୁ ଚାହୁଁଛି । ଏ ସମ୍ବାଦ ଶୁଣି ମାଳତୀ ଯଦି ଅତି ଅଧୀର ହୋଇ ପଡ଼ିବେ, ତେବେ ତାଙ୍କୁ ସତ କଥା କହି ପ୍ରବୋଧ ଦେବୁ, ଆଉ କହି ଦେବୁ ଯେ, ଚନ୍ଦ୍ରମଣି ନିଜେ ଏହି ମିଥ୍ୟା ସମ୍ବାଦ ପଠାଇଛନ୍ତି, କୌତୁକ ଦେଖିବା ନିମିତ୍ତ । ଏଥିରେ ତୋର ଦୋଷ ରହିଲା କେଉଁଠି ?

ମାଧ । ଯାହା କୁହନ୍ତୁ ସାଆନ୍ତେ, ଆପଣଙ୍କର ଅନ୍ନ ଖାଉଛି ମୁଁ— ଆପଣଙ୍କର ଚରଣ-ସେବକ, ଆପଣଙ୍କର ଆଦେଶ ମାନି, ମୁଁ ଏହି ସମ୍ବାଦ ମା' ପାଟ୍ରାଣୀଙ୍କୁ ଜଣାଇବି । କିନ୍ତୁ କେଜାଣି କାହିଁକି, ମୋର ମନ କହୁଛି ଯେ ଏଥର ଶେଷଫଳ ଭଲ ହେବନାହିଁ । ଅନର୍ଥକରେ, ବିଚରା ମାଧବ ହେବ ଶେଷରେ ଦୋଷୀ ।

ଉପେ । ତୋତେ କେହି ଦୋଷ ଦେଇ ପାରିବେ ନାହିଁ । ମୁଁ ଗୋଟାଏ ଚିଠାଉ ଲେଖି ତୋ ହାତରେ ପଠାଇବି । ଯଦି ବେଶୀ କିଛି ଗୋଳମାଳ ହୁଏ, ତେବେ ମୋର ଚିଠାଉ ଦେଖାଇବୁ । ସମସ୍ତଙ୍କର ସମସ୍ତ ସନ୍ଦେହ ସେଥିରେ ଦୂର ହୋଇଯିବ । ତେବେ, ତୋର ଆଉ ଭୟ କରିବାର କଣ ରହିଲା ?

ମାଧ । ଯାହା ଉଚିତ ଭାବୁଛନ୍ତି, କରନ୍ତୁ । କିନ୍ତୁ ସାଆନ୍ତେ, ମୋର ମନ ବୋଧ ହେଉନାହିଁ । ମୋର ଆଶଙ୍କା ହେଉଛି ଯେ, ଏହି କୌତୁକରୁ ମହା ଅନର୍ଥ ଘଟିବ ନିଶ୍ଚୟ ।

ଉପେ । (ହସି) କିଛି ଅନର୍ଥ ଘଟିବ ନାହିଁ । ମୁଁ ଆଜି ଚିଠାଉ ଲେଖି ରଖିଥିବି । କାଲି ପ୍ରଭାତରୁ ତୁ ସେହି ଚିଠାଉ ନେଇ କୁଳଡ଼ ଗଡ଼କୁ ଯାତ୍ରା କରିବୁ । ମନେ ରଖିଥିବୁ ଯେପରି, ତୋର ମା' ପାଟ୍ରାଣୀ କଣ କହିବେ, ତାହାର ସଠିକ ବିବରଣୀ ମୋତେ ନିର୍ଭୁଲଭାବରେ ନିଶ୍ଚୟ ଜଣାଇବୁ । ଚାଲ୍, ( ଉପେନ୍ଦ୍ର ଭିତରକୁ ଗଲେ । )

ମାଧ । (ପଛେ ପଛେ ଯାଉଁ ଯାଉଁ) ଜେନାମଣିଙ୍କ ପରି ପଣ୍ଡିତଙ୍କ ନିକଟରେ, ମୋ ପରି ମୂର୍ଖ ସେବକଟାଏ ରହିଲେ, ଶେଷରେ ଏହିପରି ଦୁର୍ଦ୍ଦଶା ଘଟିଯାଏ ସିନା ! ହାୟ ଭଗବାନ— ( ପ୍ରସ୍ଥାନ )



# ଦ୍ୱିତୀୟ ଦୃଶ୍ୟ

[ ଧଗ୍ରକୋଠରେ ସାମନ୍ତ ରାଜା ରାମଚନ୍ଦ୍ର ସିଂହ ଦେବଙ୍କର ପ୍ରମୋଦ କକ୍ଷ । ସମୟ—ରାତ୍ରି ପ୍ରଥମ ପ୍ରହର । କକ୍ଷଟି ସୁସଜ୍ଜିତ । କେତେ ରକମର ସୁକୋଶଳ ମୂଲ୍ୟବାନ ଆସନ, କକ୍ଷର ବିଭିନ୍ନ ଅଂଶରେ ଶୋଭା ପାଉଛି । କକ୍ଷର ତଳଦେଶରେ ମୂଲ୍ୟବାନ ଗାଲିଚାଟିଏ ବିସ୍ତୃତ । ସାଧାରଣ ପରିଚ୍ଛଦ ପରିଧାନ କରି ଧଗ୍ରକୋଠର ସାମନ୍ତ ରାଜା ଗୋଟିଏ ମୂଲ୍ୟବାନ ଆସନରେ ବସିଛନ୍ତି । ତାଙ୍କ ପାଖରେ, ତାଙ୍କ ଆଡ଼କୁ ମୁହଁକରି ଅନ୍ୟ ଗୋଟାଏ ଆସନରେ ବସିଛନ୍ତି ଘନଭଞ୍ଜ । କାଚଝାଡ଼ରେ ଜଳୁଥିବା ବିଭିନ୍ନ ରକମର ଆଲୋକରେ କକ୍ଷଟି ଅତି ରମଣୀୟ ଦେଖା ଯାଉଥିଲା । ଉଭୟେ କଥାବାର୍ତ୍ତାରେ ବ୍ୟସ୍ତ ]

ଘନ । ବିଶ୍ୱାସ କରନ୍ତୁ ମୋତେ, କେବଳ ସେ ପ୍ରତାରକ ଜାଲକଣ୍ଠକୁ ମୁଁ ଯେ କୌଣସି ଉପାୟରେ ଥରେ ବନ୍ଦୀ କରିବାକୁ ଚାହେଁ, ରାଜା ସାହେବ !

ରାମ । କିନ୍ତୁ କୁମାର, ସମସ୍ତ ଘଟଣା ଶୁଣି ସାରି, ମୋର ଜାହିଁକି ସନ୍ଦେହ ହେଉଛି ଯେ, ମହାରାଜ ଧନଞ୍ଜୟ ନିଜେ ବୋଧହୁଏ ଏହି ଷଡ଼ଯନ୍ତ୍ରର ସୂତ୍ରଧର ।

ଘନ । ନା ରାଜା ସାହେବ ! ମହାରାଜାଙ୍କର ଅତି ବଡ଼ ଶତ୍ରୁ ମଧ୍ୟ ତାଙ୍କ ବିରୁଦ୍ଧରେ ଏ ଗୁରୁତର ଅଭିଯୋଗ ଆଣିବାକୁ ସାହସ କରିବ ନାହିଁ । ମୁଁ ନିଜେ ଯେ ପ୍ରାଣଦଣ୍ଡରୁ ଅବ୍ୟାହତି ପାଇ ଆଜି ଆପଣଙ୍କର ଆଶ୍ରିତରୂପେ ଏଠାରେ ଆସି ରହି ପାରିଛି, ତାହା କେବଳ କେବଳ ତାଙ୍କର ଉଦାରତା ଯୋଗୁଁ ସମ୍ଭବ ହୋଇଛି । ତା ପରେ, ପିତା ଗୋବିନ୍ଦ ଭଞ୍ଜ ଯେ ଆଜି ଘୁମୁସରର ଅଠରାଜା, ଏହା କେବଳ ମହାରାଜାଙ୍କର ଅତ୍ୟଧିକ ଭ୍ରାତୃସ୍ନେହର ସ୍ପଷ୍ଟ ନିଦର୍ଶନ ।

ରାମ । ତେବେ କଣ ତୁମର ପୂର୍ଣ୍ଣ ବିଶ୍ୱାସ ଯେ, ଏ ସବୁ କୁମାର ନୀଳକଣ୍ଠଙ୍କର କୌଶଳପୂର୍ଣ୍ଣ ରଚନା ?

ଧନ । କେବଳ ନୀଳକଣ୍ଠ ନୁହେଁ, ଏଥିରେ ତାଙ୍କର ଗର୍ଭଧାରିଣୀ ମହାରାଣୀଙ୍କର ମଧ୍ୟ ପ୍ରତ୍ୟକ୍ଷ ସହଯୋଗ ଅଛି । ନୋଚେତ୍ ମହାରାଣୀଙ୍କର ଅନୁଗ୍ରହ ପୋଷିତ ପରଗ୍ରହକ ଦଳ୍ପା, ମୋ ବିରୁଦ୍ଧରେ ମିଥ୍ୟା ସାକ୍ଷ୍ୟ ଦେବାକୁ କଦାପି ସାହସ କରି ନ ଥାନ୍ତା । ତେଣୁ, ଘୁମୁସର ରାଜ୍ୟର ଗୃହହୀନ ନିରାଶ୍ରୟ ରାଜକୁମାର ମୁଁ—ଆଜି ଆପଣଙ୍କର ସାହାଯ୍ୟପ୍ରାର୍ଥୀ—ରାଜା ସାହେବ ! ନିର୍ବାସିତ ଧନଭଞ୍ଜର ଏ ଭିକ୍ଷା ପୂର୍ଣ୍ଣ କରନ୍ତୁ । ଘୁମୁସର ସିଂହାସନ ବିରୁଦ୍ଧରେ ବିଦ୍ରୋହ କରି, ରାଜ୍ୟବ୍ୟାପୀ ଅଖଣ୍ଡ ଶାନ୍ତିରେ ହସ୍ତକ୍ଷେପ କରିବାକୁ ମୋର ଦୁରାକାଂକ୍ଷା ନାହିଁ । ମୁଁ ଚାହେଁ, କେବଳ କୁଲାଡ଼ ଦୁର୍ଗ ଅବରୋଧ କରି, ସେହି କପଟତାର ମୂର୍ତ୍ତିମନ୍ତ ଶଇତାନ୍ ନୀଳକଣ୍ଠକୁ ବନ୍ଦୀ କରିବାକୁ ।

ରାମ । ଉତ୍ତେଜିତ ହୁଅନା, ରାଜକୁମାର ! ମୋର ପ୍ରଶ୍ନର ଉତ୍ତର ଦିଅ । ନୀଳକଣ୍ଠକୁ ବନ୍ଦୀ କରି ସାରିବା ପରେ, ତୁମର କି ଅଭିପ୍ରାୟ ସାଧିତ ହେବ ?

ଧନ । ନୀଳକଣ୍ଠକୁ ବନ୍ଦୀ କଲା ପରେ, ଘୁମୁସର ସିଂହାସନର ନ୍ୟାଯ୍ୟ ଉତ୍ତରାଧିକାରୀ ଯୁବରାଜ ଗଙ୍ଗାଧର ନିର୍ବିବାଦରେ ତାଙ୍କର ସିଂହାସନ ଲାଭ କରି ପାରିବେ । ଘୁମୁସର ରାଜ୍ୟର ଲକ୍ଷ ଲକ୍ଷ ନିରୀହ ରାଜଭକ୍ତ ପ୍ରଜାଙ୍କର ଏହାହିଁ ଆନ୍ତରିକ କାମନା ।

ରାମ । ତୁମେ ଯେ କହୁଥିଲ, ଯୁବରାଜ ଗଙ୍ଗାଧର ସିଂହାସନ ତ୍ୟାଗ କରିବେ ବୋଲି, ପିତୃପଦସ୍ପର୍ଶ କରି ଶପଥ କରି ସାରିଛନ୍ତି ? ସୁତରାଂ ତାଙ୍କର ସିଂହାସନ ଗ୍ରହଣ ପ୍ରଶ୍ନ ଉଠିବା ତ ଅବାନ୍ତର ? ତା ହେଲେ ?

ଧନ । ତା ହେଲେ, ଯୁବରାଜଙ୍କର ଯୁବକ ପୁତ୍ର ଶତ୍ରୁଞ୍ଜୟ ସିଂହାସନ ଅଧିକାର କରିବାକୁ ଅଯୋଗ୍ୟ ନୁହନ୍ତି, ରାଜା ସାହେବ !

ରାମ । କିନ୍ତୁ ସେଥିରେ ତୁମର ସ୍ୱାର୍ଥ ରହିଲା କେଉଁଠି, କୁମାର ?

ଧନ । ଘୁମୁସର ସିଂହାସନ ମୋର ହେବ, ଏହି କଲ୍ପନା ଘେନି କୁଲଡ଼ା ଦୁର୍ଗ ଅବରୋଧ କରିବା ତ ମୋର ଲକ୍ଷ୍ୟ ନୁହେଁ । ଅନ୍ୟାୟରେ ସିଂହାସନ ଅଧିକାର କରିବାକୁ ଧାନଚରଣ ନୀଳକଣ୍ଠର ଯେଉଁ ଷଡ଼ଯନ୍ତ୍ର, ତାହାକୁ ମାତ୍ର ବିଫଳ କରିବାହିଁ ମୋର ଏକମାତ୍ର ସ୍ୱାର୍ଥ । ନୀଳକଣ୍ଠକୁ ବନ୍ଦୀ କରି ପାରିଲେ, ସମସ୍ତ ସମସ୍ୟାର ସମାଧାନ ହୋଇ ପାରିବ, ଆଉ ରାଜ୍ୟର ଭବିଷ୍ୟତ ମଧ୍ୟ ନିରାପଦ ରହି ପାରିବ ।

ରାମ । ମୁଁ ଯେ ଶୁଣିଥିଲି, କୁମାର ନୀଳକଣ୍ଠକୁ ସିଂହାସନ ଦାନ କରିବେ ବୋଲି, ବୃଦ୍ଧ ମହାରାଜ ଆନ୍ତରିକ ଇଚ୍ଛା ପ୍ରକାଶ କରିଥିଲେ । ଏ କଥା କଣ ମିଥ୍ୟା ?

ଧନ । କୁମାର ନୀଳକଣ୍ଠକୁ ସିଂହାସନ ଦେବା ବା ନ ଦେବାଟା ବୃଦ୍ଧ ମହାରାଜାଙ୍କର ଇଚ୍ଛା ବା ଅନିଚ୍ଛା ଉପରେ ନିର୍ଭର କରେ ନା, ରାଜା ସାହେବ ! ମହାରାଣୀଙ୍କର ଅନ୍ୟାୟ ପ୍ରରୋଚନାହିଁ ଏହି ମିଥ୍ୟା ଜନରବର ସୃଷ୍ଟିକର୍ତ୍ତ୍ରୀ । ଘୁମୁସର ରାଜ୍ୟର ରାଜମାତା ହେବାର ଲୋଭଟାକୁ ମହାରାଣୀ ଏ ପର୍ଯ୍ୟନ୍ତ ଛାଡ଼ି ପାରି ନାହାନ୍ତି । ସୁତରାଂ, ସେଥିଲାଗି ଏହି ସବୁ ଷଡ଼ଯନ୍ତ୍ରର ସୂତ୍ରପାତ । କିନ୍ତୁ ନୀଳକଣ୍ଠ ଯେ ଘୁମୁସରର ଭବିଷ୍ୟତ ରାଜା, ଏ କଥା ମହାରାଜ ଧନଞ୍ଜୟ ଭଞ୍ଜ ତ କେବେ କୌଣସି ସ୍ଥାନରେ ପ୍ରକାଶ କରି ନାହାନ୍ତି !!

ରାମ । ତା ହେଲେ, କେବଳ ଜ୍ୟୋତିଷୀର ଭବିଷ୍ୟଦ୍‌ବାଣୀ ଶୁଣି, କୁମାର ନୀଳକଣ୍ଠ ତୁମ ବିରୁଦ୍ଧରେ ଏତେ ଗୁଡ଼ାଏ ମିଥ୍ୟା ଅଭିଯୋଗ ସୃଷ୍ଟି କରିଛନ୍ତି ? ଆଶ୍ଚର୍ଯ୍ୟ !!

ଧନ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ, ରାଜା ସାହେବ ! ଦୁର୍ବୃତ୍ତ ନୀଳକଣ୍ଠ ଜଗତର କୌଣସି ପାପ ସହିତ ଅପରିଚିତ ନୁହେଁ । ଗୋଟାଏ ଦୁରନ୍ତ ବିଷଧରଠାରୁ ଭୟାନକ ସେ । ମୋର ଭୟ ହୁଏ, ତାର ବିଷାକ୍ତ ନିଃଶ୍ୱାସ, ହୁଏତ ଦେବପ୍ରାଣ ମହାରାଜ ଧନଞ୍ଜୟଙ୍କୁ ମଧ୍ୟ ଦିନେ ଜର୍ଜରିତ କରିଦେବ । ତେଣୁ ମୋର ଅନୁରୋଧ, ଏହାର ବିହିତ ପ୍ରତିକାର କରିବାରେ ମୋତେ ସାହାଯ୍ୟ କରନ୍ତୁ । ଧରାକୋଟ ଦରବାରର ବିଚକ୍ଷଣ

ରାଜନୀତି, ଏ ଦେଶର ସମସ୍ତଙ୍କୁ ଜଣା । ସୁତରାଂ ରାଜ୍ୟ ବିତାଡ଼ିତ ଘନଭଞ୍ଜ, ଏହି ଅନ୍ୟାୟର ପ୍ରତିକାର ଲାଗି ଧରାକୋଟ ଦରବାରର ସମସ୍ତ ସାହାଯ୍ୟ ପାଇବ ବୋଲି ତାର ପୂର୍ଣ୍ଣ ବିଶ୍ୱାସ ।

ରାମ । ଧୈର୍ଯ୍ୟଧର ରାଜକୁମାର ! ତୁମର ପିତା ଗୋବିନ୍ଦଭଞ୍ଜ ମୋର ବାଲ୍ୟବନ୍ଧୁ । ସୁତରାଂ ସେହି ହିସାବରେ ତୁମେ ସ୍ୱଚ୍ଛନ୍ଦରେ ଏ ରାଜ୍ୟର ରାଜକୁମାର ଭାବରେ ରହି ପାରିବାର ଅଖଣ୍ଡ ଅଧିକାର ପାଇଛ । କିନ୍ତୁ ତୁମର ପ୍ରତିଶୋଧ ନେବାର କଳ୍ପନା ବିଷୟରେ, ମୋତେ ଟିକିଏ ଚିନ୍ତା କରିବାକୁ ସମୟ ଦେବାକୁ ହେବ । ଅବଶ୍ୟ ତୁମର ମାନସିକ ଅବସ୍ଥା ମୁଁ ବୁଝି ପାରୁଛି । ତଥାପି, ଏତେ ଚଞ୍ଚଳ କୁଳାଡ଼ ଦୁର୍ଗ ଭଳି ଗୋଟାଏ ସୁରକ୍ଷିତ ଦୁର୍ଗକୁ ଅବରୋଧ କରିବାର ନିଷ୍ପତ୍ତି ଗ୍ରହଣ କରିବାଟା, ବୋଧହୁଏ ବିଚକ୍ଷଣ ରାଜନୈତିକର କାର୍ଯ୍ୟ ହେବ ନାହିଁ । ( ଧରାକୋଟ ରାଜାଙ୍କର ବିଶ୍ୱସ୍ତ ପାର୍ଶ୍ୱଚର ନିରଞ୍ଜନ ଏହି ସମୟରେ ପ୍ରବେଶ କଲେ ।) ସୁତରାଂ, ତୁମକୁ ଅପେକ୍ଷା କରିବାକୁ ହେବ ।

ନିର । ରାତିର ପ୍ରଥମ ପ୍ରହର ପ୍ରାୟ ଶେଷ ହେବାକୁ ବସିଲାଣି । ନର୍ତ୍ତକୀ ଆଉ କେତେ ସମୟ ଅପେକ୍ଷା କରିବ, ମହାରାଜ ?

ରାମ । (ନିରଞ୍ଜନର କଥାକୁ କାନ ନ ଦେଇ) ଭାବିବ ନାହିଁ କୁମାର ଯେ, ଧରାକୋଟ ରାଜା ନିଶ୍ଚିନ୍ତରେ ବସିଛନ୍ତି, ତୁମର ପ୍ରାର୍ଥନାକୁ ଅବହେଳା ଦେଖାଉଛନ୍ତି । କୁଳାଡ଼ ଦୁର୍ଗରେ ନୀଳକଣ୍ଠଙ୍କର ଗତିବିଧି, ମୋତେ ଆଉ କିଛିଦିନ ପର୍ଯ୍ୟବେକ୍ଷଣ କରିବାକୁ ହେବ । ଦୁର୍ଗ ଅବରୋଧ କଲେ, ମହାରାଜାଙ୍କର ଓ ଘୁମୁସର ପ୍ରଜାଙ୍କର ସମର୍ଥନ ମୁଁ ପାଇ ପାରିବି କି ନା, ଏ ସମ୍ବାଦ ଅନ୍ତତଃ ଗୁପ୍ତଚର ମୁଖରୁ ମୋତେ ସଂଗ୍ରହ କରିବାକୁ ହେବ ।

ନିର । ଓଃ—ଏ କିନ୍ତୁ ଅନ୍ୟାୟ ମହାରାଜ ! ପ୍ରମୋଦ କକ୍ଷରେ ବସି, ଆମୋଦ ପ୍ରମୋଦ ପରିବର୍ତ୍ତିରେ ନାନା ରାଜ୍ୟର ରାଜନୀତି ଆଲୋଚନା କରିବା, ଗୋଟାଏ ବିରାଟ ଅନ୍ୟାୟ । ଏଗୁଡ଼ାକ, ଅନ୍ତତଃ ନିରଞ୍ଜନ ହଜମ କରିପାରେ ନା ।

ରାମ । (ହସି) କଣ ନରଞ୍ଜନ ? ଏତେ ଅକ୍ଷେପ କାହିଁକି ? ରାମାୟଣତ କେଉଁଠାରେ ଅଶୁଦ୍ଧ ହୋଇ ଯାଇ ନାହିଁ ?

ନର । ତା' ହୋଇଥିଲେ ତ କିଛି ଯେତେ ହୋଇ ନ ଥାନ୍ତା । ବରଂ ବାଲ୍ମୀକିଙ୍କ କେବଳ ଦୁଇପଦ ଗୀତ ଶୁଣିବାକୁ ପଡ଼ିଥାନ୍ତା ସିନା । କିନ୍ତୁ ଏଠାରେ ଯେ ନିରଞ୍ଜନର ଏକାବେଳକେ ମୁଖବନ୍ଦ । ସମାଲୋଚନାର ମଧ୍ୟ ଉପାୟ ନାହିଁ ।

ରାମ । ତୁମେ କଣ କହିବାକୁ ଚାହଁ ?

ନର । କିଛି ନୁହେଁ--ପ୍ରମୋଦ କପଟୀ ହଠାତ୍ ଅଳି ଗୋଟାଏ ନିର୍ଜନ ମନ୍ତ୍ରଣା କକ୍ଷରେ ପରିଣତ ହୋଇଥିବାରୁ, ସମସ୍ତ ବ୍ୟବସ୍ଥାରେ ଗଣ୍ଡଗୋଳ ହୋଇଯାଇଛି ।

ରାମ । ଏହି କଥା ? ଚିନ୍ତା କରନା ! ତୁମର ସମସ୍ତ ବ୍ୟବସ୍ଥା ବର୍ତ୍ତମାନ ଯଥାମତ କରାଯିବ । ରାଜକୁମାର ଟିକିଏ ବ୍ୟସ୍ତ ହୋଇ ପଡ଼ିଥିଲେ । ସୁତରାଂ ତାଙ୍କୁ ଅଶ୍ୱାସନା ଦେଉଥିଲି ମାତ୍ର । ପ୍ରକୃତରେ ନିରଞ୍ଜନ, ତାଙ୍କର ଅବସ୍ଥାକୁ ତୁମେ ଅନୁଭବ କରିପାରିବ ନାହିଁ । ଜଣେ ନିର୍ଦ୍ଦୋଷ ରାଜ-କୁମାରର ନିର୍ବାସନକୁ, ବୟୋବୃଦ୍ଧ ରାଜା ମୁଁ, ମୁଁ ମଧ୍ୟ ଅନୁମୋଦନ କରି ପାରୁ ନାହିଁ । ଅଉ, ସେ'ତ ଯୁବକ ମାତ୍ର ।

ନର । ସେଥିପାଇଁ ତ କହୁଛି ମହାରାଜ । ଯେ, ଏ ନୀରସ ରାଜନୀତିର ଚର୍ଚ୍ଚାଟାକୁ ଟିକିଏ ସହଜ ସରଳ ଭାବରେ ଗ୍ରହଣ କରିବାକୁ ହେଲେ, ମଧ୍ୟେ ମଧ୍ୟେ ନର୍ତ୍ତକୀର ସଙ୍ଗୀତ ଓ ନୃତ୍ୟରସରେ ମସ୍ତିଷ୍କଟାକୁ ଟିକିଏ ସତେଜ ଓ ରସାଣିତ କରିନେବା ଏକାନ୍ତ ପ୍ରୟୋଜନ । ନୋହିଲେ, ଭିତର ବାହାର ସମସ୍ତଟା ଯେ ଏକାବେଳକେ ବିପର୍ଯ୍ୟସ୍ତ ହୋଇଯିବ ।

ରାମ । (ହସି) ଅଚ୍ଛା, ବର୍ତ୍ତମାନ ତୁମେ ଅମୋଦ ପ୍ରମୋଦର ଯଥାସନ୍ଦ ବ୍ୟବସ୍ଥା ସ୍ୱଚ୍ଛନ୍ଦରେ କରିପାର ।

[ ନିରଞ୍ଜନର ଇଙ୍ଗିତ ପାଇ ନର୍ତ୍ତକୀ ଆସି ପ୍ରଥମେ ନୃତ୍ୟ-କଲା ଓ ପରେ ଗୀତ ଗାଇ, ମଧ୍ୟେ ମଧ୍ୟେ ନୃତ୍ୟ କଲା । ]

ନୀରଦ ଗଗନେ ଘୋଟି କରୁଥିଲା ଦିନେ ବୃଷ୍ଟି
ଘଟ ଘଟ ମାରୁଥିଲା ବଜ୍ର,
ନୀଳକଣ୍ଠ ଭେକ କୁଳ ଉଚ୍ଚେ କରୁଥିଲେ ସ୍ୱେଳ
ଡାହୁକ ବଚନ ଅତି ମଞ୍ଜରେ
ନଳନାକ୍ଷି,
ନିଶା ହୋଇଥିଲା ଅର୍ଦ୍ଧ ତହିଁ,
ନୀପତଳ ଯେନ ଗନ୍ଧଦନ୍ଧ ବନ୍ଧୁରେ ।୧।
ନିଷ୍ଟିତ୍ରେ ବିଳାସ ଶେଷ ଗବାକ୍ଷରୁ ଫେରି ତୋଷ
ଦେଖୁ ଯେ ଥିଲିଁ ଜଳଧାରେ,
ନିଦ୍ରା ଆଚ୍ଛାଦିଲା ଆସି କୋଳରେ ଯେନ ସୁକେଶୀ
ଶୁତିଲି ଅବଶ ଶେଜେ ଧୀରେ ରେ,
ନବବାଳ,
ନାଶ ଦୀପ ଯାଇ ବାତବଳେ,
ନିଚେଷ୍ଟ ହୋଇଲୁ ତହୁଁ କେତେବେଳେ ରେ ।୨।

ନିର । ନର୍ତ୍ତକୀର ନୃତ୍ୟଗୀତକୁ କିପରି ଉପଭୋଗ କଲେ, ରାଜକୁମାର ?

ଧନ । ଚମତ୍କାର, କିନ୍ତୁ ଏ ସଙ୍ଗୀତଟିର କବି କିଏ, ନର୍ତ୍ତକୀ ?

ନର୍ତ୍ତକୀ । ଏହା ଘୁମୁସର ରାଜବଂଶର ରାଜକୁମାର ଉପେନ୍ଦ୍ର ଭଞ୍ଜଙ୍କର "ଚଉପଦୀ ଭୂଷଣ" ଗ୍ରନ୍ଥର 'ନ' ଅକ୍ଷରର ଗୀତ, ମଣିମା ।

ଧନ । ( ଆନନ୍ଦରେ ଗୋଟାଏ ସ୍ୱର୍ଣ୍ଣମୁଦ୍ରା ଦାନ କରି ) ନର୍ତ୍ତକି ! ଘୁମୁସରର କବିଶ୍ରେଷ୍ଠଙ୍କର ଚଉପଦୀ ଗାଇ ପାରିଛ ବୋଲି, ଏହି ସ୍ୱର୍ଣ୍ଣମୁଦ୍ରାକୁ ପୁରସ୍କାରରୂପେ ଗ୍ରହଣ କର ।

[ ନର୍ତ୍ତକୀ ପୁରସ୍କାର ନେଇ, ଅଭିବାଦନ କରି ପ୍ରସ୍ଥାନ କଲା । ]

ରାମ । କୁମାର ! ଉପେନ୍ଦ୍ରଙ୍କର ଅନେକ କାବ୍ୟ କବିତା ଇତିମଧ୍ୟରେ ପାଠ କରିବାର ସୁଯୋଗ ମୁଁ ପାଇଛି । ବାସ୍ତବିକ, ବଡ଼ ବିଚକ୍ଷଣ-ରଚନା ।

ଭାବ ଓ ଭାଷାର ଏପରି ଅପୂର୍ବ ମଧୁର ସମନ୍ୱୟ, ଅନ୍ୟ କବିଙ୍କଠାରେ ଏପର୍ଯ୍ୟନ୍ତ ଦେଖିବାର ସୌଭାଗ୍ୟ ମୋର ହୋଇ ନାହିଁ । ଆଉ, ସେହି ଉପେନ୍ଦ୍ର, ବୋଧହୁଏ କୁମାର ନୀଳକଣ୍ଠଙ୍କର ଜ୍ୟେଷ୍ଠ ପୁତ୍ର ?

ଘନ । ହଁ ରାଜା ସାହେବ ! ସେତିକ ମାତ୍ର ହିଁ ଜେନାମଣି ଉପେନ୍ଦ୍ରଙ୍କର ଦୁର୍ଭାଗ୍ୟ । ତଥାପି, ଉପେନ୍ଦ୍ରଙ୍କର କାବ୍ୟପ୍ରତିଭା, ପୃଥିବୀର ଯେ କୌଣସି ଦେଶର ଗର୍ବର ସାମଗ୍ରୀ । ପଞ୍ଚବିଂଶତି ବର୍ଷ ମାତ୍ର ବୟସ୍କ ଜେନାମଣିଙ୍କର ଅନୁପମ କାବ୍ୟ, କବିତା, ଛାନ୍ଦ, ଚଉପଦୀ ଓ ସଙ୍ଗୀତ ପ୍ରଭୃତିର ଅବାଧ ରଚନାମାନ ଦେଖିଲେ ଆପଣ ବିସ୍ମୟରେ ଅଭିଭୂତ ହୋଇ ପଡ଼ିବେ । ଏହା ମୋର ଅତିରଞ୍ଜିତ ବର୍ଣ୍ଣନା ନୁହେଁ ରାଜାସାହେବ । ଏହା ଧ୍ରୁବ, ସତ୍ୟ ଓ ପ୍ରତ୍ୟକ୍ଷ ।

ରାମ । ତା ହେଲେ, ସେ ନୀଳକଣ୍ଠଙ୍କର ଅତୀବ ପ୍ରିୟପାତ୍ର ହୋଇ ଥିବେ ନିଶ୍ଚୟ ।

ଘନ । ବିଧିର ବିଡ଼ମ୍ବନା—ରାଜାସାହେବ ! ଜେନାମଣିଙ୍କ ପରି ସତ୍ୟନିଷ୍ଠ ଓ ତେଜସ୍ୱୀ ଯୁବକ, ଅତ୍ୟାଚାରୀ ନୀଳକଣ୍ଠଙ୍କର କୌଣସି କାର୍ଯ୍ୟକୁ ଅନୁମୋଦନ କରନ୍ତି ନାହିଁ । ଏପରିକି, ସେ ନିଜର ପିତାଙ୍କର ଛାୟା ସୁଦ୍ଧା ସ୍ପର୍ଶ କରିବାକୁ ଘୃଣାବୋଧ କରନ୍ତି । ଘୁମୁସର ରାଜ୍ୟର ଭାବ-ଭୋଳା ଅଦ୍ୱିତୀୟ କବି ସେ—ଏହି ଏତିକି ମାତ୍ର ପରିଚୟରେ ସେ ଅତି ଅତୀବ ଲୋକପ୍ରିୟ । ପାଷଣ୍ଡ ନୀଳକଣ୍ଠଙ୍କ ପରି ରାଜ୍ୟ ବା ରାଜତ୍ୱ ଅପ-ହରଣର ସ୍ୱପ୍ନ ଦେଖିବା, ତାଙ୍କର ଏ ଜନ୍ମରେ ବୋଧହୁଏ ସମ୍ଭବ ନୁହେଁ ।

ନର । ଠିକ୍ କହୁଛନ୍ତି, ରାଜକୁମାର ! କାବ୍ୟ କବିତାର ରସମୟ ସୃଷ୍ଟିରେ ଯେ ଏତେଦୂର ଅଭିଭୂତ, ରାଜମୁକୁଟ ଭାର ବହନ କରିବାକୁ ତାର ମସ୍ତକ ବୋଧହୁଏ ତେତେ ଶକ୍ତ ନୁହେଁ ।

ରାମ । (ଆସନ ତ୍ୟାଗ କରି) ବାସ୍ତବିକ—ରାଜା, ରାଜ୍ୟ, ରାଜତ୍ୱ ଓ ରାଜସିଂହାସନ ଏ ଦୁନିଆରେ ଚିରଦିନ ଅଭିଶପ୍ତ ! ନରକର ବିଭୀ-ଷିକାରେ ଏହାର ଆରମ୍ଭ ଓ ଶେଷ ମଧ୍ୟ ।

(କହୁ କହୁ ଚିନ୍ତିତ ଭାବରେ ଚାଲିଗଲେ । ଘନଭଞ୍ଜ ଓ ନରଞ୍ଜନ ତାଙ୍କର ଅନୁସରଣ କଲେ ।)

---

# ତୃତୀୟ ଦୃଶ୍ୟ

[ କୁଲଡ଼ ଦୁର୍ଗାଭ୍ୟନ୍ତରସ୍ଥ ଅନ୍ତଃପୁରର ଏକାଂଶ । ସମ୍ମୁଖରେ ଗୋଟିଏ ପ୍ରାଚୀରର କେତେକାଂଶ ଦେଖାଯାଉଥିଲା । ସେହି ପ୍ରାଚୀରକୁ ଲାଗି ରହିଥିବା ଗୋଟିଏ ପ୍ରାସାଦର ବାରଣ୍ଡା ଉପରେ ଠିଆ ହୋଇ, ମଣ୍ଡାଦେବୀ ଧୀର ସ୍ୱରରେ ଚମ୍ପା ସହିତ କଥାବାର୍ତ୍ତା କରୁଥିଲେ । ପ୍ରାଚୀରର ପଶ୍ଚାଦ୍‌ଭାଗରେ ଥିବା ଅନ୍ୟାନ୍ୟ ରାଜପ୍ରାସାଦ ଗୁଡ଼ିକ ବାହାରକୁ ସ୍ପଷ୍ଟରୂପେ ପ୍ରତିଭାତ । ବାରଣ୍ଡାର ଠିକ୍ ତଳେ, ପ୍ରାଚୀରକୁ ଲାଗି ଠିଆ ହୋଇଥିଲା ଚମ୍ପା ।—ପ୍ରୌଢ଼ା ବିଧବା ବ୍ରାହ୍ମଣୀ ସେ, ପରିଧାନ ତାର ଖଣ୍ଡେ ଖଇରି ରଙ୍ଗର ବ୍ରହ୍ମପୁରୀ ମଠାଥାନ । ସମୟ—ଅପରାହ୍ଣ । ତଥାପି ସୂର୍ଯ୍ୟକିରଣର ପ୍ରାଚୁର୍ଯ୍ୟ ତେତେବେଳେ ସେଠାରେ ଜ ଥିଲା ।]

ଚମ୍ପା । ରାଣୀମା'ଙ୍କର ଆଦେଶ ମୁଁ ତ କେବେ ଅମାନ୍ୟ କରି ନାହିଁ । ଆଜି କାହିଁକି ଅକାରଣରେ ମୋତେ ସନ୍ଦେହ କରୁଛନ୍ତି, ମା ?

ମଣ୍ଡା । ସନ୍ଦେହ କରିବାର ପ୍ରୟୋଜନ ଆଜିକାଲି ଖୁବ୍ ବେଶୀ ହୋଇ ପଡ଼ିଛି, ଚମ୍ପା ! ଅନ୍ତତଃ ଘନଶ୍ୟାମଙ୍କ ନାମରେ ମୁଁ ଯେଉଁ ମିଥ୍ୟା ଅଭିଯୋଗ ସେଦିନ ଆଣିଥିଲି, ତାହା ଫଳରେ ତୁମର ଗତିବିଧି ଉପରେ ଦୁର୍ଗର ସମସ୍ତେ ଲକ୍ଷ୍ୟ ରଖିଛନ୍ତି । ସୁତରାଂ ସମସ୍ତ ସତର୍କ ଦୃଷ୍ଟିକୁ ଆଡ଼େଇ, ଏତେ ବଡ଼ ଗୋପନୀୟ କାମଟାଏ କରିବା, ଖୁବ୍ ସହଜ ବ୍ୟାପାର ନୁହେଁ, ଚମ୍ପା ।

ଚମ୍ପା । ଶୁଣନ୍ତୁ ରାଣୀ ମା—ବିଧବା ବ୍ରାହ୍ମଣୀଟିଏ ମୁଁ—ସଂସାରରେ ଆଜି ମୋର ନିଜର ବୋଲି କେହି ନାହାନ୍ତି । କେବଳ ଆପଣଙ୍କର ଅନୁଗ୍ରହରୁ ଏ ଦୁର୍ଗରେ ପ୍ରବେଶ କରିବାର ଅଧିକାର ମୁଁ ପାଇ ପାରିଥିଲି, ଯାହା ଫଳରେ, ଚମ୍ପା ଆଜି ଦୁନିଆରେ ନିର୍ବିଘ୍ନରେ ତାର ପେଟ ପୋଷି ସୁଖଶାନ୍ତିରେ ରହିପାରିଛି । ଏ କଥାତ କେବେ ମୁଁ ଭୁଲି ପାରିବି ନାହିଁ,

ରାଣୀମା ! ସୁତରାଂ ଆପଣଙ୍କର ମଙ୍ଗଳ ଲାଗି, ଯେତେ ବଡ଼ ଗୋପନୀୟ କାର୍ଯ୍ୟ ହେଉ ପଛକେ, ଏପରି କି, ସେଥିରେ ଯଦି ଚମ୍ପାର ଜୀବନପ୍ରତି ବିପଦ ଆସେ, ତଥାପି ମୁଁ ତାହା କରି ପାରିବି । କୁହନ୍ତୁ, କଣ କରିବାକୁ ହେବ ?

ମଣ୍ତ୍ରୀ । (ଧୀରେ) ମହାରାଜ ଧନଞ୍ଜୟ ଭଞ୍ଜଙ୍କର ଖାଦ୍ୟରେ ବିଷ ପ୍ରୟୋଗ କରି, ତାଙ୍କୁ ହତ୍ୟା କରିବାକୁ ହେବ । ଏଥିଲାଗି ତୁମର ସାହାଯ୍ୟ ମୋର ପ୍ରୟୋଜନ ।

ଚମ୍ପା । ( ଚମକି ପଡି ) କଣ କହିଲେ, ରାଣୀମା ! ମହାରାଜାଙ୍କ ଖାଦ୍ୟରେ ବିଷ ? ଏ ଯେ ବଡ଼ ସାଙ୍ଘାତିକ କାର୍ଯ୍ୟ, ମା ?

ମଣ୍ତ୍ରୀ । ( ଧମକ୍ ଦେଇ ) ଚିତ୍କାର କର ନା, ଚମ୍ପା ! ଏହି ଦୁର୍ଗ ପ୍ରାଚୀରର ମଧ୍ୟ କାନ ଅଛି ! ସାବଧାନ । କୁହ, ମୋତେ ତୁମେ ସାହାଯ୍ୟ କରି ପାରିବ, କି ନା ?

ଚମ୍ପା । ରାଣୀମା'ଙ୍କୁ ଯେତେବେଳେ ସ୍ପଷ୍ଟ ପ୍ରତିଶ୍ରୁତି ମୁଁ ଦେଇସାରିଛି, ତେତେବେଳେ ମୁଁ ସବୁ ସାହାଯ୍ୟ କରିବି । କିନ୍ତୁ ଧରା ପଡ଼ିଗଲେ ଯେ ମହା ଅନର୍ଥ ଘଟିବ, ରାଣୀମା ! ଆପଣ ଏ ରାଜ୍ୟର ମହାରାଣୀ, ସୁତରାଂ ଆପଣଙ୍କର କେଶାଗ୍ର ସୁଦ୍ଧା କେହି ସ୍ପର୍ଶ କରିବାକୁ ସାହସ କରିବେ ନାହିଁ । କିନ୍ତୁ ରାନ୍ଧୁଣୀ ଚମ୍ପାର ଯେ ସଙ୍ଗେ ସଙ୍ଗେ ମୁଣ୍ଡକାଟ ହେବ ।

ମଣ୍ତ୍ରୀ । ସେ ଚିନ୍ତା ତୁମକୁ କରିବାକୁ ପଡ଼ିବ ନାହିଁ, ଚମ୍ପା ! ମହାରାଜାଙ୍କର ମୃତ୍ୟୁ ସଙ୍ଗେ ସଙ୍ଗେ, ମୋର ନୀଳକଣ୍ଠ ହେବ, ଏ ରାଜ୍ୟର ରାଜା । ସୁତରାଂ ରାଜମାତା ମଣ୍ତ୍ରୀଙ୍କ ଚକ୍ଷୁ ସମକ୍ଷରେ, କେହି ଯେ ତୁମର ଅନିଷ୍ଟ ସାଧନ କରି ପାରିବ, ଏ ଆଶଙ୍କା ତୁମର ଅମୂଳକ ।

ଚମ୍ପା । କିନ୍ତୁ କି ଉପାୟରେ ବିଷ ପ୍ରୟୋଗ କରିବାକୁ ହେବ, ତାହା ତ ମୋତେ ଜଣା ନାହିଁ ।

ମନ୍ତ୍ରୀ । ତାର ଉପାୟ ମୁଁ ତୁମକୁ ଜଣାଇଦେବି । ଅଚ୍ଛା—ମହାରାଜା ଆଗପରି ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ସରୁ ଚାଉଳ ଓ ଗରମ ଦୁଧ ମଣୋହି କରୁଛନ୍ତି, ନା ଇତିମଧ୍ୟରେ ଅନ୍ୟ କିଛି ପରିବର୍ତ୍ତନ ହୋଇଛି ?

ଚମ୍ପା । ଏହି ବ୍ୟବସ୍ଥା ଠିକ୍ ଆଗପରି ଚାଲିଛି, ରାଣୀମା ! କୌଣସି ପରିବର୍ତ୍ତନ ହୋଇ ନାହିଁ ।

ମନ୍ତ୍ରୀ । ଉତ୍ତମ, ଏହି ସରୁଚାଉଳ ଓ ଦୁଧ ଉଭୟରେ ବିଷ ମିଶ୍ରିତ କରିବାକୁ ହେବ । କିପରି ତାହା ମିଶ୍ରିତ କରିବାକୁ ହେବ, ତାହା ମଧ୍ୟ ମୁଁ ତୁମକୁ ଭଲରୂପେ ଦେଖାଇ ଦେବି । ଯେଉଁଦିନ ଯେତେବେଳେ ମୁଁ ଆଦେଶ ଦେବି, ଠିକ୍ ସେହିକ୍ଷଣି ତୁମେ ତୁମର କାର୍ଯ୍ୟରେ ଲାଗିଯିବ । ଆଉ ସେ ଖାଦ୍ୟ ଖୁଆଇବାର ଦାୟିତ୍ୱ ମୋର । ତୁମେ କେବଳ ଆଗରୁ ପ୍ରସ୍ତୁତ କରି ରଖିଥିବ ମାତ୍ର ।

ଚମ୍ପା । କିନ୍ତୁ ବିଷ ତ ମୋ ପାଖରେ ନାହିଁ, ରାଣୀମା ?

ମନ୍ତ୍ରୀ । ଅଧୀର ହୁଅ ନା, ଚମ୍ପା ! ବିଷ ମୋ ପାଖରେ ଅଛି । ଠିକ୍ ସମୟରେ ତାର ସଦ୍‌ବ୍ୟବହାର କରିବାଲାଗି, ତାହା ତୁମକୁ ମୁଁ ଦେବି । ଆଉ ମନେ ରଖିଥିବ ଚମ୍ପା, ଏହି ଏତିକି ସାହାଯ୍ୟ ମୋତେ କରିପାରିଲେ, ଭବିଷ୍ୟତରେ ଅଖଣ୍ଡ ଐଶ୍ୱର୍ଯ୍ୟଭୋଗ, ତୁମର ଜୀବନର ଗତିକୁ ପର୍ଯ୍ୟନ୍ତ ବଦଳାଇ ଦେବ ।

ଚମ୍ପା । ଭଲ ମନ୍ଦ ମୁଁ କିଛି ବୁଝେ ନା, ରାଣୀମା ! ଆପଣଙ୍କର ଆଦେଶ ମାତ୍ରହିଁ ମୋର ଶିରୋଧାର୍ଯ୍ୟ ।

ମନ୍ତ୍ରୀ । କିନ୍ତୁ ପ୍ରକୃତ କାର୍ଯ୍ୟ ହେବା ପୂର୍ବରୁ, ଏହି ଘଟଣା ଯଦି ପ୍ରକାଶ ପାଏ ?

ଚମ୍ପା । ରାଜ୍ଞୀ ଚମ୍ପାର ଏତେ ବଡ଼ ଦୁର୍ବୁଦ୍ଧି ହେବ ନାହିଁ, ରାଣୀମା ! ସେ ବିଷୟରେ ଆପଣ ନିଶ୍ଚିନ୍ତ ରହିପାରନ୍ତି ।

[ ହଠାତ୍ ଅତି ସନ୍ତର୍ପଣରେ କୁମାର ନୀଳକଣ୍ଠ ପ୍ରାଚୀର ଅଢ଼ରୁ ପ୍ରବେଶ କଲେ । ]

ନୀଳ । ଦନ୍ତ୍ରା କଣ ଏ ପର୍ଯ୍ୟନ୍ତ ଏଠାକୁ ଆସିନାହିଁ, ମା ?

[ ନୀଳକଣ୍ଠଙ୍କୁ ଦେଖି ଚମ୍ପା ପ୍ରସ୍ଥାନ କଲା । ]

ମନ୍ତ୍ରୀ । ନା—; ବୋଧହୁଏ ଆସୁଥିବ । କିନ୍ତୁ, ତୁମେ ଏତେ ଉତ୍ତେଜିତ କାହିଁକି, ନୀଳକଣ୍ଠ ?

ନୀଳ । ଉତ୍ତେଜିତ ହେବାର ଯଥେଷ୍ଟ କାରଣ କି ନାହିଁ, ମା ? ଘନଭଞ୍ଜର ନିର୍ବାସନ ପରେ, ସମସ୍ତ ରାଜ୍ୟବ୍ୟାପୀ ଗୋଟାଏ ବିରାଟ ପ୍ରଚାର ଚାଲିଛି, ମୋ ବିରୁଦ୍ଧରେ ଯେ, ନୀଳକଣ୍ଠ ଚକ୍ରାନ୍ତକାରୀ ଓ ଅତ୍ୟାଚାରୀ !

ମନ୍ତ୍ରୀ । ବ୍ୟସ୍ତ ହୁଅନା, କୁମାର । ଏ ସମସ୍ତ ପ୍ରଚାରର କଣ୍ଠରୋଧ କରିବାର ବ୍ୟବସ୍ଥା ମୁଁ କରି ସାରିଲିଣି । ଚମ୍ପା ମୋର ପ୍ରସ୍ତାବରେ ସମ୍ମତା । କେବଳ ସୁଯୋଗର ପ୍ରତୀକ୍ଷାରେ ମୁଁ ରହିଛି ।

ନୀଳ । ହଁ ମା—ଯେତେ ଶୀଘ୍ର ସମ୍ଭବ, ପ୍ରଥମେ ଏହି ଆଠରାଜାଙ୍କୁ ଶେଷ କରିବାକୁ ହେବ । ସମସ୍ତ ଅନର୍ଥର ମୂଳପାତ ତାଙ୍କରି ଦ୍ୱାରାହିଁ ସମ୍ଭବ ହେଉଛି ।

ମନ୍ତ୍ରୀ । (ବିରକ୍ତ ହୋଇ) ଏହି ବୁଦ୍ଧି, ଏହି ଯୋଗ୍ୟତା ନେଇ, ତୁମେ ଘୁମୁସର ସିଂହାସନ ଅଧିକାର କରିପାରିବ ବୋଲି ଭାବୁଛ, କୁମାର ? ଗୋବିନ୍ଦ ଭଞ୍ଜଙ୍କୁ ହତ୍ୟା କରିବାକୁ ଚାହଁ ତୁମେ ? କିନ୍ତୁ ଜାଣ କି, ମୂର୍ଖ ? ଗୋବିନ୍ଦ ଭଞ୍ଜଙ୍କ ହତ୍ୟା ସମ୍ବାଦ ରାଜ୍ୟରେ ପ୍ରଚାର ହେଲା ମାତ୍ରେ, ରାଜ୍ୟବ୍ୟାପୀ ସନ୍ଦେହ ଓ ଅବିଶ୍ୱାସର ଏକମାତ୍ର ଲକ୍ଷ୍ୟସ୍ଥଳ ହେବ ତୁମେ ? ବିଶେଷତଃ ଘନଭଞ୍ଜଙ୍କର ନିର୍ବାସନ ପରେ, ତାଙ୍କ ପିତା ଗୋବିନ୍ଦ ଭଞ୍ଜଙ୍କ ହତ୍ୟାଟାକୁ ଘୁମୁସର ପ୍ରଜା କି ନୀରବରେ ସମର୍ଥନ କରିବେ ? ବରଂ ଏ ହତ୍ୟାର ପରିଣାମ ତୁମର ସିଂହାସନ ଲାଭ ପଥରେ ବିରାଟ ପ୍ରତିବନ୍ଧକ ଛଡ଼ା ଅନ୍ୟ କିଛି ହେବ ନାହିଁ, ଏ କଥା ଭୁଲିଯାଅ ନା, କୁମାର !

ନୀଳ । ତା ହେଲେ, ଏହି ଅଥର୍ବ ଗୋବିନ୍ଦ ଭଞ୍ଜ କଣ ନିର୍ବିଘ୍ନରେ ଆଠରାଜ ହୋଇ ଘୁମୁସର ସିଂହାସନରେ ବସି ରହିଥିବେ ? ଏହାହିଁ କି ଆପଣଙ୍କର ପରିକଳ୍ପନା, ମା ?

ମନ୍ତ୍ରୀ । ନା—ତାହା ମଧ୍ୟ ନୁହେଁ । ଶୁଣ—ମୋର ଶିକାରର ପ୍ରଥମ ଲକ୍ଷ୍ୟ—ବୁଦ୍ଧିଭ୍ରଷ୍ଟ ବୃଦ୍ଧ ମହାରାଜ ଧନଞ୍ଜୟ । ଆଉ, ତାଙ୍କର ହତ୍ୟା ପରେ, ରାଜ୍ୟଲିପ୍ସୁ ଗୋବିନ୍ଦ ଭଞ୍ଜଙ୍କୁ ମୁଁ ଅଭିଯୁକ୍ତ କରିବାକୁ ଚାହେଁ, ଧନଞ୍ଜୟଙ୍କର ହତ୍ୟାକାରୀ ରୂପେ । ସମଗ୍ର ଘୁମୁସର ରାଜ୍ୟରେ ଏହି ହତ୍ୟାର କାରଣ ସ୍ୱରୂପ ପ୍ରଚାର କରିବାକୁ ହେବ ଯେ, ଯୁବ ଘନଭଞ୍ଜଙ୍କର ନିର୍ବାସନରେ ଉତ୍ତ୍ୟକ୍ତ ହୋଇ, ଥାଟରାଜ ସ୍ୱୟଂ, ସିଂହାସନ ଲୋଭ ଆଶାରେ ବିଷ ପ୍ରୟୋଗ କରି, ମହାରାଜାଙ୍କୁ ହତ୍ୟା କରିଛନ୍ତି ।

ନୀଳ । (ଆନନ୍ଦରେ) ବାଃ—ଏ ଯେ ଅତି ଚମତ୍କାର ବ୍ୟବସ୍ଥା, ମା ! ଏ ଯେ ଗୋଟାଏ ଶୂଳରେ ଦୁଇଟା କପି ।

ମନ୍ତ୍ରୀ । କେବଳ ନୁହେଁ କୁମାର ! ମହାରାଜାଙ୍କର ହତ୍ୟାର ଅବ୍ୟବହିତ ପରେ, ଘୁମୁସରର ନବୀନ ରାଜା ନୀଳକଣ୍ଠଙ୍କର ଦରବାରରେ, ବନ୍ଦୀଭାବରେ ଉପସ୍ଥିତ ହେବେ, ଏହି ଅଭିଯୁକ୍ତ ଥାଟରାଜ ଗୋବିନ୍ଦ ଭଞ୍ଜ—କେବଳ ପ୍ରାଣଦଣ୍ଡର ଆଦେଶ ପ୍ରତ୍ୟାଶା କରି । ମୋର କୁମାର ନୀଳକଣ୍ଠଙ୍କ ପକ୍ଷରେ, ଏହା କି କମ୍ ବଡ଼ ସୌଭାଗ୍ୟ ?

ନୀଳ । ଠିକ୍ କହିଛନ୍ତି ମା, ବରଂ ପ୍ରକାଶ୍ୟ ଦରବାରରେ, ଥାଟରାଜାଙ୍କ ପ୍ରତି ଏ ପ୍ରକାର ପ୍ରାଣଦଣ୍ଡ ଆଦେଶକୁ, କୁମାର ଗଙ୍ଗାଧର ଓ ରାଜ୍ୟର ପ୍ରଜାବର୍ଗ ମଧ୍ୟ, ଆନ୍ତରିକ ଅନୁମୋଦନ କରିବେ । ଆମ ଉପରେ ସନ୍ଦେହର ଛାୟା ମାତ୍ର, ଆଉ କାହାର ନ ଥିବ । (ଦନ୍ତୀର ପ୍ରବେଶ) ବିଷ ସଂଗ୍ରହ କରି ପାରିଛ, ଦନ୍ତୀ ?

ଦନ୍ତୀ । ଦନ୍ତୀ ଯେଉଁ କାର୍ଯ୍ୟରେ ଯେତେବେଳେ ହାତ ଦେଇଛି, ସେଥିରେ ବିଫଳତା ସେ ଏ ପର୍ଯ୍ୟନ୍ତ ତ କେବେ ଲାଭ କରି ନାହିଁ, ରାଜକୁମାର ! ତାପରେ, ମଣିମାଙ୍କର ପଟ୍ଟଶିଷ୍ୟ ମୁଁ । ସୁତରାଂ ଶାରୀରିକ ଯୋଗ୍ୟତା ଥିବାସତ୍ତ୍ୱେ, ଏ ରାଜ୍ୟର ଭବିଷ୍ୟତ ସେନାପତି ହେବାର ମାନସିକ ଯୋଗ୍ୟତା, ଏବଠାରୁ ଅର୍ଜ୍ଜନ କରିବାର ଅଭ୍ୟାସ ନ କଲେ, ଚଳିବ କିପରି ମଣିମା ? ଏହି ନିଅନ୍ତୁ—(ପୁଡ଼ିଆ ଦେଲେ) ଆପଣଙ୍କର

ବିଷ । ମାରାତ୍ମକ ବିଷଧର ସର୍ପର ଗରଳ ଏହା । ସୁତରାଂ, ଅତି ସାବଧାନରେ ରକ୍ଷା କରିବେ । କିନ୍ତୁ—ରାଜକୁମାର, ଏହି ମାରାତ୍ମକ ହଳାହଳର ଏତେ ତୁରନ୍ତ ପ୍ରୟୋଜନ ଯେ କାହିଁକି ପଡ଼ିଲା, ମୁଁ ତ କିଛି ବୁଝିପାରୁ ନାହିଁ ?

ନୀଳ । ଦୁନିଆର ପ୍ରତ୍ୟେକ କାର୍ଯ୍ୟର କାରଣ ଯେ ତୋତେ ବୁଝିବାକୁ ହେବ, ଏହା ବୋଧହୁଏ ବିଧାତାଙ୍କର ଅଭିପ୍ରେତ ନୁହେଁ, ଦନ୍ତା ! ସୁତରାଂ, ତୋର ଏ ଅହେତୁକ କୌତୂହଳ କାହିଁକି ?

ଦନ୍ତା । ରାଣୀମା, ମଝେ ମଝେ ମୋର ବଡ଼ ଦୁଃଖ ହୁଏ ଯେ,ରାଜକୁମାର ମୋର ସରଳତାକୁ ଭୁଲ ବୁଝି ମୋତେ ଅଯଥା ତୀକ୍ଷ୍ଣ ସମାଲୋଚନାରେ ଜର୍ଜରିତ କରି ପକାନ୍ତି । ଅଥଚ,ସମଗ୍ର ଘୁମୁସର ରାଜ୍ୟରେ କୁମାରଙ୍କର ବିଶ୍ୱସ୍ତ ଦେହରକ୍ଷୀ ମୁଁ—ଏକଥା ଉଚ୍ଚାରଣ କରିବାର ସାହସ ମୋର ଅଛି ।

ମନ୍ତ୍ରୀ । କୁମାର ନୀଳକଣ୍ଠଙ୍କୁ ତୁ ଭୁଲ୍ ବୁଝୁଛୁ, ଦନ୍ତା । କୁଟିଳ ରାଜନୀତିର ଗମ୍ଭୀରତା ସମସ୍ତଙ୍କୁ ସବୁ ସମୟରେ ବୋଧଗମ୍ୟ ହୁଏ ନା । ଏଥିରେ ଅନେକ କିଛି ବିଷୟ ଅଛି, ଯାହା ତୋର ସରଳ ପ୍ରାଣରେ ଗୋଟାଏ ଅନର୍ଥକ ଗୋଲକଧନ୍ଦା ସୃଷ୍ଟି କରିପାରେ । ସୁତରାଂ ସେ ସବୁ ବିଷୟ ତୋର ଅଜ୍ଞାତ ରହିଲେ, ତୋର କିଛି କ୍ଷତି ହେବ ନାହିଁ, ବରଂ କୁମାରଙ୍କର ତହିଁରେ ମଙ୍ଗଳ ।

ଦନ୍ତା । କଥାଟାକୁ ଏହିପରି ଟିକିଏ ସହଜ ସରଳ ଭାବରେ ବୁଝାଇ ଦେଲେ, ଦନ୍ତାର ଆକ୍ଷେପ କରିବାର ତ କୌଣସି କାରଣ ନ ଥାନ୍ତା ?

ନୀଳ । ଚୁପ୍ କର୍ ଦନ୍ତା । ଜୀବନଟାକୁ ଯଦି ସ୍ୱାଭାବିକ ଉପଭୋଗ କରିବାକୁ ବାସନା ତୋର ଥାଏ, ତେବେ ବର୍ତ୍ତମାନ କୌଣସି ପ୍ରଶ୍ନ କରିବାର ଦୁଃସାହସ କରନା । କେବଳ ନୀରବ ଦର୍ଶକ ହିସାବରେ ଘୁମୁସର ରାଜ୍ୟର ଭାଗ୍ୟ ବିବର୍ତ୍ତନକୁ ଦେଖି ଯା । ତୋର ସମସ୍ତ ପ୍ରଶ୍ନର ଉତ୍ତର ତୁ ପାଇ ପାରିବୁ ସେହିଦିନ, ଯେଉଁଦିନ ଘୁମୁସରର ରାଜା ନୀଳକଣ୍ଠ ଭଞ୍ଜଙ୍କର ସେନାପତି ଭାବେ, ମୋର ଦକ୍ଷିଣ ପାର୍ଶ୍ୱରେ ଆସନ ଅଧିକାର କରିବାର ଗୌରବ ତୋତେ ଦିଆଯିବ । କିନ୍ତୁ ତତ୍ପୂର୍ବରୁ ନୁହେଁ ।

ମନ୍ତ୍ରୀ । ବାସ୍ତବିକ ଦନ୍ତା—ବର୍ତ୍ତମାନ ରାଜନୀତିର ଅର୍ଥ ଚତୁରତାର ଘୂର୍ଣ୍ଣୀ । ସେ ସବୁ ବୁଝିବାକୁ ଚେଷ୍ଟା ନ କରିବା, ତୋ ପକ୍ଷରେ ଉଚିତ । ଅନ୍ଧଭକ୍ତିରେ କେବଳ କୁମାରଙ୍କର ଆଦେଶ ପାଳନ କରି ଯା । ମନ୍ତ୍ରୀରାଣୀ ତୋ ନିକଟରୁ ଏତିକି ମାତ୍ର ଆଶା କରନ୍ତି । ଯାଅ କୁମାର, ଏଠାରେ ଆଉ ବେଶୀକ୍ଷଣ ଏହିପରି ଭାବରେ ରହିବାଟାକୁ ମୁଁ ଭଲ ବୋଧ କରୁ ନାହିଁ । ସତର୍କତା ବର୍ତ୍ତମାନ ଏକାନ୍ତ ପ୍ରୟୋଜନ ।

[ ଏତିକି କହି ମନ୍ତ୍ରୀଦେବୀ ପ୍ରାସାଦ ମଧ୍ୟକୁ ଚାଲିଗଲେ । ତାଙ୍କର ବିପରୀତ ଦିଗରେ ପ୍ରାଚୀର ପଥ ଦେଇ ଦନ୍ତା ଓ ନୀଳକଣ୍ଠ ପ୍ରସ୍ଥାନ କଲେ । ]

---

# ଚତୁର୍ଥ ଦୃଶ୍ୟ

[ ନୟାଗଡ଼ ମାଳସାହିର ଏକାଂଶ । ଗୋଟିଏ ଅତି ପରିଷ୍କୃତ ସୁନିର୍ମିତ ଗ୍ରାମ୍ୟ କୁଟୀର । କୁଟୀର ମଧ୍ୟକୁ ପ୍ରବେଶ କରିବାର ଦ୍ୱାରଟି ଅର୍ଦ୍ଧୋନ୍ମୁକ୍ତ ହୋଇ ରହିଛି । ସେହି ଦ୍ୱାରର ଦୁଇପାର୍ଶ୍ୱରେ ଦୁଇଟି କ୍ଷୁଦ୍ର ବାତାୟନ । ସେହି କୁଟୀରକୁ ଲାଗି ଗୋଟିଏ ପରିଷ୍କୃତ ପରିଚ୍ଛନ୍ନ ବାରନ୍ଦା । ସମ୍ମୁଖରେ ମାଳସାହି ମଧ୍ୟକୁ ଯିବାର ଗ୍ରାମ୍ୟପଥ । କୁଟୀରଟିର କାନ୍ଥ ଦେହରେ ଉତ୍କଳଦେଶ-ସୁଲଭ ଲତା ଓ ମୂରୁଜ ପରିଶୋଭିତ । ସମୟ ପ୍ରଭାତ । ତରଳ ସୂର୍ଯ୍ୟ କିରଣ ଗୁଡ଼ାଏ ବାରନ୍ଦା ଉପରେ ଅଙ୍କାଡ଼ ହୋଇ ପଡ଼ିଛି । ସେହି ବାରନ୍ଦାର ଗୋଟିଏ ଅଂଶରେ ସଦ୍ୟସ୍ନାତ ପଟ୍ଟବସ୍ତ୍ର ପରିହିତ ଉପେନ୍ଦ୍ର ଖଣ୍ଡେ ମୃଗଚର୍ମ ଉପରେ ବସିଛନ୍ତି ଗୋଟିଏ ପୋଥି ଓ ଲେଖଣୀ ଧରି । ବାରନ୍ଦାର ବିପରୀତ ଅଂଶରେ ଉପେନ୍ଦ୍ରଙ୍କଠାରୁ କିଛି ଦୂରରେ ବସି ପ୍ରୌଢ଼ା ମାଳୁଣୀ ହାତବଡ଼ା ଫୁଲମାଳ ଗୁନ୍ଥିବାରେ ଲାଗିଛି ।]

ଉପେ । ତୁମେ ଯେ ଏତେଦୂର କାବ୍ୟ ରସିକା, ତାହାତ ମୁଁ ଆଗରୁ ଜାଣି ନ ଥିଲି, ହାରା ! କାଲି ସନ୍ଧ୍ୟାରେ ମୋର ଲାବଣ୍ୟବତୀର ଯେଉଁ ଛନ୍ଦଟି, ତୁମେ ସ୍ୱର ସଂଯୋଗ କରି ଆବୃତ୍ତି କରୁଥିଲ, ତାହା ମୁଁ ଶୁଣି ପାରିଛି । ଏ ବୟସରେ ତୁମର ମଧୁର କଣ୍ଠଟିକୁ ଯେ ଏପରି ଅବିକୃତ ଅବସ୍ଥାରେ ତୁମେ ରଖି ପାରିଛ, ଏହା ଦେଖି ମୁଁ ବାସ୍ତବିକ ଚମତ୍କୃତ । ମୋର ମନେହୁଏ, ତୁମର କଣ୍ଠର ସାହଚର୍ଯ୍ୟ ଲାଭ କରି, ମୋର ଲାବଣ୍ୟବତୀ କାବ୍ୟ ରଚନା ଏତେଦିନେ ସାର୍ଥକ ହୋଇଛି ।

ମାଳୁଣୀ । ଆପଣଙ୍କ ପରି ଜଣେ ଅଦ୍ୱିତୀୟ କବିଙ୍କ ମୁଖରୁ, ଏତେ ଗୁଡ଼ାଏ ଅଯାଚିତ ପ୍ରଶଂସା ପାଇବାକୁ, ମାଳୁଣୀଟାଏ ମୁଁ, ବାସ୍ତବିକ ଯୋଗ୍ୟ ନୁହେଁ, କବିବର ! ଆପଣଙ୍କର ଅନୁପସ୍ଥିତିରେ, ଲାବଣ୍ୟବତୀ ପୋଥିଟି ପଢ଼ିସାରି ମୁଁ ଏତେ ତନ୍ମୟ ହୋଇ ପଡ଼ିଥିଲି ଯେ, ତହିଁରୁ କେତୋଟି ରସମୟ ଛନ୍ଦକୁ ମନେ ମନେ ଆବୃତ୍ତି କରିବାର ଲୋଭ ସଂବରଣ କରି

ପାରିନ୍ତି ନାହିଁ । ସୁତରାଂ ସେହି ଛନ୍ଦ ଅବୃତ୍ତି କରିବାରେ,ଯଦି କିଛି ପ୍ରଶଂସା ଲଭ କରିବାର କଥା, ତେବେ ତାହା ଏ ମାଲୁଣୀର ପ୍ରାପ୍ୟ ନୁହେଁ;ପ୍ରାପ୍ୟ କେବଳ ତାଙ୍କର, ଯେ ସେହି ଛନ୍ଦରେ ରସମୟୀ ମୂର୍ଚ୍ଛନା ଦେଇ ଏକ ଅମର କାବ୍ୟକଳା ସୃଷ୍ଟି କରି ପାରିଛନ୍ତି ।

ଭଞ୍ଜ । ଏ ପକ୍ଷପାତ ପ୍ରଶଂସା ଶୁଣିବାକୁ ମୁଁ ମୋଟେ ଅଗ୍ରହୀ ନୁହେଁ, ବରଂ ମୋର ଅନୁରୋଧ, କାଲିର ସେହି ଛନ୍ଦଟିକୁ ପୁଣି ଥରେ ଏପରି ସ୍ୱର ସଂଯୋଗ କରି ଅବୃତ୍ତି କର । ମୋର ରଚନା, ତୁମର କମନୀୟ କଣ୍ଠରେ କପରି ସ୍ୱପ୍ନରାଜ୍ୟ ଗୋଟାଏ ମାୟାଜାଲ ବିସ୍ତାର କରୁଛି,ତାକୁ ଥରେ ପ୍ରତ୍ୟକ୍ଷରେ ଅନୁଭବ କରିବାକୁ, ମୋର ଏକାନ୍ତ ଇଚ୍ଛା ।

ମାଲୁଣୀ । ଏଥିଲାଗି ଏତେ ମିନତି କାହିଁକି କରି ? ସେ ଯେ ଆପଣଙ୍କର ବାଣୀ, ଆପଣଙ୍କର ସ୍ୱର । ଶୁଣନ୍ତୁ —[ମାଲୁଣୀ ଫୁଲ ଗୁନ୍ଥୁ ଗୁନ୍ଥୁ ଗାଇଲେ]

ଦେଖି ନବ କାଳିକା ବିକାଳିକା ମାଳିକା
ଅଳି କାଳିକା ଦାନ୍ତ ମୂରି,
ରକ୍ଷା କେମନ୍ତେ କରି କରିବା ମଣ୍ଡକରି-
ଗଢକି ଏମନ୍ତ ଦମ୍ଭରୀ, ମୋ ସହଚରୀ,
ଭବେ ବହିଲେ ଏ କାଳକୁ
କଥା ଥିବ କାଳକାଳକୁ,
ଏକେତ କ୍ଷୀଣବଦନ ନେଳ୍ପ ଦୁର୍ଦ୍ଦିନ ଦିନ.
ନ ଲଭୁଁ ବନ୍ଧୁଙ୍କେ ମେଳକୁ ।୧।
ହତ ଅନମାନଙ୍କୁ ସତ କାମୀଜନଙ୍କୁ
ଅହି ପରି ଅହିତ ଏହି,
ହତ ହୁଣାନୁ ସାନୁ- ମାନରୁ ଭାନୁ ଜାନୁ-
ତାପରୁ ନିସ୍ତରିଲା ମହୀରେ ଯହିଁଚାହିଁ,
ବାଡ଼ବାନଳ ହୃଦସ୍ଥଳେ,
ଜଳେ ସେ ହତ ନୋହେ ଜଳେ,
କରୁଛି ଜାତ ଜାତ- ବେଦକୁ ସତ ଶତ-
ଦ୍ୱାରା ଛଳରେ ଘନ ବୋଲେ ।୨।

ଉପେ । ( ଆନନ୍ଦରେ ଅଧୀର ହୋଇ ) ହାସ୍ୟବତୀ—ହାସ୍ୟବତୀ—ଦେଖିଲ, ମୁଁ ଜୀବିତ ନା ମୃତ ! ଏ ଯେ ଏକ ଅଭିନବ ଅନୁଭୂତି ମୋର । ମୁଁ ଯେ ନିଜର ରଚନାକୁ ବିଶ୍ୱାସ କରିପାରୁ ନାହିଁ । ସତ କହୁଛି, ମାଲୁଣୀ—ଉପେନ୍ଦ୍ରର ରଚନା ତୁମର ପୀୟୂଷବର୍ଷୀ କଣ୍ଠରେ ଏପରି ରସଘନ ମୂର୍ତ୍ତି ଯେ ଧାରଣ କରିପାରେ, ଏହା ଆଜି ମୁଁ ପ୍ରଥମ ଥର ଲାଗି ଦେଖି ପାରିଲି । ବିଦୁଷୀ ଗ୍ରାହିକା ! ତୁମେ—ମୁଁ ବୁଝିପାରୁ ନାହିଁ, କିପରି ଅଭିନନ୍ଦନ କରି ତୁମର ମର୍ଯ୍ୟାଦା ରକ୍ଷା କରି ପାରିବି ।

ହାସ୍ୟ । ଛି, କେନାମଣି ! ସାମାନ୍ୟ ମାଲୁଣୀଟାଏ ମୁଁ । ଫୁଲମାଳ ଗୁନ୍ଥି ନୟାଗଡ଼ ରାଜଅନ୍ତଃପୁରର ସୁନ୍ଦରୀମାନଙ୍କର ମନରକ୍ଷା କରିବା ମୋର ବ୍ୟବସାୟ । ମୋର ପୁଣି ଗୋଟାଏ ମର୍ଯ୍ୟାଦା କୁଆଡ଼ୁ ଆସିଲା, କିବ ?

ଉପେ । ଏ ମୃତ୍ତିକାରେ ଉପେନ୍ଦ୍ର ଭୁଲିଯିବ ନାହିଁ, ହାସ୍ୟ । ତୁମର ଫୁଲ ଗୁନ୍ଥିବାର ଅଭିଜ୍ଞତା ମଧ୍ୟରେ ସୌନ୍ଦର୍ଯ୍ୟର ମୂଲ୍ୟ କଳନା କରି ପାରିବାର ଏକ ମହାୟସୀ ଶକ୍ତି ତୁମେ ଲାଭ କରି ପାରିଛ । ଏହାର ସ୍ପଷ୍ଟ ସଙ୍କେତ ମୁଁ ଆଗଥର ନୟାଗଡ଼ ଆସିଲାବେଳେ ପାଇଥିଲି । ସେଥିଲାଗି ମୋର ଲାବଣ୍ୟବତୀ କାବ୍ୟରେ ମାଲୁଣୀର ବର୍ଣ୍ଣନା, କେବଳ ତୁମର ମୂର୍ତ୍ତିକୁ ଉଜ୍ଜୀବିତ କରି ରଖିବାର ଗୋଟାଏ ପ୍ରୟାସ ମାତ୍ର । କିନ୍ତୁ ତୁମେ ଯେ ଜଣେ ରସଗ୍ରାହିକା ବିଦୁଷୀ, ଏ ଧାରଣା ମୋର ସେତେବେଳେ ନ ଥିଲା ।

ହାସ୍ୟ । ଏ ସବୁ ନୟାଗଡ଼ କେନା କନ୍ଦର୍ପିକାଙ୍କର ଅପାରଶୋଭ ପ୍ରଭାବର ଫଳ, କେନାମଣି ! ଫୁଲ ଗୁନ୍ଥିବାର ବ୍ୟବସାୟ ମଧ୍ୟରେ, ଯାହା କିଛି ମୋର ଜୀବନର ମୂଲ୍ୟବାନ ସଞ୍ଚୟ ମୁଁ କରି ପାରିଛି କିବ, ତାହା କେବଳ ବିଦୁଷୀ କନ୍ଦର୍ପିକାଙ୍କର ସଂସର୍ଗରୁ । ସ୍ୱର୍ଗର ଦେବୀ ସେ—ତାଙ୍କର ସାହିତ୍ୟ ଓ ସଙ୍ଗୀତ ସାଧନାର ସେବିକା ହିସାବରେ, ଯେଉଁ ସୌଭାଗ୍ୟଟିକକ ମୋତେ ମିଳିଥିଲା, ତାହାର ସାମାନ୍ୟ କଣିକାଟାଏ ମାତ୍ର ଆଜି ମୋର ପୁଞ୍ଜି । ସେଥିଲାଗି ହାସ୍ୟବତୀ ମାଲୁଣୀ ଆଜି, ଲାବଣ୍ୟବତୀର କବିଙ୍କ ଚକ୍ଷୁରେ—କାବ୍ୟରସିକା ବିଦୁଷୀ । ଏଥିରେ ହାସ୍ୟବତୀର ନିଜସ୍ୱ କିଛି ନାହିଁ, କେନାମଣି ।

ଉପେ । (ଦୀର୍ଘଶ୍ୱାସ ତ୍ୟାଗକରି)ଅଥଚ କେନାମଣିଙ୍କର ଦୁର୍ଭାଗ୍ୟ ଯେ, ସେହି କଣ୍ଟୁରକାଙ୍କ ପରି ନୟାଗଡ଼ ସ୍ୱଯ୍ମ୍ବରର ମୂର୍ତ୍ତିମତୀ ପ୍ରତିମାକୁ, ସେ ତାର ହୃଦୟରେ ଆଜୀବନ ବନ୍ଦନା କରି ନେଇ ପାରିଲା ନାହିଁ । ଜୀବନର ଶେଷ ମୁହୂର୍ତ୍ତି ପର୍ଯ୍ୟନ୍ତ, ଏ ଅକ୍ଷେପ ମୋର ରହିଥିବ, ହାୟ !

ହାରି । କେନାମଣି—ମାଲୁଣୀର ଦୋଷ କ୍ଷମା କରିବେ, ଗୋଟାଏ କଥା ମୁଁ ଆପଣଙ୍କୁ ପଚାରିବି ।

ଉପେ । ସ୍ୱଚ୍ଛନ୍ଦରେ ପଚାରିପାର ।

ହାରି । ଆପଣ ଏଥର ନୟାଗଡ଼ ଅଗ୍ରମନ କରି, ରାଜପ୍ରାସାଦକୁ ନ ଯାଇ, ଏହି ମାଳସାହିର ଏହି ସାଧାରଣ କୁଟୀରରେ ବାସ କରିବାର ଉଦ୍ଦେଶ୍ୟ ଯେ କଣ, ମୁଁ ତ କିଛି ବୁଝିପାରୁ ନାହିଁ ! ଅବଶ୍ୟ, ବୃଦ୍ଧରାଜା ବିନାୟକ ସିଂହ, ଜାମାତାଙ୍କର ଉପଯୁକ୍ତ ଅଭ୍ୟର୍ଥନା କରିବାକୁ, ଏ ଜଗତରେ ଆଉ ନାହାନ୍ତି ସତ, କିନ୍ତୁ ତାଙ୍କର ସୁଯୋଗ୍ୟ ଦାୟାଦ, ନବୀନରାଜା ପୁରୁଷୋତ୍ତମ ମାନଧାତା, ଆପଣଙ୍କ ପରି ଭଗିନୀପତିଙ୍କୁ ଯେ ଯଥେଷ୍ଟ ସମ୍ମାନ ଦେଖାଇବେ ନାହିଁ, ଏ ଆଶଙ୍କା କରିବାର ତ କୌଣସି କାରଣ ନାହିଁ, କବି ! ତେବେ ମାଳସାହି ଭଳି ଗୋଟାଏ ସାଧାରଣ ପଲ୍ଲୀ ମଧ୍ୟରେ, ଏପରି ନିର୍ବାସିତ ଜୀବନ ଯାପନ କରିବାର ଉଦ୍ଦେଶ୍ୟ କଣ ?

ଉପେ । (ହସି) ସାଧାରଣ ଚକ୍ଷୁରେ ଏହି ମାଳସାହି ଗୋଟାଏ ଅଜ୍ଞାତ ଅଖ୍ୟାତ ପଲ୍ଲୀ ହୋଇପାରେ ହାରି ! କିନ୍ତୁ ଏହି ମାଳସାହି, କବି ଉପେନ୍ଦ୍ରର ଅଛି ଗୋଟାଏ ପବିତ୍ର ତୀର୍ଥକ୍ଷେତ୍ର । ତୁମେ ଜାଣ, ଏହି ଗ୍ରାମ ଖଣ୍ଡିକ, ମୋର ବିବାହର ଯୌତୁକସ୍ୱରୂପ ମୁଁ ରାଜା ବିନାୟକଙ୍କଠାରୁ ପାଇଥିଲି । ସୁତରାଂ ଏ ଗ୍ରାମର ପ୍ରତି ଧୂଳିକଣା ସହିତ,ମୋର କଣ୍ଟୁରକାଙ୍କର ସ୍ମୃତି ଯେ କେତେ ପରିମାଣରେ ଜଡ଼ିତ, ତାହା ମୁଁ ତୁମ୍ଭଙ୍କୁ ବାକ୍ୟରେ ପ୍ରକାଶ କରି ବୁଝାଇ ପାରିବି ନାହିଁ, ମାଲୁଣୀ ! ନୟାଗଡ଼ ରାଜ ପ୍ରାସାଦରେ ମୋର ଆଦର ଅଭ୍ୟର୍ଥନାର ତ୍ରୁଟି ହେବ ନାହିଁ, ଏ ବିଶ୍ୱାସ ମୋର ଅଛି । କିନ୍ତୁ ହାରିବତୀ ! ରାଜପ୍ରାସାଦର କଠୋର ବାସ୍ତବତା ମଧ୍ୟରେ କବି ମୁଁ, ମୋର କଳ୍ପନାର ସ୍ୱଚ୍ଛନ୍ଦ ବିକାଶ ବୋଧହୁଏ ହୋଇ ପାରିବ ନାହିଁ । ଅଉ,

ତା' ଛଡ଼ା, ମୋର ମନେହୁଏ, ସ୍ୱର୍ଗୀୟଙ୍କର କୃତିମ ଆବରଣ ତଳେ, ମୋର ସ୍ୱପ୍ନସଙ୍ଗିନୀ କନ୍ତୁରିକାଙ୍କର ସ୍ପର୍ଶ, ବୋଧହୁଏ, ମୁଁ କୟାଗଡ଼ ରାଜପ୍ରାସାଦରେ ପାଇପାରିବି ନାହିଁ ।

[ଠିକ୍ ଏହି ସମୟରେ ଜଣେ ଦିବ୍ୟବପୁଧାରୀ, ଗୈରିକବସନ ପରିଧାୟୀ ଯୁବକ ସନ୍ନ୍ୟାସୀ, ଗ୍ରାମ୍ୟ ପଥଆଡ଼ୁ ଆସିବାର ଦେଖା ଗଲେ । ମୁଖରେ ତାଙ୍କର ଭଜନର ସ୍ୱର ଲାଗିରହିଛି । ]

ସନ୍ନ୍ୟାସୀ । "ରାମ ରାଘବ, ରାମ ରାଘବ, ରାମ ରାଘବ ରାହି ମାଂ,
କୃଷ୍ଣ କେଶବ, କୃଷ୍ଣ କେଶବ, କୃଷ୍ଣ କେଶବ ପାହି ମାଂ ।"

[ ସନ୍ନ୍ୟାସୀ ଏହି ଭଜନଟିକୁ ବାରମ୍ବାର ଗାଉଥିବାର ଦେଖି, ଉପେନ୍ଦ୍ର ତାଙ୍କଆଡ଼କୁ ଏକ ଦୃଷ୍ଟିରେ ଅନାଇ ରହିଲେ । ସନ୍ନ୍ୟାସୀ କ୍ରମେ ଉପେନ୍ଦ୍ରଙ୍କ ନିକଟକୁ ଆସି କୁଟୀର ନିକଟରେ ଠିଆ ହୋଇ ରହିଲେ । ] ସନ୍ନ୍ୟାସୀକୁ କିଛି ଭିକ୍ଷା ମିଳୁ, ବାବା !

ଉପେ । ଏହିଠାରେ ଆସନ ଗ୍ରହଣ କରନ୍ତୁ, ସନ୍ନ୍ୟାସୀ ! (କହି ମୃଗ ଛାଲଟିକୁ ସନ୍ନ୍ୟାସୀଙ୍କୁ ଦେଲେ ଓ ନିଜେ ଉଠି, ସନ୍ନ୍ୟାସୀଙ୍କର ଚରଣ ରେଣୁ ନେଇ ମସ୍ତକରେ ଲଗାଇଲେ ଓ ଅନ୍ୟ ଏକ ଆସନରେ ଉପବେଶନ କଲେ । )

ସନ୍ନ୍ୟା । (ଆସନ ଗ୍ରହଣ କରି) ବତ୍ସ ! ତୁମର ଭକ୍ତିରେ ମୁଁ ପରିତୃପ୍ତ । ତୁମ ମୁଖମଣ୍ଡଳର ଅପୂର୍ବ ଜ୍ୟୋତି ଦେଖି, ମୋର ମନେ ହେଉଛି ଯେ, ତୁମେ ଜଣେ ସାଧାରଣ ବ୍ୟକ୍ତି ନୁହଁ । ଏହି ପଥରେ ଅନେକବାର ମୁଁ ଯାତାୟାତ କରିଛି । କିନ୍ତୁ ତୁମ ପରି ଜଣେ ଦିବ୍ୟକାନ୍ତି ତରୁଣକୁ ଏ ମାଳି-ସାହିରେ ଏଥିପୂର୍ବରୁ ମୁଁ କେବେ ଦେଖି ନ ଥିଲି ?... କୁହ ବାବା ! ତୁମେ କି ଏ ସ୍ଥାନରେ ନୂତନ ଆଗନ୍ତୁକ ?

ଉପେ । ହଁ ସନ୍ନ୍ୟାସି ! ମୋର ଜନ୍ମସ୍ଥାନ ଘୁମୁସର ରାଜ୍ୟରେ । ମୁଁ ଏଠାରେ ବିଦେଶୀ । କିନ୍ତୁ ଆପଣଙ୍କର ନିବାସ ?

ସନ୍ନ୍ୟା । ବତ୍ସ ! ସନ୍ନ୍ୟାସୀର ତ କୌଣସି ସ୍ଥାୟୀ ନିବାସ ଥାଏ ନା । ମାୟାମମତା ବିହୀନ ଜୀବନ ତାର, ନିତ୍ୟ ଭ୍ରମଣଶୀଳ । ତାର ଗତି ସ୍ରୋତରେ ତ କୌଣସି ସ୍ଥାୟିତ୍ବ ନାହିଁ । ସୁତରାଂ କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ମୁଁ ତ ଅବଦ୍ଧ ହୋଇ ରହିପାରେ ନା । ତେବେ, ଏହି ଗ୍ରାମ ନିକଟରେ ଓଡ଼ଗାଁ ବୋଲି ଗୋଟିଏ ସ୍ଥାନ ଅଛି । ସେହିଠାରେ ମୋର ଅସ୍ଥାୟୀ ଆଶ୍ରମ ।

ଉପେ । ଆପଣଙ୍କର ଆଶ୍ରମରେ ଆପଣ କେଉଁ ନାମରେ ପରିଚିତ ?

ସନ୍ନ୍ୟା । ଏ ସବୁ ଅବାନ୍ତର ପ୍ରଶ୍ନ ପଚାରିବାର ଉଦ୍ଦେଶ୍ୟ କଣ, ମୁଁ ତ ଜାଣିପାରୁ ନାହିଁ, ବାବା ! ତେବେ ଯେଉଁମାନଙ୍କ ନିକଟରେ ମୁଁ ପରିଚିତ, ସେମାନେ ମୋତେ ରଘୁନାଥ ବୋଲି ଡାକନ୍ତି । କିନ୍ତୁ ଏ ସବୁ ପ୍ରଶ୍ନ କାହିଁକି ? ମୋର ସନ୍ନ୍ୟାସ ଦୀକ୍ଷା ଉପରେ ତୁମର ମନରେ କଣ କିଛି ସନ୍ଦେହ ଜନ୍ମିଛି, ବତ୍ସ ?

ଉପେ । ନା, ସନ୍ନ୍ୟାସି ! ତେବେ ଆପଣଙ୍କୁ ଦେଖିଲା ମୁହୂର୍ତ୍ତରୁ ମୋର ମନରେ ବର୍ତ୍ତମାନ ସୁଦ୍ଧା ଗୋଟିଏ ପ୍ରଶ୍ନ ବାରମ୍ବାର ଉଠୁଛି ଯେ, ଏ ତରୁଣ ବୟସରେ ଆପଣ ଏ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରିଛନ୍ତି କାହିଁକି ? କୌଣସି ପ୍ରେମର ବୈରାଗ୍ୟରୁ କି ଆପଣ ଏ ବୟସରେ ସଂସାରର ସମ୍ପର୍କ ତ୍ୟାଗ କରିବାକୁ ବାଧ୍ୟ ହୋଇଛନ୍ତି ?

ସନ୍ନ୍ୟା । ବତ୍ସ ! ତୁମର ସନ୍ଦେହ ଅମୂଳକ । ବାଲ୍ୟକାଳରୁ ଭଗବାନ ଶ୍ରୀ ରାମଚନ୍ଦ୍ରଙ୍କ ପ୍ରତି ମୋର କପଟ ଗୋଟିଏ ଅଛିଳା ଅନୁରକ୍ତି ଥିଲା । ତାହାର ଫଳରେ, ଗୁରୁଦେବଙ୍କ କୃପାରୁ ମୁଁ ରାମତାରକ ମନ୍ତ୍ର ଅଭ୍ୟାସ କରିବାକୁ ଅପୂର୍ବ ସୁଯୋଗ ପାଇଲି ଓ ତହିଁରେ ସିଦ୍ଧି ମଧ୍ୟ ଲାଭ କଲି । ସୁତରାଂ ଅଲକ୍ଷ ବ୍ରହ୍ମଚାରୀ ଯୋଗୀ ମୁଁ—ପାର୍ଥିବ ପ୍ରେମ ସହିତ ପରିଚୟ ଏ ପର୍ଯ୍ୟନ୍ତ ମୋର ହୋଇନାହିଁ । ମୋର ପ୍ରେମର ସାମଗ୍ରୀ ଏକମାତ୍ର—

(ଗାଇଲେ) "ରାମଂ ଲକ୍ଷ୍ମଣପୂର୍ବଜଂ ରଘୁବରଂ ସୀତାପତିଂ ସୁନ୍ଦରଂ
କାକୁତ୍ସ୍ଥଂ କରୁଣାକରଂ ଗୁଣନିଧିଂ ବିପ୍ରପ୍ରିୟଂ ଧାର୍ମିକଂ,
ରାଜେନ୍ଦ୍ରଂ ସତ୍ୟସନ୍ଧଂ ଦଶରଥତନୟଂ ଶ୍ୟାମଳଂ ଶାନ୍ତମୂର୍ତ୍ତିଂ,
ବନ୍ଦେ ଲୋକାଭିରାମଂ ରଘୁକୁଳତିଳକଂ ରାଘବଂ ରାବଣାରିଂ ।"

ଉପେ । (ମାଲୁଣୀକି ଚାହିଁ) ହାସ୍ୟବତୀ ! ତୁମର ଫୁଲଗୁନ୍ଥା ଶେଷ ହୋଇଛି ତ ? ବର୍ତ୍ତମାନ ତୁମେ ଯାଅ । ମୁଁ ସନ୍ନ୍ୟାସୀଙ୍କ ସହିତ କିଛି ଗୁପ୍ତ ଧର୍ମଚର୍ଚ୍ଚା କରିବାକୁ ଚାହେଁ । (ମାଲୁଣୀ ଫୁଲମାଳ ଇତ୍ୟାଦି ନେଇ, ରାଜପଥ ଦେଇ ଚାଲିଗଲା । )

ସନ୍ନ୍ୟା । କିଏ ସେହି ରମଣୀ, ବାବା ?

ଉପେ । ଏ ସ୍ଥାନର ଜଣେ ବିଦୁଷୀ ମାଲୁଣୀ । ମୋର ଭଗ୍ନୀ ସମ୍ପର୍କୀୟା । ମୋର ରଚିତ କାବ୍ୟ କବିତା ପାଠକରି, ସେ ତହିଁରୁ ଅଶେଷ ଆନନ୍ଦ ଉପଲବ୍ଧି କରିଥାନ୍ତି ।

ସନ୍ନ୍ୟା । ତା'ହେଲେ, ତୁମେ ଜଣେ କବି !! ବର୍ତ୍ତମାନ ବୁଝିଲି, ଏ ତାଳପତ୍ର ପୋଥି ଓ ଲେଖନୀ ତୁମ ପାଖରେ ରଖିବାର ଉଦ୍ଦେଶ୍ୟ ! ହଉ, ବାବା—ରାମଚନ୍ଦ୍ର ତୁମର କବି ପ୍ରତିଭାର ସହାୟ ହୁଅନ୍ତୁ । ମୋତେ କିଛି ଭିକ୍ଷା ଦିଅ । ମୁଁ ବାହାରି ଯିବି । ବହୁତ ବିଳମ୍ବ ହେଉଛି ।

ଉପେ । ଅପେକ୍ଷା କରନ୍ତୁ, ସନ୍ନ୍ୟାସି ! ଆପଣଙ୍କୁ ଭିକ୍ଷାଦେବା ପୂର୍ବରୁ, ମୁଁ ଆପଣଙ୍କ ପାଖରୁ କିଛି ଭିକ୍ଷା ଚାହୁଁଛି । ମୋର ଆଶା ପୂର୍ଣ୍ଣ କରନ୍ତୁ ।

ସନ୍ନ୍ୟା । ଆଶ୍ଚର୍ଯ୍ୟ—ତୁମେ କି ମୋ ସହିତ ଉପହାସ କରୁଛ, ବାବା ? ଭିକ୍ଷାଜୀବୀ ଦରିଦ୍ର ସନ୍ନ୍ୟାସୀ ମୁଁ । ମୋଠାରୁ, ତୁମେ ପୁଣି କି ଭିକ୍ଷା ଆଶା କରୁଛ, ବତ୍ସ ?

ଉପେ । ମୋର ଇଚ୍ଛା—ମୋତେ ରାମତାରକ ମନ୍ତ୍ର ଦୀକ୍ଷା ଦିଅନ୍ତୁ, ଗୁରୁଦେବ !

ସନ୍ନ୍ୟା । ତୁମେ କି ଉନ୍ମାଦ ହେଲ, ବାବା ? ଜିତ ଜିତେନ୍ଦ୍ରିୟ, ସତ୍ୟନିଷ୍ଠ ଓ ପୁଣ୍ୟାତ୍ମା ନ ହେଲେ ଯେ ରାମତାରକ ମନ୍ତ୍ର ସିଦ୍ଧ ହେବ ନାହିଁ । ଯୋଗୀରାଜ ମହାଦେବ, ଭକ୍ତବୀର ହନୁମାନ, ଆଉ କବିଶେଖର ତୁଳସୀ ଦାସ, ଏମାନଙ୍କଭଳି ମହାତ୍ମାମାନେ, ଯେଉଁ ରାମତାରକ ମନ୍ତ୍ରର ଅଭ୍ୟାସ କରିଛନ୍ତି, ତାକୁ ତୁମେ ଏତେ ଅନାୟାସରେ ସିଦ୍ଧ କରିପାରିବାର ଦୁଃସାହସ କିପରି କରୁଛ, ବତ୍ସ ?

ଉପେ । ମୁଁ ଜାଣେ ନା, ସନ୍ନ୍ୟାସି ! ଏ ଇଚ୍ଛା ମୋର ଦୁଃସାହସ କି ନା । ଅତି ଉଚ୍ଚ ଆଶାର ଉଦ୍ଦୀପନାରେ, ଆଜି ମୁଁ ଆପଣଙ୍କୁ ମୋର ନିଜର ଅଜ୍ଞାତରେ ଗୁରୁପଦରେ ବରଣ କରି ସାରିଲିଣି । ଶିଷ୍ୟର ଏ ବାସନା ପୂର୍ଣ୍ଣ କରନ୍ତୁ, ଗୁରୁଦେବ ! ବିଶ୍ୱାସ କରନ୍ତୁ ମୋତେ, ମୁଁ ଯୁବକ ସତ, କିନ୍ତୁ ଯୌବନର ଅଦମ୍ୟ ଉନ୍ମାଦନାରେ ଅଜ୍ଞଭାବରେ ଏ ପର୍ଯ୍ୟନ୍ତ ମୁଁ ମୋର ବିବେକର କଣ୍ଠରୋଧ କୌଣସିଠାରେ କରିନାହିଁ । ପୁଣ୍ୟାତ୍ମା ବୋଲି ଗର୍ବ କରିପାରିବାର ଶକ୍ତି ମୋର ନାହିଁ । କିନ୍ତୁ ମୁଁ ଯେ ଜିତେନ୍ଦ୍ରିୟ ଓ ଏ ପର୍ଯ୍ୟନ୍ତ ମୁଁ କେବେ ଅସତଙ୍କୁ ଯେ ପ୍ରଶ୍ରୟ ଦେଇ ନାହିଁ, ଏହି ସାମାନ୍ୟ ଅହଙ୍କାର ମୋର ଅଛି, ଗୁରୁଦେବ !

ସନ୍ନ୍ୟା । କିନ୍ତୁ ବାବା, ତୁମେ ଜାଣ କି ? ଗୁପ୍ତତାରକ ମନ୍ତ୍ର ସିଦ୍ଧ ହେଲେ, ଲୋକ କି ଭଳି ଅସାଧ୍ୟ ସାଧନ କରିପାରେ ?

ଉପେ । ଏ ଅର୍ବାଚୀନର ସେ ମହାର୍ଘ ବହୁଦର୍ଶିତା ଲାଭ କରିବାର ସୁଯୋଗ ତ ଏ ପର୍ଯ୍ୟନ୍ତ ଘଟି ନାହିଁ, ଗୁରୁଦେବ !

ସନ୍ନ୍ୟା । ଏ ଯେ ଅତି ଅଦ୍ଭୁତ ସାଧନା ! ଏ ସାଧନାରେ ସିଦ୍ଧିଲାଭ କଲେ, ଲୋକ ଯେ ଅପାର୍ଥିବ ପ୍ରତିଭାର ଅଧିକାରୀ ହୁଏ । ତ୍ରିକାଳଦର୍ଶୀରୂପେ ଭୂତ, ଭବିଷ୍ୟତ୍ ଓ ବର୍ତ୍ତମାନକୁ ନିଜର ଆୟତ୍ତରେ ଆଣିପାରେ । ତୁମେ କି ତାହା ସାଧନା କରିପାରିବ ?

ଉପେ । ମୋତେ ଆଉ ଛଳନା କରୁଛନ୍ତି କାହିଁକି, ଗୁରୁଦେବ ? ତାରକମନ୍ତ୍ରସିଦ୍ଧ ତ୍ରିକାଳଦର୍ଶୀ ଯୋଗୀ ଆପଣ । ଆପଣ କଣ ପ୍ରକୃତରେ ଜାଣିପାରି ନାହାନ୍ତି ଯେ, ଆପଣଙ୍କର ଏହି ଅଧମ ଶିଷ୍ୟ କେଉଁ ଅଜ୍ଞାତ ଆକାଙ୍କ୍ଷାର ପ୍ରେରଣାରେ, ଆଜି ତାରକ ମନ୍ତ୍ର ଦୀକ୍ଷା ଗ୍ରହଣ କରିବାକୁ ଏତେଦୂର ଅଭିଳାଷୀ ? କୁହନ୍ତୁ ଗୁରୁଦେବ ! ସତ୍ୟ ସତ୍ୟ କି ଏ ଯୁବକର ଅନ୍ତର୍ନିହିତ ବ୍ୟାକୁଳ ବାସନାର ପ୍ରତିଧ୍ୱନି ଆପଣଙ୍କର ମାନସ ରାଜ୍ୟରେ କୌଣସି ଆଲୋଡ଼ନ ସୃଷ୍ଟି କରି ନାହିଁ ? ସତ୍ୟ ସତ୍ୟ କି ଆପଣଙ୍କର ବିଶ୍ୱାସ ଯେ, ଏ ସାଧନାରେ ସିଦ୍ଧିଲାଭ କରି ପାରିବାର ଯୋଗ୍ୟତା ମୋର ନାହିଁ ? କୁହନ୍ତୁ ଗୁରୁଦେବ ! (ପାଦସ୍ପର୍ଶ କରିବାକୁ ଅଗ୍ରସର ହେଲେ ଓ ସନ୍ନ୍ୟାସୀ ଟିକିଏ ଘୁଞ୍ଚିଗଲେ ।)

ସନ୍ନ୍ୟାସୀ । (ହସି) ତୁମ ସହିତ ମୋର ଗୃହରୁ ତିନି ଯୋଜନ । ଅଧୀର ହୁଅନା, ଉପେନ୍ଦ୍ର । ମୁଁ ଯୋଗବଳରେ ସମସ୍ତ ଜାଣି ପାରିଛି । ଭବିଷ୍ୟତର ଶକ୍ତିଶାଳୀ ପ୍ରତିଭାଶାଳୀ ଅମର କବି ତୁମେ । ସମସ୍ତ ଜାଣି, ମୁଁ ତୁମକୁ କେବଳ ପରୀକ୍ଷା କରୁଥିଲି ମାତ୍ର । ଭସ୍ମାଚ୍ଛାଦିତ ବହ୍ନି ! ସନ୍ନ୍ୟାସୀ ରଘୁନାଥ ନିକଟରେ ତୁମେ ଲୁଚି ରହିପାରିବ ନାହିଁ । ଆସ, ସ୍ୱଚ୍ଛନ୍ଦ ମନରେ ମୁଁ ତୁମକୁ ରାମତାରକ ମନ୍ତ୍ର ଦୀକ୍ଷା ଦେବି । ଯେଉଁ ଅଲୌକିକ ପ୍ରତିଭାର ଅଧିକାରୀ ତୁମେ, ସେହି ପ୍ରତିଭା ବଳରେ, ତୁମେ ଯେ ଅନାୟାସରେ ତାରକ ମନ୍ତ୍ରରେ ସିଦ୍ଧିଲାଭ କରି ପାରିବ, ଏହି ଅବ୍ୟର୍ଥ ଆଶୀର୍ବାଦ ମୁଁ ତୁମକୁ ଦେଉଛି, କବି ! ଆଉ, ସେହି ସିଦ୍ଧି ଲାଭକରି, ତୁମର କବିକଣ୍ଠରୁ ରାମଚରିତର ଅମୀୟ ନିର୍ଝର ଏହି ଦେଶର ପ୍ରତ୍ୟେକ ପୁରପଲ୍ଲୀକୁ ପ୍ଲାବିତ କରିଦେଇ ଯିବ, ଠିକ୍ ଯେପରି ଦିନେ ଉତ୍ତର ଭାରତର ଅମର କବି ତୁଳସୀଦାସ କଣ୍ଠରୁ ଝରି ପଡ଼ିଥିଲା ରାମଚରିତମାନସର ଅପୂର୍ବ ପ୍ରାଣୋନ୍ମାଦୀ ଝଙ୍କାର । ଚାଲ, ମୋ ସହିତ ଦୁମୁଡ଼ା ନିକଟବର୍ତ୍ତୀ ସିଦ୍ଧଗୁମ୍ଫାକୁ । ସେହିଠାରେ ମୁଁ ତୁମକୁ ମନ୍ତ୍ରଦୀକ୍ଷା ଦେବି ଓ ଜପ କରିବାର ପ୍ରଣାଳୀ ମଧ୍ୟ ଶିକ୍ଷାଦେବି । କିନ୍ତୁ ସାବଧାନ, ସିଦ୍ଧିଲାଭ ପୂର୍ବରୁ, ତୁମେ ଲୋକାଳୟକୁ ଆସି ପାରିବ ନାହିଁ । ଲୋକାଳୟରେ ତୁମର ସାଧନାରେ ବିଘ୍ନ ଘଟିପାରେ । (କହି ଉଠି ଠିଆହେଲେ । )

ଉପେ । ଚାଲନ୍ତୁ ଗୁରୁଦେବ । ଆପଣଙ୍କର ଆଦେଶ ମୁଁ ନତ ଶିରରେ ଗ୍ରହଣ କରୁଛି ।

[ କହି ଉପେନ୍ଦ୍ର, ପୋଥି ଓ ଲେଖନୀ ହସ୍ତରେ, ସନ୍ନ୍ୟାସୀଙ୍କର ପଛେ ପଛେ ଚାଲିଗଲେ । ]

———

# ପଞ୍ଚମ ଦୃଶ୍ୟ

[ ପ୍ରଥମ ଅଙ୍କ ପ୍ରଥମ ଦୃଶ୍ୟ ବର୍ଣ୍ଣିତ, କୁଜଙ୍ଗ ଦୁର୍ଗ ଅଭ୍ୟନ୍ତରସ୍ଥ ସୁସଜ୍ଜିତ ମନ୍ତ୍ରଣା କକ୍ଷ । ସମୟ—ସନ୍ଧ୍ୟା । ପଲଙ୍କ ଉପରେ ଉତ୍ତେଜିତ ଭାବରେ ବସି ରହିଛନ୍ତି, ବୃଦ୍ଧ ରାଜା ଧନଞ୍ଜୟ । ତାଙ୍କର ପାର୍ଶ୍ୱରେ, ଅନ୍ୟ ଗୋଟାଏ ରୌପ୍ୟ ଆସନ ଅଳଂକୃତ କରି ବସି ରହିଛନ୍ତି ମନ୍ତ୍ରାଦେବୀ । କକ୍ଷର ବାତାୟନଟି ଉନ୍ମୁକ୍ତ ଥିବାରୁ ତାହା ମଧ୍ୟ ଦେଇ ଅଦୂରବର୍ତ୍ତୀ ପର୍ବତ ଦେହରୁ ମୃଦୁମନ୍ଦ ମଳୟ ଭିତରକୁ ଭାସି ଆସୁଥିଲା । ଧନଞ୍ଜୟଙ୍କ ହାତରେ ଗୋଟିଏ ତାଳପତ୍ର ପୋଥି । ]

ଧନ । (ବିରକ୍ତ ହୋଇ) ବାରମ୍ବାର ସେହି ଗୋଟିଏ ପ୍ରଶ୍ନ ପଚାରି, ମୋତେ ବିବ୍ରତ କରିବାରେ, ତୁମେ କଣ ଉଚ୍ଚ ଆତ୍ମପ୍ରସାଦ ଲାଭ କରୁଛ, ମନ୍ତ୍ରାଦେବି !

ମନ୍ତ୍ରା । କୁମାର କାଳକଣ୍ଠର ଭବିଷ୍ୟତ୍ ନେଇ, ମୁଁ ବଡ଼ ବିଚଳିତ ହୋଇ ପଡ଼ୁଛି । ତେଣୁ, ଆପଣଙ୍କଠାରୁ ଗୋଟାଏ ନିର୍ଦ୍ଦିଷ୍ଟ ପ୍ରତିଶ୍ରୁତି ପାଇବା ଲାଗି, ମୋର ଏହି ବ୍ୟାକୁଳତାକୁ ଆପଣ ଭୁଲ ବୁଝନ୍ତୁ ନାହିଁ, ମହାରାଜ !

ଧନ । କିନ୍ତୁ ଅନ୍ତର୍ଯ୍ୟାମୀର କଥା ରାଣୀ, ତୁମର ପୁତ୍ରର ଭବିଷ୍ୟତ୍ ଚିନ୍ତାରେ ତୁମେ ଅତିମାତ୍ରାରେ ଉଦ୍‌ବିଗ୍ନା । କିନ୍ତୁ କାହିଁ, ତାହାର ଶତାଂଶରୁ ଏକାଂଶ ମାତ୍ର ଉଦ୍‌ବିଗ୍ନତା, ତୁମର ସ୍ୱାମୀଙ୍କଲାଗି ତ ମୁଁ ଦେଖିପାରୁ ନାହିଁ ? ବାତ୍ସଲ୍ୟ ସ୍ନେହର ପ୍ରଭାବରେ ଦାମ୍ପତ୍ୟ ପ୍ରେମ ଉପରେ କଣ ଏପରି ନିର୍ମମ ପଦାଘାତ କରିପାରେ ? ବାର୍ଦ୍ଧକ୍ୟ ପ୍ରପୀଡ଼ିତ ଜଣେ ରାଜାର କ୍ଷଣିକ ଅବସର ବାସରକୁ ତୁମେ ଯେ କିପରି ଏତେ ଉତ୍ୟକ୍ତ କରିପାର, ରାଣୀ, ମୁଁ ତାହାହିଁ ଭାବୁଛି । ସ୍ପଷ୍ଟକରି କୁହ ମନ୍ତ୍ରାଦେବି ! ତୁମେ ମୋଠାରୁ କ'ଣ ଚାହୁଁ ? କଣ ପାଇଲେ, ତୁମେ ମୋତେ ମୁକ୍ତ ଦେଇ ପାରିବ ?

ମନ୍ତ୍ରୀ । କୁମାର ନୀଳକଣ୍ଠଙ୍କୁ ଏ ରାଜ୍ୟର ସିଂହାସନ ଦାନ କରନ୍ତୁ, ମହାରାଜ । ଆପଣଙ୍କଠାରୁ ଏହି ଏତିକି ପ୍ରତିଶ୍ରୁତି ମାତ୍ର ମୋର ଦାବୀ ।

ଧନ । ମୁଁ ତ ଆଗରୁ ତୁମକୁ ଏକଥା କହୁଛି ରାଣି ! ଯେ, ନୟାଗଡର ଗତି ପ୍ରତିକୂଳ ନ ହେଲେ, କୁମାର ନୀଳକଣ୍ଠହିଁ ଏ ରାଜ୍ୟର ରାଜା ହେବେ । ତୁମେ ତ ଜାଣ, କୁମାର ଗଙ୍ଗାଧର ଏ ସିଂହାସନ୍ ଦାବୀ ଚିରଦିନ ଲାଗି ତ୍ୟାଗ କରିଛନ୍ତି । ତେବେ, ଆଉ ତୁମର ଅନର୍ଥକ ଆଶଙ୍କା କାହିଁକି ?

ମନ୍ତ୍ରୀ । ଏହାହିଁ ଯଦି ମହାରାଜାଙ୍କର ଅଭିମତ, ତେବେ ମହାରାଜା ତାହା ପ୍ରକାଶ୍ୟ ଦରବାରରେ ଘୋଷଣା କରି ଦେଉନାହାନ୍ତି କାହିଁକି ? ତଦ୍ଦ୍ୱାରା, ସମସ୍ତଙ୍କର ସମସ୍ତ ସନ୍ଦେହ ତ ମୋଚନ ହୋଇ ପାରନ୍ତା । ତା ପରେ, ନୟାଗଡର ଗତିପଥ ତ ଏକପ୍ରକାର ରୁଦ୍ଧ, ଯେହେତୁ ଧନଭଞ୍ଜ ବର୍ତ୍ତମାନ ନିର୍ବାସିତ । ସୁତରାଂ କୁମାର ନୀଳକଣ୍ଠ ଯେ ବର୍ତ୍ତମାନ ଏ ସିଂହାସନର ଏକମାତ୍ର ଅବିସମ୍ବାଦିତ ଉତ୍ତରାଧିକାରୀ, ଏହି ପ୍ରକାଶ୍ୟ ଘୋଷଣା କରିବାକୁ ମହାରାଜାଙ୍କର କୌଣସି ଆପତ୍ତି ତ ନ ଥିବା ଉଚିତ ।

ଧନ । (କ୍ରୋଧେ) ମନ୍ତ୍ରୀରାଣୀ । କହି ପାରିବ, ଏ ରାଜ୍ୟର ଶାସକ ବର୍ତ୍ତମାନ କିଏ ? ବୃଦ୍ଧ ମହାରାଜ ଧନଞ୍ଜୟ ଭଞ୍ଜ, ନା ତାଙ୍କର ପ୍ରେୟସୀ ଶ୍ରୀମତୀ ମନ୍ତ୍ରୀ ?

ମନ୍ତ୍ରୀ । ଏପରି ପ୍ରଶ୍ନ ପଚାରିବାର ଉଦ୍ଦେଶ୍ୟ, ମହାରାଜ ?

ଧନ । ଶୁଣ ରାଣି ! ମୁଁ ଜୀବିତ ଅଛି ଥାଇ, ଘୁମୁସର ରାଜ୍ୟର ଶାସନ କାର୍ଯ୍ୟକୁ, ତୁମର ଇଙ୍ଗିତରେ ନିୟନ୍ତ୍ରିତ କରିବାର ଦୁଃସାହସ ଯେ ତୁମର ହୋଇପାରେ, ଏହା ଦେଖି ମୁଁ ବାସ୍ତବିକ ସ୍ତମ୍ଭିତ । ଏ ରାଜ୍ୟର ପ୍ରତାପଶାଳୀ ରାଜା ମୁଁ । ଅଥଚ ମୋର ମୌଖିକ ପ୍ରତିଶ୍ରୁତିର ମୂଲ୍ୟକୁ ତୁମେ ବିଶ୍ୱାସ କରିବାକୁ ନାରାଜ । ଆଉ ତାର ପରିବର୍ତ୍ତେ, ତୁମେ ଚାହଁ, ମୋର ପ୍ରକାଶ୍ୟ ଘୋଷଣା, ନୁହେଁ ? ଯାଅ, ଯାଅ, ରାଣୀ ! ଧନଞ୍ଜୟ ଭଞ୍ଜ ଆଜି ଜରାଜୀର୍ଣ୍ଣ, ବୃଦ୍ଧ ସତ, କିନ୍ତୁ ଗୋଟାଏ ନାରୀର ସଙ୍କେତରେ, ଘୁମୁସର ରାଜ୍ୟର ଭବିଷ୍ୟତ୍ ନିର୍ଦ୍ଧାରଣ କରିବାର ଦୁର୍ବୁଦ୍ଧି, ବୋଧହୁଏ ତାର ଏ ପର୍ଯ୍ୟନ୍ତ ଆସିନାହିଁ ।

ମନ୍ତ୍ରୀ । ତା ହେଲେ, ଆପଣଙ୍କର ଏହି ସ୍ୱେଚ୍ଛାଗ୍ରହ ଫଳରେ, ଭବିଷ୍ୟତ୍‌ରେ ଯେଉଁ ଅଶାନ୍ତିର ସୂତ୍ରପାତ ହେବ, ସେଥିପ୍ରତି ମହାରାଜାଙ୍କର ଲକ୍ଷ୍ୟ ଅଛି ତ ?

ଧନ । ତୁମେ କଣ ମନେ କରୁଛ ରାଣି ! ଯେ, କୁନ୍ଦଢ଼ ଦୁର୍ଗରେ ଧନଞ୍ଜୟ ଭଞ୍ଜ ଅଙ୍କ ଗୋଟାଏ କଣ୍ଟକ ଶାନ୍ତି ଉପଭୋଗ କରୁଛି ? ଅଉ ତୁମର ଏ ଅଶାନ୍ତି ଉପଦ୍ରବର ଆଶଙ୍କାରେ ସେ ବର୍ତ୍ତମାନ ବିଚଳିତ ହୋଇ ପଡ଼ିବ ? ତାହା ଯଦି ତୁମେ ଭାବିଥାଅ, ତେବେ ତୁମେ ମୋର ଅନୁକମ୍ପାର ପାତ୍ରୀ । ଧନଞ୍ଜୟ ଅନ୍ଧ ବୃଦ୍ଧ ସତ, କିନ୍ତୁ ସେ ଚକ୍ଷୁର ସ୍ୱଜନୈତିକ । ଅଶାନ୍ତି ସୂତ୍ରପାତର ଭୟ ମୋତେ ଦେଖାଉଛ, ରାଣି ! ମୁଁ ସବୁ ବୁଝି ପାରୁଛି । ଅଶାନ୍ତିର ବହ୍ନିଶିଖା କୁନ୍ଦଢ଼ ଗଡ଼ରେ ଯେ ତାର ରାଜତ୍ୱ ଅନେକ ଦିନରୁ ଆରମ୍ଭ କରି ସାରିଛି, ଏ କଥା ଧନଞ୍ଜୟର ଶ୍ୱେନଦୃଷ୍ଟିକୁ ଅତିକ୍ରମ କରି ପାରିନାହିଁ । ଅଉ ମୋର ବେଶୀ ଦୁଃଖ ହୁଏ, ମନ୍ତ୍ରୀଦେବି ! ଯେ,ପୁତ୍ର ସ୍ନେହରେ ଅନ୍ଧହୋଇ, ଧନଞ୍ଜୟର ଶେଷ ଜୀବନକୁ ଜାଣିଶୁଣି ତୁମେ ବିଷମୟ କରିବାକୁ ବଦ୍ଧପରିକର । କିନ୍ତୁ ମନେରଖ ରାଣି ! ତୁମର ଏ ଆଶା-ସୌଧ ଅଳ୍ପ ଅଳ୍ପ ସମୟରେ ଚୂର୍ଣ୍ଣୀଭୂତ ହୋଇ ଯିବ । ହିଁ—ଏହା ବୃଦ୍ଧ ଧନଞ୍ଜୟର ଏକ ଅଭିଶାପ ।

ମନ୍ତ୍ରୀ । ( ବ୍ୟଙ୍ଗ ହାସ୍ୟସହ ) ଧନ୍ୟବାଦ, ମହାରାଜ ! ଆପଣଙ୍କର ଅଭିଶାପକୁ ମନ୍ତ୍ରୀ ସର୍ବାନ୍ତଃକରଣରେ ଗ୍ରହଣ କରୁଛି । ଆଉ ଆପଣ ମଧ୍ୟ ମନେ ରଖନ୍ତୁ, ମହାରାଜ ! କୁମାର ଜୀବନକଣ୍ଠଙ୍କୁ ଏହି ସିଂହାସନରେ ବସାଇବା ଲାଗି, ଯଦି ମୋର ନରକକୁ ଯିବାର ପ୍ରୟୋଜନ ପଡ଼େ,ତେବେ ସୁଦ୍ଧା ମନ୍ତ୍ରୀ, ସେହି ନରକର ଶେଷ ସୀମା ପର୍ଯ୍ୟନ୍ତ ଦେଖି ଆସିବାକୁ କୁଣ୍ଠିତା ହେବ ନାହିଁ ।

[ ଦ୍ରୁତଗତିରେ ସେ କକ୍ଷ ତ୍ୟାଗ କରିଗଲେ । ରାଜା ତାଙ୍କର ଯିବା ମାର୍ଗକୁ ଅନାଇ, କିଛିକ୍ଷଣ ବାଦ, ପୋଥି ପଢ଼ାରେ ମନୋନିବେଶ କଲେ । ଏହି ସମୟରେ କକ୍ଷର ଅପର ଦ୍ୱାର ଦେଇ ମଞ୍ଜୁରାଜା ପ୍ରବେଶ କଲେ । ]

ମଞ୍ଜୁ । (ଅଭିବାଦନ କରି) ମହାରାଜ ! ରାଜନର୍ତ୍ତକୀଙ୍କ ନୃତ୍ୟ ସମ୍ବାଦ ଦେଇଥିଲେ ?

ଧନ । ହଁ ମଞ୍ଜରିକା ! କେନାମଣି ଉପେନ୍ଦ୍ର ନୟାଗଡ଼ ଯାତ୍ରା କରିବା ଦିନଠାରୁ ମୋର ଜୀବନଟା ବଡ଼ ନୀଃସଙ୍ଗ ହୋଇ ପଡ଼ିଛି । ସେ ଥିଲେ, ମୋର ନିର୍ଜନ ସନ୍ଧ୍ୟାର ଏକମାତ୍ର ସଙ୍ଗୀ, ଯାହାଙ୍କର ମଧୁମୟ କଣ୍ଠରୁ ରସମୟ କାବ୍ୟ ସଙ୍ଗୀତର ଧାରା ଅନର୍ଗଳ ଭାବରେ ଝରିପଡ଼ି, ମୋର ବାର୍ଦ୍ଧକ୍ୟକୁ ଆଣି ଦେଉଥିଲା, ଗୋଟାଏ ଅଭିନବ ଉନ୍ମାଦନା । ସେତେବେଳେ ତୁମେ ତ ତୁମର କୌଣସି ପ୍ରୟୋଜନ ପଡ଼ୁ ନଥିଲା । କିନ୍ତୁ ଆଜି, ଉପେନ୍ଦ୍ରବିହୀନ କୁଳଡ଼ ଦୁର୍ଗଟା ଯେପରି ଗୋଟାଏ ବିରାଟ ହାହାକାରରେ ଆର୍ତ୍ତନାଦ କରି ଉଠୁଛି । ରାଜନର୍ତ୍ତକୀ ! ଯଦି କେନାମଣିଙ୍କର କାବ୍ୟ କବିତା କିଛି ତୁମର ଜଣାଥାଏ, ତେବେ ତାହା ମୋତେ ସ୍ୱର ସଂଯୋଗ କରି ଶୁଣାଅ । ରାଜନର୍ତ୍ତକୀର ନୃତ୍ୟ ଦେଖିବାର ଧୈର୍ଯ୍ୟ ଆଜି ମୋର ନାହିଁ, ମଞ୍ଜରିକା !

ମଞ୍ଜୁ । ମହାରାଜାଙ୍କର ଆଦେଶ ଶିରୋଧାର୍ଯ୍ୟ । କେନାମଣିଙ୍କର କାବ୍ୟ ସଙ୍ଗୀତ ଶୁଣନ୍ତୁ, ମଣିମା ! (କହି ଗାଇଲେ)

ଏଥୁଅନ୍ତେ ଶୁଣ ରସ                    ଗ୍ରୀଷମେ ନଶି ପ୍ରବେଶ,
ଉଦୟ ତାରକାବେଶ ହେଲେ ଆକାଶେ,
ଚନ୍ଦ୍ର ମୁଖୀ ଚନ୍ଦ୍ର ନନ୍ଦ                    ଛେଦନେ ହାରକ ଚନ୍ଦ୍ର
ଫିଙ୍ଗିଛି ତାଡ଼ ପିଞ୍ଜରେ ନାମକ ରୋପେ,
ବେଶ ହେବ କରନ୍ତି ବାଳୀ,
ସୂଚିକ ପେଟୀରେ ଦିବ୍ୟ କସ୍ତୁରୀ ଦଳ ।୧।
ଅଙ୍ଗ କ ବସ୍ତ୍ରବସ୍ତ୍ର                    ହୋଇବ ବସ୍ତ୍ର ବର୍ତ୍ତ
ମଲ୍ଲୀମାଳା ଦେଇ ବାଧୂ କରଣେ ମଣି,
ଏ ବଚନ ସ୍ୱୟମ୍ବର                    ନାଗର ବର୍ଲ ବର
ଏତେ କାଳେ ଦେଖାଗଲା ଏ କଥା ପୁଣି,
ରବି କରେ ମଧ୍ୟ ମହଲା
ଚାପି ହୋଇଥିବା କି ଚନ୍ଦନ ଲେପିଲା ।୨।

[ ମଞ୍ଜରିକା ଗୀତ ଗାଉଥିବା ସମୟରେ, ଅତି ବିମର୍ଷବଦନରେ, ଧୀର ପଦବିକ୍ଷେପ କରି ଆଠଗଡ଼ରାଜା ଗୋବିନ୍ଦ ଭଞ୍ଜ, ସେହି କକ୍ଷକୁ ଅନ୍ୟ ଏକ ଦ୍ୱାର ଦେଇ ପ୍ରବେଶ କଲେ । ଧନଞ୍ଜୟଙ୍କୁ ଅଭିବାଦନ କରି ଗୋଟିଏ ଆସନରେ ବସି ରହିଲେ । ଅଙ୍ଗରେ ତାଙ୍କର ସାଧାରଣ ରାଜୋଚିତ ବେଶ । ]

ଧନ । ଆଠଗଡ଼ରାଜ ! ଆଜି ଅସମୟରେ,ହଠାତ୍ ଆସି ଏପରି ବିମର୍ଷଭାବେ ବସିପଡ଼ିଲ ଯେ ? ମୋ ପାଇଁ କୌଣସି ଦୁଃସମ୍ବାଦ ବହନ କରି ଆଣି ନାହିଁ ତ ?

ଗୋବି । (ଅତି ଦୁଃଖରେ) ମହାରାଜ !

ଧନ । କୁହ ଗୋବିନ୍ଦ, ମହାରାଜ କହି ନୀରବ ରହିଲ ଯେ ?

ଗୋବି । (ନୀରବ ରହିଲେ ।)

ଧନ । ରାଜନର୍ତ୍ତକି ! ସଙ୍ଗୀତ ତୋ'ର ଆଜି ଏତିକିରେ ବନ୍ଦ ରହୁ । ପୁଣି ପ୍ରୟୋଜନ ପଡ଼ିଲେ, ମୁଁ ସମ୍ବାଦ ଦେବି । (ଇଙ୍ଗିତ ଦେବାରୁ, ମଞ୍ଜରିକା ପ୍ରଥମେ ଧନଞ୍ଜୟ ଓ ତା ପରେ ଗୋବିନ୍ଦଙ୍କୁ ଅଭିବାଦନ କରି ପ୍ରସ୍ଥାନ କଲା ।)

ଧନ । (ନର୍ତ୍ତକୀର ପ୍ରସ୍ଥାନ ପରେ ଗୋବିନ୍ଦଙ୍କ ନିକଟକୁ ଉଠି ଆସି) କୁହ ଗୋବିନ୍ଦ, କି ଦୁଃସମ୍ବାଦରେ ତୁମେ ଏତେଦୂର ମ୍ରିୟମାଣ ?

ଗୋବି । (ଉଠି) କୌଣସି ଦୁଃସମ୍ବାଦ ନୁହେଁ,ମହାରାଜ ! ମୁଁ ଆସିଛି, କେବଳ ମୋ ଉପରେ ନ୍ୟସ୍ତ କରିଥିବା ଦାୟିତ୍ୱକୁ, ମୁଁ ମହାରାଜଙ୍କୁ ପୁଣି ଫେରାଇ ଦେବାକୁ । ମହାରାଜ ! ମୋତେ ମୁକ୍ତି ଦିଅନ୍ତୁ । ଏ ରାଜ୍ୟର ଆଠଗଡ଼ରାଜା ହେବାର ଗୁରୁ ଦାୟିତ୍ୱକୁ ନିର୍ବାହ କରିବାକୁ, ମୁଁ ଆଜି ଏକାନ୍ତ ଅକ୍ଷମ । ଆପଣଙ୍କର ରାଜତ୍ୱ ପୁନରାୟ ଆପଣ ଗ୍ରହଣ କରି, ମୋତେ ଏ ରାଜ୍ୟରୁ ବିଦାୟ ଦିଅନ୍ତୁ ।

ଧନ । ଗୋବିନ୍ଦ ! ଏ ଭଳି ଅସ୍ଥିରତା, ତୁମଠାରେ ମୁଁ ତ ଆଗରୁ କେବେ ଦେଖି ନ ଥିଲି । ଆଜି ତୁମର ଏ ଗମ୍ଭୀର ଅଭିମାନର କାରଣ ଜାଣିପାରେ କି ?

ଗୋବି । ଏଥିରେ ଅଣମାନର କୌଣସି ଛାୟା ସୁଦ୍ଧା ନାହିଁ, ମହାରାଜ ! ପୁତ୍ର ଧନଞ୍ଜୟର ନିର୍ବାସନ ଦିନଠାରୁ, ମୋର ନିଜ ଉପରେ କପଟ ଗୋଟାଏ ଧିକ୍କାର ଆସି ଯାଇଛି । ବିବେକର ଯବନିକା ଉପରେ ଉତ୍ତପ୍ତ ଚିନ୍ତାର ତୀବ୍ର ପ୍ରତିଛବି ମଧ୍ୟରେ ମୁଁ ଅତି ସ୍ପଷ୍ଟରୂପେ ଦେଖି ପାରୁଛି ଯେ, ଧନଞ୍ଜୟର ନିର୍ବାସନ ଗୋଟାଏ ପ୍ରକାଣ୍ଡ ଅନ୍ୟାୟ । ଅଥଚ ଏହି ଅନ୍ୟାୟ ଲାଗି ପ୍ରାୟଶ୍ଚିତ୍ତ କରିବାକୁ ଅଧିକାର ସୁଦ୍ଧା ଆଜି ମୋର ନାହିଁ । ହୃଦୟର ଏହି ତୀବ୍ର ଦଂଶନକୁ ନେଇ, ରାଜ୍ୟ ଶାସନ କରିବା ଅସମ୍ଭବ, ମହାରାଜ ! ଏହି ରାଜତ୍ୱର ଭାର ନେବାକୁ ମୁଁ ପ୍ରଥମରୁ ଗମ୍ଭୀର ଆପତ୍ତି ଉଠାଇଥିଲି । କିନ୍ତୁ, ମୋର ସମସ୍ତ ଅନିଚ୍ଛାସତ୍ତ୍ୱେ, ଏହି ସିଂହାସନର ଦାୟିତ୍ୱ ଆପଣ ବଳପୂର୍ବକ ମୋ ଉପରେ ଲଦିଦେଇ ଥିଲେ, ଆଜି ତାର ପରିଣାମରେ, ମୁଁ ଆଜି ମୋର ପୁତ୍ରକୁ ଚିରଦିନ ଲାଗି ହରାଇ ବସିଛି । ଏ ରାଜ୍ୟର ମଙ୍ଗଳ ଲାଗି ଏହା ଅପେକ୍ଷା ଅଧିକ କିଛି ମହନୀୟ ବଳି ଦେବାକୁ ଆଜି ମୋର ସମ୍ବଳ ନାହିଁ । ସୁତରାଂ ମୋତେ ଆଜି ଏ ଦାୟିତ୍ୱରୁ ମୁକ୍ତ ଦିଅନ୍ତୁ । ବିଶାଳ ଜଗତର ବିସ୍ତୀର୍ଣ୍ଣ ରାଜପଥ ଉପରେ, ମୋ ଲାଗି ପ୍ରଶସ୍ତ ସ୍ଥାନର ଅଭାବ ହେବ ନାହିଁ ।

ଧନ । ବୁଝିଛି, ଗୋବିନ୍ଦ ! ଧନଞ୍ଜୟର ନିର୍ବାସନ, ତୁମ ପ୍ରାଣରେ ଏକ ଦାରୁଣ ଆଘାତର ସୃଷ୍ଟି କରିଛି । ମୁଁ ଜାଣେ ପୁତ୍ର ବିଚ୍ଛେଦରେ, ପିତାର ଏପରି ବିଚଳିତ ହେବାଟା ନିତାନ୍ତ ସ୍ୱାଭାବିକ । କିନ୍ତୁ ଭାଇ ମୋର ! ଧନଞ୍ଜୟ ଭଞ୍ଜ ଯେ ଆଜି ତୁମଠାରୁ ଅଧିକ ଦରିଦ୍ର, ଅଧିକ ଅସହାୟ ! ତେଣୁ, ତୁମକୁ ମୁଁ ଟାଣି ଆଣିଥିଲି, ମୋର ବାର୍ଦ୍ଧକ୍ୟର ଏକମାତ୍ର ବିଶ୍ୱସ୍ତ ଅବଲମ୍ବନରୂପେ । କିନ୍ତୁ ତୁମେ ମୋତେ ତ୍ୟାଗ କଲେ, ଏ ବୁଢାର ଅବସ୍ଥା କଣ ହେବ, ତୁମେ ଜାଣ ?

ଗୋବି । ମୋତେ କ୍ଷମା କରିବେ, ଭାଇ ! ଏଠାରେ ଆଉ ବେଶୀଦିନ ରହିଲେ, ହୁଏ ତ ମୋର ଶ୍ୱାସରୁଦ୍ଧ ହୋଇଯିବ । ରାଜା ହେବାର ଏପରି ଅପ୍ରାକୃତିକ ଜୀବନ ଯାପନ କରିବାରେ ମୁଁ ଏକାନ୍ତ ଅନଭ୍ୟସ୍ତ ।

ଧନ । କିନ୍ତୁ ଗୋବିନ୍ଦ ! ଏ ବୃଦ୍ଧ ଧନଞ୍ଜୟକୁ ଦେଖି, ତୁମର କି ଟିକିଏ ଦୟା ହୁଏ ନା ? ସେ ଯେ ଆଜି ନିତାନ୍ତ ଅସହାୟ । ଘନଭଞ୍ଜ ତୁମର ପୂଜ୍ୟ ପିତା, କିନ୍ତୁ ମୁଁ ଯେ ତୁମର ଜ୍ୟେଷ୍ଠ ଭ୍ରାତା, ବୃଦ୍ଧ, ଅଥର୍ବ । ଗୋଟାଏ ସାମାନ୍ୟ ତ୍ୟାଗରେ ଏତେଦୂର ବିଚଳିତ ତୁମେ ? ଚାହିଁ ଦେଖ, ଗୋବିନ୍ଦ ! ଏହି ଶ୍ରୀମନ୍ଦିରର କ୍ଷୁଦ୍ର ପ୍ରତିମାଟିକୁ । ଏ ମନ୍ତ୍ରଣା କକ୍ଷରେ ଏହାର ସ୍ଥାନ ରହିଛି କାହିଁକି, ଜାଣ ? ସାମ୍ୟ, ମୈତ୍ରୀ ଓ ପ୍ରୀତିର ଗୋଟାଏ ବିରାଟ କୀର୍ତ୍ତି କେତନ ଏହି ଶ୍ରୀମନ୍ଦିର । ଏହା ଗଜପତି ସାମ୍ରାଜ୍ୟର ସାର୍ବଜନୀନ ଐକ୍ୟର ଗୋଟାଏ ପ୍ରତୀକ । ଧନଞ୍ଜୟକୁ ସେହି ଆଦର୍ଶର ପ୍ରେରଣା ଦେବା ଲାଗି ଏ ରାଜ୍ୟର ମନ୍ତ୍ରଣା କକ୍ଷରେ ଦୀପଦଣ୍ଡିର କାର୍ଯ୍ୟ କରେ, ଏହି କ୍ଷୁଦ୍ର ମନ୍ଦିରଟି । ଖାଲି ସେତିକି ନୁହେଁ, ସେହି ଆଦର୍ଶର ପ୍ରଚାର ଲାଗି, ଘୁମୁସର ରାଜ୍ୟର ପ୍ରତି ଗ୍ରାମରେ ଏହି ଜଗନ୍ନାଥ ମନ୍ଦିରର ସ୍ଥାପନା ମୁଁ କରି ଯାଇଛି । ଉଦ୍ଦେଶ୍ୟ ମୋର ଯେ, ଏ ରାଜ୍ୟର ପ୍ରଜା ସେହି ଶ୍ରୀକ୍ଷେତ୍ରର ଆଦର୍ଶରେ ଅନୁପ୍ରାଣିତ ହୁଅନ୍ତୁ । କିନ୍ତୁ ଗୋବିନ୍ଦ, ମୋର ବଡ଼ ଦୁଃଖ ଯେ, ମୋର କୁଲାଡ଼ ଦୁର୍ଗରେ ସେହି ଚିର ଆକାଙ୍କ୍ଷିତ ମହାନ ଆଦର୍ଶର, ଅଛି ଏକାନ୍ତ ଅଭାବ । ସେଥିଲାଗି, ତୁମରି ସାହାଯ୍ୟ ନେଇଥିଲି ଭାଇ ! ମୋର ଆଶା ଥିଲା ତ୍ୟାଗର ମହାମନ୍ତ୍ରରେ ତୁମକୁ ଦୀକ୍ଷିତ କରାଇ କୁଲାଡ଼ ଦୁର୍ଗ ମଧ୍ୟରେ ମୋର ସେହି ଆଦର୍ଶର ସ୍ୱପ୍ନ ସାର୍ଥକ କରିବାକୁ ।

ଗୋବି । ମୋର ଧୃଷ୍ଟତା ମାର୍ଜନା କରନ୍ତୁ, ମହାରାଜ ! ହୃଦୟକୁ ଉପବାସୀ ରଖି ଲୋକ ଆଦର୍ଶର ପଛରେ ଅନୁଧାବନ କରି ପାରେ ନା ! ମୁଁ ଆଜି ଏକାନ୍ତ ଦୁର୍ବଳ ! ମୋର ନିଜ ଉପରେ ମଧ୍ୟ ବିଶ୍ୱାସ ମୁଁ ଆଜି ଆଉ ରଖିପାରୁ ନାହିଁ । ଏ କ୍ଷେତ୍ରରେ, ମୁଁ ଆପଣଙ୍କୁ କୌଣସି ସାହାଯ୍ୟ କରି ପାରିବି, ଏ ଆଶା ମୋର ନାହିଁ । କନିଷ୍ଠପ୍ରତି ଭ୍ରାତୃସ୍ନେହର ଗୋଟାଏ ଜ୍ୱଳନ୍ତ ଆଦର୍ଶ ଆପଣ ଦେଖାଇ ସାରିଛନ୍ତି । ଏ ସ୍ନେହର ଋଣ ଅପରିଶୋଧ୍ୟ, କିନ୍ତୁ ଗୋବିନ୍ଦର ଦୁର୍ଭାଗ୍ୟ ଯେ, ଏ ଭ୍ରାତୃସ୍ନେହର ବନ୍ଧନ, ତାକୁ ଘୁମୁସର ରାଜ୍ୟରେ ବାନ୍ଧି ରଖିବାକୁ, ବୋଧହୁଏ ଯଥେଷ୍ଟ ହେଉନାହିଁ ।

[ ଗୋଟାଏ ଉଦ୍‌ଭ୍ରାନ୍ତ ଘୂର୍ଣ୍ଣୀଝଞ୍ଜାପରି, ମଣ୍ଡାରାଣୀ ସହସା କକ୍ଷମଧ୍ୟକୁ ପ୍ରବେଶ କରି ଆସିଲେ । ତାଙ୍କ ପଛେ ପଛେ, ସଙ୍ଗରେ ଆସିଛି ମାଧବ । ]

ମଣ୍ଡା । (ସମ୍ବେଦନ ସ୍ୱରେ) ସର୍ବନାଶ ଉପସ୍ଥିତ, ମହାରାଜ !

ଧନ । (ବିରକ୍ତିରେ) ପୁଣି କି ନୂତନ ବର୍ତ୍ତିକା ରାଣୀ ?

ମଣ୍ଡା । ବର୍ତ୍ତିକା ନୁହେଁ ମହାରାଜ ! ରାଜବଧୂ ମାଳବିକା, ଆଉ ଇହ ସଂସାରରେ ନାହାନ୍ତି ।

ଧନ । (ଚମକିପଡ଼ି ଆଶ୍ଚର୍ଯ୍ୟେ) କଣ କହିଲ, ରାଣୀ ? ରାଜକୁମାରୀ ମାଳବିକା ଆଉ ଏ ସଂସାରରେ ନାହାନ୍ତି ? ଉପେନ୍ଦ୍ରଙ୍କର ସାହିତ୍ୟ ସାଧନାର ସହଚରୀ ବିଦୁଷୀ ମାଳବିକା ମୃତା ? ଏହା କି ସମ୍ଭବ ହୋଇ ପାରେ ? ଏହା କି ମୋତେ ବିଶ୍ୱାସ କରିବାକୁ ହେବ, ରାଣି ?

ମଣ୍ଡା । ମୁଁ ତ ନିଜେ ମଧ୍ୟ ପ୍ରଥମରେ ବିଶ୍ୱାସ କରି ପାରି ନ ଥିଲି, ମହାରାଜ ! କିନ୍ତୁ ବର୍ତ୍ତମାନ ନିଜ ଚକ୍ଷୁକୁ କିପରି ଅବିଶ୍ୱାସ କରିବି ?

ଧନ । କିନ୍ତୁ ଏପରି ଅକସ୍ମାତ୍ ମୃତ୍ୟୁର କାରଣ କଣ ? ମାଳବିକା ତ ଅସୁସ୍ଥା ନ ଥିଲେ ?

ମଣ୍ଡା । (ରୁଦ୍ଧକଣ୍ଠରେ) ମୁଁ କିଛି ଉତ୍ତର ଦେଇ ପାରିବି ନାହିଁ, ମହାରାଜ ! ଆପଣଙ୍କର ସୁଯୋଗ୍ୟ କବି ଉପେନ୍ଦ୍ରଙ୍କର ପ୍ରେମ ପରୀକ୍ଷାର ଏହି ଭୀଷଣ ପରିଣାମ ।

ଧନ । ପ୍ରେମ ପରୀକ୍ଷା ! ! ଏ ଯେ ଏକ ଅଦ୍‌ଭୁତ ପ୍ରହେଳିକା । ସ୍ପଷ୍ଟକରି କୁହ, ରାଣି ! ମୁଁ ଯେ କିଛି ବୁଝିପାରୁ ନାହିଁ ।

ମଣ୍ଡା । ମାଧବକୁ ପ୍ରଶ୍ନ କରନ୍ତୁ । ଆପଣଙ୍କର ସମସ୍ତ ସନ୍ଦେହ ସେହି ମୋଚନ କରି ପାରିବ । (ହତାଶ ଭାବରେ ବସି ପଡ଼ିଲେ । )

ଧନ । ବ୍ୟାପାର କଣ, ମାଧବ ?

ମାଧବ । (ସମ୍ମୁଖକୁ ଆସି ଭୟରେ ଥରି ଥରି) ମହାରାଜ ! ମା ରାଜ୍ଞୀଙ୍କର ମନ ପରୀକ୍ଷା କରିବା ଲାଗି ଉପେନ୍ଦ୍ରମଣି ସାଆନ୍ତେ ମୋ ହାତରେ ମିଛସମ୍ବାଦ ପଠାଇ ଥିଲେ ଯେ, ଉପେନ୍ଦ୍ରମଣି ବାଘ ବେଣ୍ଟରେ ନିହତ

ହୋଇଛନ୍ତି । ମୋତେ ମଧ ଆଦେଶ କରିଥିଲେ ଯେ, ଏ ସମ୍ବାଦ ଶୁଣିସାରି, ମା ସା'ନ୍ତାଣୀ କଣ କହିବେ, କଣ କରିବେ, ତାହା ତାଙ୍କୁ ଜଣାଇବାକୁ । ଏହି ମିଛ ସମ୍ବାଦ ମୋ ହାତରେ ନପଠାଇବାକୁ ମୁଁ ବହୁତ ବାରଣ କରିଥିଲି, ମଣିମା ! କିନ୍ତୁ ଜେନାମଣି ମୋର କଥାରେ ଆଦୌ କାନ ଦେଲେ ନାହିଁ ।

ଧନ । ତା'ପର ?

ମାଧ । ଆଜି ସନ୍ଧ୍ୟାରେ ଆସି ମୁଁ ଏହି ସମ୍ବାଦ ମା ସା'ନ୍ତାଣୀଙ୍କୁ ତାଙ୍କ ଶୟନ କକ୍ଷରେ ଜଣାଇଲି । ମା ସା'ନ୍ତାଣୀ ପଲଙ୍କ ଉପରେ ବସି ରହିଥିଲେ । ଏ ସମ୍ବାଦ ମୋଠାରୁ ଶୁଣିଲା ମାତ୍ରକେ, ମା ସା'ନ୍ତାଣୀ "ହାୟ ବିଧାତା" ଏତିକ ମାତ୍ର ଚିତ୍କାର କରି ଉଠି ସେହି ପଲଙ୍କ ଉପରେ ଗଡ଼ି ପଡ଼ିଲେ । ତା ପରେ, ସତ କଣଅଛି କହିବି ବୋଲି, ମୁଁ ବହୁତ ଚିତ୍କାର କରି ମା ସା'ନ୍ତାଣୀଙ୍କୁ ଡାକିଲି ! କିନ୍ତୁ କୌଣସି ଜବାବ୍ ସେ ଦେଲେ ନାହିଁ । ମୋର ଭୟ ହେଲା, ମଣିମା ! ମୁଁ ରାଣୀମାଙ୍କ ପାଖକୁ ଏ ଖବର ଦେବାକୁ ଧାଇଁଗଲି । ରାଣୀମା ଆସି ଦେଖିଲାବେଳକୁ ସମସ୍ତ ଶେଷ ହୋଇ ଯାଇଛି ।

ଧନ । (କ୍ରୋଧେ) କୌଣସି ବିଚାର କରିବା ପୂର୍ବରୁ, ଜେନାମଣିଙ୍କ ସମ୍ବନ୍ଧରେ ଏପରି ମିଥ୍ୟା ସମ୍ବାଦ ଦେଇ ଥିବାରୁ, ଆଜି ତୋତେ ପ୍ରାଣଦଣ୍ଡ ଭୋଗିବାକୁ ପଡ଼ିବ, ମାଧବ ! କିଏ ଅଛ ? ପ୍ରହରୀ ? ( ପ୍ରହରୀ ପ୍ରବେଶ କଲା) ବନ୍ଦୀକରି ଏହି ସଇତାନ୍‌କୁ । ଓଃ—ଏ ଯେ ରାଜ୍ୟବ୍ୟାପୀ ଗୋଟାଏ ମିଥ୍ୟାର ଅଭିନବ ଖେଳ । (ପ୍ରହରୀ ବନ୍ଦୀ କରିବାକୁ ଅଗ୍ରସର ହେଲା ।)

ଗୋବି । ଅତ୍ୟଧିକ ଶୋକ ବିହ୍ୱଳ ହୋଇ, ଗୋଟାଏ ନିର୍ଦ୍ଦୋଷ ଭୃତ୍ୟର ପ୍ରାଣଦଣ୍ଡ ଆଦେଶ ଦେବାଟା ଯେ ଅନ୍ୟାୟ । ଭାବପ୍ରବଣ କବି ଜେନାମଣିଙ୍କର ଗୋଟାଏ ଭୁଲର ସଂଶୋଧନ, କି ଏହିପରି ଆଉ ଗୋଟାଏ ଭୁଲଦ୍ୱାରା କରିବେ ବୋଲି ମନସ୍ଥ କରିଛନ୍ତି, ମହାରାଜ ?

ଧନ । (ବିବ୍ରତ ହୋଇ) ସତେ !! ମୁଁ କଣ ଭୁଲ୍ କରୁଛି, ଗୋବିନ୍ଦ ? ତେବେ, ଜେନାମଣିଙ୍କର ମିଥ୍ୟା ମୃତ୍ୟୁ ସମ୍ବାଦ ଏପରି ପ୍ରଚାର କରିବାଟା, ମାଧବ ପକ୍ଷରେ କଣ ଉଚିତ ହୋଇଛି ?

ମାଧ । ମଣିମା ! ଭୁଲିଯାଇ ଥିଲି, ଏଥିଲାଗି କେନାମଣି ଖଣ୍ଡେ ଚିଠାଉ ମଧ୍ୟ ମୋ ହାତରେ ଦେଇଛନ୍ତି । ମୋତେ ମଧ୍ୟ ଆଦେଶ ଦେଇଥିଲେଯେ, ଏପରି ମିଥ୍ୟା ସମ୍ବାଦ ଦେବାଦ୍ୱାରା, ଯଦି ତୋ ଉପରେ କିଛି ବିପଦ ଆସେ, ତେବେ ମହାରାଜାଙ୍କୁ ଏ ଚିଠାଉ ଦେଖାଇବୁ । ଏହି ଭରସା ପାଇବାରୁ, ମଣିମାଙ୍କର ଅଲପଦାସ ମୁଁ, କେନାମଣିଙ୍କର ଆଦେଶ ଅତି ଅନିଚ୍ଛାରେ ବାଧ୍ୟ ହୋଇ ପାଳନ କରିଛି ମାତ୍ର । ଏଥିରେ ଯଦି, ଛାମୁଁ ମୋର ପ୍ରାଣଦଣ୍ଡ ଦିଅନ୍ତି, ତେବେ ମୁଁ ନାଚାର ! ଦରିଦ୍ର ପାଦସେବକ-ଟିଏ ମୁଁ ମଣିମା ! କେନାମଣିଙ୍କର ଆଦେଶ ମାନି କାର୍ଯ୍ୟ ନ କରିଥିଲେ ହୁଏତ ମୋର ବିପଦ ଘଟିଥାନ୍ତା । ଆଉ, ଆଦେଶ ମାନି କାର୍ଯ୍ୟ କରିବାରୁ ଆଜି ଏ ବିପଦ ଘଟିଲା ।

ଧନ । କାହିଁ, କି ଚିଠାଉ କେନାମଣି ଦେଇଛନ୍ତି ?

ମାଧ । (ଅଣ୍ଟାରୁ କାଢ଼ି ତାଳପତ୍ରର ଚିଠାଉଟି ଦେଇ) ଏହି ନିଅନ୍ତୁ, ମଣିମା !

ଧନ । (ପ୍ରହରୀକୁ ଗୃହଳିଦିବାକୁ ଇଙ୍ଗିତ ଦେଲେ । ସେ ଅଭିବାଦନକରି ଗୃହଳିଯିବାରୁ, ପତ୍ର ପଢ଼ିଲେ ଓ ପରେ ଗୋବିନ୍ଦଙ୍କୁ ପଢ଼ିବା ଲାଗି ଦେଲେ ।) ମାଧବ, ବର୍ତ୍ତମାନ ବୁଝିଲି—ପ୍ରଭୁଭକ୍ତ ଭୃତ୍ୟ ତୁ ! କେନାମଣିଙ୍କର ଆଦେଶ ମାନି ପାଳନ କରିଛୁ । ଠିକ୍ କହୁଛୁ ତୁ, ପ୍ରଭୁର ଆଦେଶ ପାଳନ କରିବା ଛଡ଼ା ହୁଏତ ତୋର ଅନ୍ୟ ଗତି କିଛି ନ ଥିଲା । (ଟିକିଏ ରହି) ହାୟରେ କବି !

ଗୋବି । ମୋତେ ବିଦାୟ ଦିଅନ୍ତୁ, ମହାରାଜ ! ଆଉ ନିଅନ୍ତୁ, ଏହି ଆପଣଙ୍କର ନାମାଙ୍କିତ ପରୱାନା ଗ୍ରହଣ କରି, ମୋତେ ଦାୟିତ୍ୱମୁକ୍ତ କରନ୍ତୁ । (ପରୱାନା ଦେଇଦେଲେ) କାଲି ପ୍ରଭାତର ସୂର୍ଯ୍ୟୋଦୟ ପୂର୍ବରୁ ଗୋବିନ୍ଦ ଭଞ୍ଜ, ଆପଣଙ୍କର ଆଶୀର୍ବାଦ ମାତ୍ର ସମ୍ବଳ କରି ଘୁମୁସର ରାଜ୍ୟ ତ୍ୟାଗ କରିଯିବ । ମୁଁ ଜାଣେ, କେନାମଣିଙ୍କର ଏହି ଆକସ୍ମିକ ବିପଦରେ ଆପଣ ଆଜି ଯଥେଷ୍ଟ ମ୍ରିୟମାଣ । କିନ୍ତୁ ମୁଁ ନାଚାର ! ମୋତେ ଯିବାକୁ ହିଁ

ହେବ । ଘୁମୁସରର ଅଧିଷ୍ଠାତ୍ରୀ ଦେବୀ ବାଗ୍‌ଦେବୀ ଆପଣଙ୍କର ଏ ଦୁଃଖରେ ସହାୟ ହୁଅନ୍ତୁ । ଏହା ବୋଧହୁଏ, ଆପଣଙ୍କ ସହିତ ମୋର ଶେଷ ଦେଖା । (ଠିଆହେଲେ ।)

ଧନ । (କାନ୍ଦି ପକାଇଲେ ଓ ଗୋବିନ୍ଦଙ୍କୁ ଧରି ପକାଇ) ଯାଅ ଗୋବିନ୍ଦ ଭାଇ ମୋର ! ସ୍ୱଚ୍ଛନ୍ଦ ଚିତ୍ତରେ ମୁଁ ତୁମ୍ଭଙ୍କୁ ବିଦାୟ ଦେଉଛି । ମୁଁ ବୁଝି ପାରୁଛି, ହୃଦୟ ତୁମର କି ତୀବ୍ର ବେଦନାରେ ବ୍ୟଥିତ । ସୁତରାଂ, ତୁମର ଯିବାରେ ମୁଁ ଆଉ ବାଧା ଦେବି ନାହିଁ । ହୁଏ ତ, ଘୁମୁସର ରାଜ୍ୟର ବାହାରେ, ତୁମେ ତୁମର ଜୀବନର ଅବଶିଷ୍ଟ ଦିନଗୁଡ଼ିକ ଶାନ୍ତିରେ କଟାଇ ପାରିବ । (ଟିକିଏ ରହି ରୁଦ୍ଧକଣ୍ଠରେ) ଗୋବିନ୍ଦ, ଭାଇ ମୋର ! ବୃଦ୍ଧ ଧନଞ୍ଜୟର ଏକମାତ୍ର ଅବଲମ୍ବନ ଥିଲ ତୁମେ । ସୁତରାଂ ତୁମର ବିଚ୍ଛେଦ, ମୋତେ ସବୁଠାରୁ ବେଶୀ ଆଘାତ ଦେବ । ତଥାପି ମୁଁ ତୁମ୍ଭଙ୍କୁ ବିଦାୟ ଦେଉଛି । ମୋର ସ୍ନେହର ଅଭେଦ୍ୟ ବର୍ମ ତୁମ୍ଭଙ୍କୁ ସମସ୍ତ ବିପଦରୁ ରକ୍ଷା କରୁ—ଏତିକି ମୋର ଆଶୀର୍ବାଦ । ମୋ ଲାଗି ଦୁଃଖିତ ହେବ ନାହିଁ, ଗୋବିନ୍ଦ ! ମୋର ଜୀବନର ଗୋଧୂଳି ଲଗ୍ନ ହୁଏତ ଖୁବ୍ ନିକଟ ହୋଇ ଗଲଣି । ଆସ, ଯିବା ପୂର୍ବରୁ ଥରେ ଶେଷ ଆଲିଙ୍ଗନ କରି ନେଇଥାଏଁ । (ଗୋବିନ୍ଦଙ୍କୁ ଆଲିଙ୍ଗନ କଲେ । )

ରାଣୀ । ଆଶ୍ଚର୍ଯ୍ୟ ! ଏ ପୁଣି କି ଏକ ଅଭିନବ ସମସ୍ୟା ? କେଉଁ କାରଣରୁ ଆଠଗଡ଼ ଆଜି ସ୍ୱେଚ୍ଛାରେ ଘୁମୁସର ରାଜ୍ୟ ତ୍ୟାଗ କରି ଯାଉଛନ୍ତି, ମହାରାଜ ?

ଧନ । (କ୍ରୁଦ୍ଧ ସ୍ୱରରେ) ଘୁମୁସର ରାଜ୍ୟର ମହିମାମୟୀ ରାଣୀ ! କାରଣ ବୁଝିବାକୁ ଆଜି ଆଉ ପ୍ରୟାସ କର ନା ! କେବଳ ନିର୍ନିମେଷ ନୟନରେ, ତୁମର ବଳିଷ୍ଠିକା ପର୍ବର ଗୋଟାଏ ଗୋଟାଏ ଅଧିବାସର କ୍ରମ ପରିଣତି ମାତ୍ର ଦେଖିଯାଅ । ରାଜକୁମାର ଗଙ୍ଗାଧରଙ୍କର ସିଂହାସନ ତ୍ୟାଗ, କୁମାର ଘନଭଞ୍ଜଙ୍କର ନିର୍ବାସନ, ଆଠଗଡ଼ ଗୋବିନ୍ଦ ଭଞ୍ଜଙ୍କର ପଳାୟନ, ଆଉ ତା'ପରେ ରାଜକନ୍ୟା ମାଳବିକାଙ୍କର ଆତ୍ମାହୁତି । ଅଗ୍ରସର ହୁଅ, ବନ୍ଦ

କରନା, ରାଣି ! ପୁତ୍ର ନୀଳକଣ୍ଠଙ୍କର ଭବିଷ୍ୟତ ରାଜ୍ୟତ୍ୱ ନାଶରେ ବଦ୍ଧୋର ତୁମେ—ତୁମେ କପର ବୁଝିବ ଯେ, ବଡ଼ ପାପର ବଡ଼ ଶାସ୍ତି ? କେବଳ ଅଗ୍ରସର ହୁଅ—ବନ୍ଧ କରନା ! କୁମାର ନୀଳକଣ୍ଠଙ୍କର ଘୁମୁସର ସିଂହାସନ ଅରୋହଣ କରିବା ଲାଗି, ଏହିପରି ଗୋଟାଏ ଗୋଟାଏ ରକ୍ତାକ୍ତ ଐତିହାସିକ ସୋପାନର ଯେ ନିତାନ୍ତ ପ୍ରୟୋଜନ ! ସୁତରାଂ ପୁଣି କହୁଛି, ରାଣି !—ବନ୍ଦ କରନା ! ଘୁମୁସର ଗଗନର ଧୂମକେତୁ ପରି ଦ୍ୱିଗୁଣ ଗତିରେ ଅଗ୍ରସର ହୁଅ ! (ଏହିପରି କହୁଥିବା ସମୟରେ ଗୋବିନ୍ଦଭଞ୍ଜ ଧନଞ୍ଜୟଙ୍କର ଚରଣ ସ୍ପର୍ଶ କରି, ଧୀରେ ଧୀରେ ସେ ସ୍ଥାନ ତ୍ୟାଗ କରି ଚାଲି ଯାଉଥିଲେ । )

## —ଯବନିକା ପତନ—

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

[ ବୁଢୁଡ଼ା ନିକଟବର୍ତ୍ତୀ ପର୍ବତ ଉପରିସ୍ଥ ସିଦ୍ଧଗୁମ୍ଫାର ସମ୍ମୁଖଭାଗ । ଗୋଟିଏ ବିରାଟ ଶିଳାଖଣ୍ଡର ତଳେ, ପରିଷ୍କୃତ ପରିଚ୍ଛନ୍ନ ଗହ୍ୱରଟିଏ । ସେହି ଗହ୍ୱର ସିଦ୍ଧଗୁମ୍ଫା ବୋଲି ପରିଚିତ । ସେହି ଗୁମ୍ଫାର ଚତୁଃପାର୍ଶ୍ୱସ୍ଥିତ ପ୍ରସ୍ତର ଖଣ୍ଡ ସବୁ କଣ୍ଟକାକୀର୍ଣ୍ଣ ଓ ନାନା ପ୍ରକାର ଗୁଳ୍ମଲତାରେ ପରିପୂର୍ଣ୍ଣ । ନିକଟବର୍ତ୍ତୀ କୌଣସି ଗୋଟିଏ କ୍ଷୁଦ୍ର ନିର୍ଝରିଣୀର କଳ କଳ ଧ୍ୱନି ଗୁମ୍ଫା ମଧ୍ୟକୁ ସ୍ପଷ୍ଟରୂପେ ଶୁଣାଯାଉ ଥିଲା । ଗୁମ୍ଫାର ସମ୍ମୁଖଭାଗର ଉଚ୍ଚଦେଶ ଶିଳାବନ୍ଧୁର ହେଲେ ମଧ୍ୟ, ବାମ ପାର୍ଶ୍ୱରେ ଗୋଟାଏ ଅତି ପ୍ରକାଣ୍ଡ ମସୃଣ ପ୍ରସ୍ତରର ସୁନିର୍ମିତ ଚତ୍ୱର ବିରାଜିତ । ବୋଧହୁଏ, ସ୍ଥାନଟିର ନିର୍ଜନ ସୌନ୍ଦର୍ଯ୍ୟ ଉପଭୋଗ କରିବା ନିମିତ୍ତ, ଧୁମୁସରର କୌଣସି ରାଜା ଚତ୍ୱରଟି ନିର୍ମାଣ କରାଇ ଦେଇଛନ୍ତି, ଦୂରାଗତ ବିଦେଶୀ ପଥିକମାନଙ୍କର ଉଦ୍ଦେଶ୍ୟରେ । ସମୟ—ପ୍ରଭାତ । ସେହି ଗୁମ୍ଫା ମଧ୍ୟରେ ସାଧକବେଶରେ ଉପେନ୍ଦ୍ର ଏକାକୀ ଖଣ୍ଡେ ମୃଗଚର୍ମ ଉପରେ ପଦ୍ମାସନରେ ବସି ରହିଛନ୍ତି । ଧ୍ୟାନ କଷ୍ଟାପୁବସ୍ଥ । ତାଙ୍କର ଆଗରେ ପ୍ରଜ୍ୱଳିତ ହୋମକୁଣ୍ଡଟି ପ୍ରାୟ ଅର୍ଦ୍ଧନିର୍ବାପିତ ଅବସ୍ଥାରେ ରହିଛି । ଅନ୍ୟାନ୍ୟ ସବୁ ପ୍ରକାର ପୂଜାର ଉପକରଣ ସହିତ, ଗୋଟିଏ ତାଳପତ୍ର ପୋଥି ଓ ଲେଖନୀ ମଧ୍ୟ ଯଥାସ୍ଥାନରେ ରଖାଯାଇଛି । ]

ଉପେନ୍ଦ୍ର । (ଉଚ୍ଚ ସ୍ୱରରେ) ଓଁ ଅସ୍ୟ ଶ୍ରୀ ରାମତାରକ ମନ୍ତ୍ରସ୍ୟ । ବଶିଷ୍ଠ ଋଷିଃ । ଶ୍ରୀ ରାମଚନ୍ଦ୍ର ପରମାତ୍ମା ଦେବତା । ରାଂ ବୀଜଂ, ମଂ ଶକ୍ତିଃ । ବରଘୁବଂଶ ସମ୍ଭୂତବସ୍ୟ ଶ୍ରୀ ଉପେନ୍ଦ୍ରଭଞ୍ଜ ଦେବ ବର୍ମଣଃ ମମ ସର୍ବାଭୀଷ୍ଟ ସିଦ୍ଧ୍ୟର୍ଥେ ଶ୍ରୀ ରାମତାରକ ମନ୍ତ୍ର ଜପେ ବିନିଯୋଗଃ ।

ଓଁ ରାଂ ଇତି ଅଙ୍ଗୁଷ୍ଠାଭ୍ୟାଂ ନମଃ ।
ଓଁ ମାଂ ଇତି ତର୍ଜନୀଭ୍ୟାଂ ସ୍ୱାହା ।
ଓଁ ଯୂଂ ଇତି ମଧ୍ୟମାଭ୍ୟାଂ ବୌଷଟ୍ ।
ଓଁ ନଂ ଇତି ଅନାମିକାଭ୍ୟାଂ ହୁଂ ।
ଓଁ ମଂ ଇତି କରତଳ ପୃଷ୍ଠାଭ୍ୟାଂ ଅସ୍ତ୍ରାୟ ଫଟ୍ ।
ଏବଂ ଅଙ୍ଗନ୍ୟାସଃ ।

ଅଥ ଧ୍ୟାନଂ—ଓଁ କୋମଳାଙ୍ଗଂ ବିଶାଳାକ୍ଷ ମିନ୍ଦ୍ରନୀଳ ସମ ପ୍ରଭଂ,
ଦକ୍ଷିଣାଂଶେ ଦଶରଥଂ ପୁତ୍ରାବେକ୍ଷଣ ତତ୍ପରଂ,
ପୃଷ୍ଠତୋ ଲକ୍ଷ୍ମଣଂ ଦେବଂ ସଚ୍ଛତ୍ରଂ କନକପ୍ରଭଂ
ପାର୍ଶ୍ୱେ ଭରତ ଶତ୍ରୁଘ୍ନୌ ତାଳବୃନ୍ତ କରାବୁଭୌ,
ଅଗ୍ରେ ବ୍ୟଗ୍ରଂ ହନୁମନ୍ତଂ ରାମାନୁଗ୍ରହ କାଙ୍କ୍ଷିଣଂ ।

(ଏତକ ଉଚ୍ଚାରଣ କରି, ସାତଥର ହୋମାଗ୍ନିରେ ଘୃତାହୁତି ପ୍ରଦାନ କଲେ । ହୋମାଗ୍ନି ଜଳିଉଠିଲା । ସେହି ଆଲୋକରେ ସ୍ପଷ୍ଟ ଦେଖାଗଲା ଯେ ଉପେନ୍ଦ୍ର ଚକ୍ଷୁ ମୁଦ୍ରିତ କରି ରାମତାରକ ମନ୍ତ୍ରର ଜପ ଆରମ୍ଭ କଲେ । ) ଓଁ ରାଂ ରାମାୟ ନମଃ—ଏହି ମନ୍ତ୍ର ଜପର ଶବ୍ଦ ବହୁକ୍ଷଣଯାଏ ଶୁଣାଗଲା ଓ ଧୀରେ ଧୀରେ ଶବ୍ଦ ମଧ୍ୟ କ୍ଷୀଣରୁ କ୍ଷୀଣତର ହୋଇ ଶେଷକୁ ଆଉ କିଛି ଶୁଣାଗଲା ନାହିଁ । କିନ୍ତୁ ଜପ ଚାଲିଥାଏ । ଏହାପରେ କିଛିକ୍ଷଣ ଗଲାପରେ ସନ୍ନ୍ୟାସୀ ରଘୁନାଥ ଧୀରେ ଧୀରେ ଗୁମ୍ଫାର ଏକ ପାର୍ଶ୍ୱରୁ ଆସି ପ୍ରବେଶ କଲେ ।)

ରଘୁ । (ଉପେନ୍ଦ୍ରଙ୍କୁ ଦେଖି) ଓଃ, କି ଗମ୍ଭୀର ଅଭିନିବେଶ । ଧନ୍ୟ ଉପେନ୍ଦ୍ର, ଧନ୍ୟ ତୁମର ପ୍ରତିଭା । ଦୀର୍ଘ ପାଞ୍ଚଦିନ ଧରି, ଆହାର ନିଦ୍ରା ପରିତ୍ୟାଗ ପୂର୍ବକ ଯେଉଁ ଏକଲକ୍ଷ ମନ୍ତ୍ରଜପର ସାଧନା ଚାଲିଛି, ଆଜି ତାହାର ଶେଷ ଉଦ୍‌ଯାପନ ଦିବସ ।

ଉପେ । (ନିମୀଳିତ ଚକ୍ଷୁ ଅବସ୍ଥାରେ)

ରାମାୟ ରାମଚନ୍ଦ୍ରାୟ ରାମଭଦ୍ରାୟ ବେଧସେ
ନାଥାୟ ରଘୁନାଥାୟ ସୀତାୟାଃ ପତୟେ ନମଃ ।

(ସେହିପରି ଚକ୍ଷୁ ମୁଦ୍ରିତ ଥିବା ଅବସ୍ଥାରେ, ମନ୍ତ୍ରଟି ଉଚ୍ଚାରଣ କରିସାରି ପ୍ରଣାମ କଲେ । ଉପେନ୍ଦ୍ର ଦେଖି ନାହାନ୍ତି ଯେ,ତାଙ୍କ ସମ୍ମୁଖରେ ସନ୍ନ୍ୟାସୀ ଦଣ୍ଡାୟମାନ । କିନ୍ତୁ ଉପେନ୍ଦ୍ର ନମସ୍କାର କଲାବେଳେ, ସନ୍ନ୍ୟାସୀ ତାହା ଗ୍ରହଣ କଲାପରି, ହାତ ଉଠାଇ ଆଶୀର୍ବାଦ କଲେ ।)

ରଘୁ । ଭଞ୍ଜବୀର । ତୁମର ମନୋରଥ ସିଦ୍ଧ ହେଉ ।

ଉପେ । (ଚକ୍ଷୁ ଖୋଲି) କିଏ ? ଗୁରୁଦେବ ! (ଗୁମ୍ଫା ମଧ୍ୟରୁ ବାହାରି ଆସି, ସନ୍ନ୍ୟାସୀଙ୍କର ଚରଣ ବନ୍ଦନା କରି) ଆଶୀର୍ବାଦ କରନ୍ତୁ—ମୋର ସାଧନା ସଫଳ ହେଉ ।

ରଘୁ । ଆଶୀର୍ବାଦର କୌଣସି ପ୍ରୟୋଜନ ତ ମୁଁ ଦେଖୁ ନାହିଁ,ବତ୍ସ ! ରାମତାରକ ମନ୍ତ୍ର ସାଧନାରେ,ତୁମର ଯେ ସିଦ୍ଧି ଲାଭ ହୋଇଛି । ଏବେ ମୋର କର୍ତ୍ତବ୍ୟ ତ ଶେଷ ହେଲା କିବ ! ବର୍ତ୍ତମାନ ମୋତେ ବିଦାୟ ଦିଅ ।

ଉପେ । ଅପେକ୍ଷା କରନ୍ତୁ, ଗୁରୁଦେବ ! ସେ ଦିନ ଆପଣ ମୋଠାରୁ ଭିକ୍ଷା ଚାହିଁଥିଲେ । ମୁଁ ତ ତାହା ଏ ପର୍ଯ୍ୟନ୍ତ ଦେଇ ନାହିଁ । ସୁତରାଂ ତାରକମନ୍ତ୍ର ସାଧନାର ସିଦ୍ଧି ପରେ ମୋର ପ୍ରଥମ କାବ୍ୟ ରଚନାର ଆଦ୍ୟ ପଦଟି ମୁଁ ଆପଣଙ୍କ ଶ୍ରୀଚରଣ ତଳେ, ଭକ୍ତି ଅର୍ଘ୍ୟରୂପେ ସମର୍ପଣ କରି, ମୋର ଗୁରୁଦକ୍ଷିଣାର ଭିକ୍ଷା, ମୁଁ ଆପଣଙ୍କୁ ଦେଇପାରେଁ । ତା ପରେ, ଆପଣଙ୍କୁ ବିଦାୟ ଦେବି ।

ରଘୁ । ଉତ୍ତମ, ତେବେ ରଚନା ଆରମ୍ଭ କର, ବତ୍ସ ! ମୁଁ ଏହିଠାରେ ଅପେକ୍ଷା କରୁଛି । ତୁମର ମନୋବାଞ୍ଛା ପୂର୍ଣ୍ଣହେଉ (ଚତ୍ୱର ଉପରେ ବସିଲେ ।)

[ ଉପେନ୍ଦ୍ର ଗୁମ୍ଫା ମଧ୍ୟକୁ ଯାଇ ପୂର୍ବ ଆସନରେ ବସି, ତାଳପତ୍ର ପୋଥି ଧରି, ଟିକିଏ କଣ ଭାବି, ଲେଖନୀ ଚାଳନା କଲେ । ଇତି ମଧ୍ୟରେ, ଉପେନ୍ଦ୍ର ରଚନାରେ ରତ ଥିଲାବେଳେ, ସନ୍ନ୍ୟାସୀ ଧୀରେ ଧୀରେ ସେ ସ୍ଥାନ ପରିତ୍ୟାଗ କରି ଚାଲିଗଲେ ଉପେନ୍ଦ୍ରଙ୍କର ଅଜ୍ଞାତରେ । ]

ଉପେ । (ନିଜର ରଚନାକୁ ପାଠକଲେ, ବସି)
ବନ୍ଦଇ ଦୀନବାନ୍ଧବ ହରି ଯେ ଦମ୍ଭ ବକ ଖଣ୍ଡନକାରୀ
ସଦା କମଳାନନ୍ଦ ବସ୍ତାରି ସ୍ମରଣେ ଇନ,
ବର୍ଦ୍ଧି ଅନନ୍ତ ଅଙ୍କ ବହାରି କର ପ୍ରତାପ ଯାର ସଞ୍ଚରି
ନିଶାଚରଙ୍କ ଉଲ୍ଲାସ ହରି ପୂରେ ସୁମନ,
ବଇନତେୟ ଯାହା ଅଗ୍ରତେ ସ୍ଥିତ
ବଇକୁଣ୍ଠ ପଙ୍କ ଲୋକ ତୋଷିତ,
ବକାଶ ଅଖଣ୍ଡିତ ମଣ୍ଡଳେ ସିଂହ ଭବରେ କ୍ରୀଡ଼ିତ କାଳେ
ଭବେ ତରଣୀ ହୋଇ ମଞ୍ଜୁଳେ ଚିର ଉଦିତ ।

(ଏହିପଦ ପାଠ କରୁ କରୁ, ଗୁମ୍ଫାମଧ୍ୟରୁ ବାହାରକୁ ଆସିଲେ । କିନ୍ତୁ ସନ୍ନ୍ୟାସୀଙ୍କୁ ନ ଦେଖି ଇତସ୍ତତ ଖୋଜିଲେ ।) ଗୁରୁଦେବ, ଗୁରୁଦେବ, ଆଶ୍ଚର୍ଯ୍ୟ ! ଏହିଠାରେ ଅପେକ୍ଷା କରିବେ ବୋଲି କହି, କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ ନା କଣ ? ଏକପଦ ମାତ୍ର ରଚନା କରିବାରେ ତ ମୋର ଅଯଥା ବିଳମ୍ବ ହୋଇ ନାହିଁ । ତେବେ କଣ ଗୁରୁଦେବ, ଏହି ସାମାନ୍ୟ ବିଳମ୍ବ ଅପେକ୍ଷା ନ କରି, ମୋ ଉପରେ ବିରକ୍ତ ହୋଇ ଗୁଲିଗଲେ ? ନା, ନା, ଏହା ହୋଇ ପାରେ ନା । ବୋଧହୁଏ କେଉଁଠାକୁ ଯାଇଛନ୍ତି । ମୋର ଭିକ୍ଷା ଗ୍ରହଣ କରିବା ଲାଗି, ସେ ନିଶ୍ଚୟ ଫେରି ଆସିବେ । (ତଳର ଉପରେ ବସିବାକୁ ଉପକ୍ରମ କଲେ ।)

[ସହସା ତାଙ୍କର ବିପରୀତ ଦିଗରୁ ସନ୍ନ୍ୟାସିନୀ ହସି ହସି ପ୍ରବେଶ କଲେ ।]

ସନ୍ନ୍ୟା । (ହସି) କିନ୍ତୁ ସନ୍ନ୍ୟାସୀ ରଘୁନାଥ ତ ଆଉ ଫେରି ଆସିବେ ନାହିଁ, କେନାମଣି !

ଉପେ । ( ଆଶ୍ଚର୍ଯ୍ୟ ହୋଇ ) କିଏ—ସନ୍ନ୍ୟାସିନୀ—ଦେବୀ ! ଆପଣ ଏଠାରେ ? କୁଳଡ଼ ଦାରୁଦେବୀ ମନ୍ଦିର ପ୍ରାଙ୍ଗଣରେ ସେ ଦିନ ଆପଣଙ୍କର ସେହି ରହସ୍ୟମୟ ଅନ୍ତର୍ଦ୍ଧାନର ସ୍ମୃତି ଯେ ଆଜି ସୁଦ୍ଧା ମୋର ରୋମାଞ୍ଚ ଜାତ କରୁଛି । ସନ୍ନ୍ୟାସିନୀ ! ଦେବି ! ଜନନି—ମୋର ନମସ୍କାର ଗ୍ରହଣ କରନ୍ତୁ । (ସନ୍ନ୍ୟାସିନୀଙ୍କୁ ପ୍ରଣିପାତ କଲେ ।)

ସନ୍ଧ୍ୟା । ଅଭୂତପୂର୍ବ କବିତ୍ୱ ଶକ୍ତିର ପୂର୍ଣ୍ଣ ଅଧିକାରୀ ହୁଅ, ବତ୍ସ ! ସନ୍ଧ୍ୟାଦେବୀଙ୍କର ଏହି ଏତିକି ମାତ୍ର ଆଶୀର୍ବାଦ ।

ଉପେ । କିନ୍ତୁ ଦେବି ! ସେଦିନ ଆପଣଙ୍କର ରହସ୍ୟମୟ ପରିଚୟକୁ, ଗୋଟାଏ ଅନ୍ଧକାରର ଆବରଣ ମଧ୍ୟରେ ରଖି, ସନ୍ତାନକୁ ଏପରି ପ୍ରତାରଣା କଲେ କାହିଁକି ? ଆପଣଙ୍କର ପରିଚୟ ଜାଣିବାକୁ ମୁଁ କି ଏତେଦୂର ଅଯୋଗ୍ୟ ?

ସନ୍ଧ୍ୟା । ଦୁଃଖ କରନା ଜେମାମଣି ! ମୁଁ ତ ସେଦିନ କହି ଯାଇଥିଲି ଯେ, ତୁମ ସହିତ ମୋର ଆଉଥରେ ସାକ୍ଷାତ ହେବ ଓ ତେତିକିବେଳେ ତୁମ୍ଭକୁ ମୋର ପରିଚୟ ଦେଇଯିବି, କବୀନ୍ଦ୍ର ! ସେହି ଦିନ ଆଜି ସମାଗତ ! ସୁତରାଂ, ବିଶ୍ୱାସ କର ବତ୍ସ ! ଆଜି ତୁମେ ମୋର ପରିଚୟ ପାଇବ ।

ଉପେ । ଦେବି ! ଆପଣଙ୍କର ପ୍ରେରଣା ଓ ଆଶୀର୍ବାଦ ଫଳରେ, ଆଜି ମୁଁ ଶ୍ରୀରାମତାରକ ମନ୍ତ୍ର ଜପରେ ସିଦ୍ଧି ଲାଭ କରି ପାରିଛି । ଆଉ ସେହି ସିଦ୍ଧି ବଳରେ, ଭଗବାନ ରାମଚନ୍ଦ୍ରଙ୍କର ଅମୀୟ କଥାବସ୍ତୁକୁ ନେଇ, ମୁଁ ଏକ ଅଭିନବ କାବ୍ୟର ପରିକଳ୍ପନା କରି ପାରିଛି । ସମଗ୍ର କାବ୍ୟଟି ରଚିତ ହେବ 'ବି'କାର ନିୟମରେ, ଆଉ ସେହି କାବ୍ୟଟିର ନାମ ରହିବ—ବୈଦେହୀଶ ବିଳାସ ।

ସନ୍ଧ୍ୟା । ଅଗ୍ରସର ହୁଅ, କବି ! ତୁମର ଲେଖନୀ ଉପରେ ସ୍ୱର୍ଗର ପୁଷ୍ପଚନ୍ଦନ ବୃଷ୍ଟିହେବ । ମୁଁ ଦିବ୍ୟ ଦୃଷ୍ଟିରେ ଦେଖି ପାରୁଛି, ତୁମର ଏହି ବୈଦେହୀଶ ବିଳାସ କାବ୍ୟ, ସ୍ରଷ୍ଟା ଶିଳ୍ପୀର ଏକ ଅନବଦ୍ୟ ସୃଷ୍ଟି ରୂପେ, ଏ ଦେଶର ସାହିତ୍ୟ-ରାଜ୍ୟରେ, ଗୌରବର ଏକ ଉତ୍ତୁଙ୍ଗ ସିଂହାସନ ଅଧିକାର କରି ପାରିବ । ଭାବର ଗାମ୍ଭୀର୍ଯ୍ୟରେ, ଭାଷାର ମାଧୁର୍ଯ୍ୟରେ, ଛନ୍ଦର ଲାଳିତ୍ୟରେ, ଶବ୍ଦର ଅପରୂପ ବିନ୍ୟାସରେ ଆଉ ଆଳଙ୍କାରିକ ଶୈଳୀରେ ଏହି ମହାକାବ୍ୟ କେବଳ କଳିଙ୍ଗ ଦେଶର ନୁହେଁ, ସମଗ୍ର ବିଶ୍ୱ ସାହିତ୍ୟର ଏକ ମହୋଜ୍ଜ୍ୱଳ ଅମୂଲ୍ୟ ରତ୍ନ ହୋଇ ଉଠିବ ।

ଉପେ । କିନ୍ତୁ ମୋର ବଡ଼ ଦୁଃଖ ଦେବ ! ଯେ, ମୋର ଗୁରୁଦେବ ସନ୍ନ୍ୟାସୀ ରଘୁନାଥ, ମୋର ଏହି ମହାକାବ୍ୟର ପ୍ରଥମ ନମସ୍କାର ଗ୍ରହଣ କରି ପାରିଲେ ନାହିଁ । ସନ୍ନ୍ୟାସୀ ସେ, ତାଙ୍କର ପ୍ରସାରିତ ଅଞ୍ଜଳିରେ କୌଣସି ଭିକ୍ଷା ମୁଁ ଏ ପର୍ଯ୍ୟନ୍ତ ଦେଇ ପାରି ନାହିଁ ।

ସନ୍ନ୍ୟା । କାହାକୁ, କି ଭିକ୍ଷା ଦେବାକୁ ତୁମର ଏ ଅଦ୍ଭୁତ ପ୍ରୟାସ କବି ? ଜାଣ କି ଢେନାମଣି ! କେଉଁ କରୁଣାମୟଙ୍କର ବିଶ୍ୱବ୍ୟାପୀ କରୁଣା ସାଗରର ଏକବିନ୍ଦୁ ମାତ୍ର ଲାଭ କରି, ଆଜି ତୁମେ ତାରକ ମନ୍ତ୍ରକୁ ଏତେ ଶୀଘ୍ର ଅମୃତ କରି ପାରିଛ ?

ଉପେ । କିପରି ଜାଣିବ, ଦେବ ? ମୋର ଜୀବନର ପ୍ରଥମ ଆଶ୍ଚର୍ଯ୍ୟ-ରୂପେ, ଆପଣଙ୍କର ରହସ୍ୟମୟ ଆବିର୍ଭାବ ହୋଇଥିଲା ଦିନେ, କୁଳଙ୍କ ବାଗ୍‌ଦେବୀ ମନ୍ଦିରରେ । ସେ ଆଶ୍ଚର୍ଯ୍ୟର ମୋହ ଯେ ଏ ପର୍ଯ୍ୟନ୍ତ ମୋର ଛୁଟି ନାହିଁ, ସନ୍ନ୍ୟାସିନ ! ମର୍ତ୍ତ୍ୟର ସାମାନ୍ୟ ମାନବ ମୁଁ—ସୁତରାଂ ମୋର ଚକ୍ଷୁ ସମ୍ମୁଖରେ, ଆଜି ଯଦି ସନ୍ନ୍ୟାସୀ ରଘୁନାଥ ପୁଣି ଗୋଟାଏ ଦ୍ୱିତୀୟ ଆଶ୍ଚର୍ଯ୍ୟ ରୂପେ ଆବିର୍ଭୂତ ହୋଇ ଥାଆନ୍ତି, ତେବେ ହୁଏତ ଅତ୍ୟଧିକ ଆନନ୍ଦ ଓ ବିସ୍ମୟରେ, ମୋର ସଞ୍ଜ୍ଞାଲୋପ ହେବାର ଉପକ୍ରମ ହେବ ! ଏତେ ଗୁଡ଼ାଏ ଆଶ୍ଚର୍ଯ୍ୟର ସମାବେଶକୁ ମୁଁ ଯେ ବିଶ୍ୱାସ କରିପାରୁ ନାହିଁ, ଦେବ !

ସନ୍ନ୍ୟା । କବି ! ସମଗ୍ର କଳିଙ୍ଗ ସାମ୍ରାଜ୍ୟଟା ଗୋଟାଏ ବିରାଟ ଦେବ-ଭୂମି । ତେଣୁ ସେହି ଦେଶର, ତୁମପରି ଜଣେ ଅଦ୍ୱିତୀୟ ପ୍ରତିଭାଶାଳୀ କବିଶେଖରଙ୍କୁ, ତାରକ ମନ୍ତ୍ର ଦୀକ୍ଷା ଦେବା ଲାଗି, ଯଦି ସ୍ୱୟଂ ଭଗବାନ ରାମଚନ୍ଦ୍ର, ସନ୍ନ୍ୟାସୀ ରଘୁନାଥଙ୍କ ଛଦ୍ମବେଶରେ ତୁମ ସମ୍ମୁଖରେ ଆବିର୍ଭୂତ ହୁଅନ୍ତି, ତେବେ ସେଥିରେ ଆଶ୍ଚର୍ଯ୍ୟ ହେବାର ତ କିଛି କାରଣ ନାହିଁ ! ସୁତରାଂ, କି ଭିକ୍ଷା ଦେଇ ତୁମେ ସନ୍ନ୍ୟାସୀ ରଘୁନାଥଙ୍କୁ ସନ୍ତୁଷ୍ଟ କରି ପାରିବ ? ଭାଗ୍ୟବାନ କବି ତୁମେ ଯେ, ଭଗବାନ ରାମଚନ୍ଦ୍ରଙ୍କର ପ୍ରତ୍ୟକ୍ଷ କରୁଣା ଲାଭ କରି ପାରିଛ ।

ଉପେ । (ବିହ୍ୱଳସ୍ୱରେ) କଣ କହିଲେ, ଦେବ ! ଏହାକି ସତ୍ୟ ? ସ୍ୱୟଂ ଭଗବାନ୍ ଶ୍ରୀରାମଚନ୍ଦ୍ର ସନ୍ୟାସୀ ରଘୁନାଥ ବେଶରେ ଉପେନ୍ଦ୍ରର ସଙ୍ଗୀ ଗୁରୁର ଭୂମିକା ଅଭିନୟ କରିଗଲେ, ଅଥଚ ମୁଁ ତାହା ଘୁଣାକ୍ଷରରେ ବୁଝି ଜାଣି ପାରିଲି ନାହିଁ । ହାୟ ହତଭାଗ୍ୟ ମୁଁ —! ସନ୍ୟାସିନ୍, ଦେବ ! ଦୟାକରି କୁହନ୍ତୁ, ଆଉ ଥରେ ମାତ୍ର ତାଙ୍କର ଚରଣ ଦର୍ଶନ କରିବାର ସୌଭାଗ୍ୟ କି ମୋର ହେବ ନାହିଁ ?

ସନ୍ୟା । (ହସି) ଥରେ କାହିଁକି ? ଇଚ୍ଛାକଲେ, ଓଡ଼ଗାଁର ପ୍ରାଚୀନ ଦେଉଳ ମନ୍ଦିରରେ ରଘୁନାଥଙ୍କର ଅପୂର୍ବ ବିଗ୍ରହ ତୁମେ ନିତ୍ୟ ଦର୍ଶନ କରି ପାରିବ । କିନ୍ତୁ ଜୀବନ୍ତ ସନ୍ୟାସୀ ରଘୁନାଥଙ୍କର ଦର୍ଶନ ତୁମେ ଆଉ ପାଇ ପାରିବ ନାହିଁ କବି ! ତାଙ୍କର କର୍ତ୍ତବ୍ୟ ସେ ଯେ ଶେଷ କରି ଯାଇଛନ୍ତି । ତୁମ୍ଭେ ତୁମର ଏହି ମହାକାବ୍ୟ ବୈଦେହୀଶ ବିଳାସର ପ୍ରଥମ ନମସ୍କାରକୁ ତୁମେ ସେହି ମନ୍ଦିରରେ ଶ୍ରୀ ରଘୁନାଥଙ୍କ ଚରଣରେ ସମର୍ପଣ କରିପାରି, କବି ! ତୁମର ସନ୍ୟାସୀ ରଘୁନାଥ ଯେ ଓଡ଼ଗାଁର ଦେବତା ରଘୁନାଥଙ୍କର ପ୍ରତିରୂପ ମାତ୍ର ।

ଉପେ । କିନ୍ତୁ ଦେବ ! ଉପେନ୍ଦ୍ରର ଏହି ନଗଣ୍ୟ ଜୀବନ ଉପରେ ଯଦି ଏ ଦେଶର ଦେବତାଙ୍କର ଏତେ ଅନୁଗ୍ରହ, ତେବେ କି ହେତୁରୁ ସେ ତାଙ୍କର ପରିଚୟକୁ ମୋ ଠାରୁ ଗୋପନ କରି ରଖିଥିଲେ ?

ସନ୍ୟା । ଏ ପ୍ରଶ୍ନର ଉତ୍ତର ସବୁ ସମୟରେ ମାନବ ପାଇ ପାରେ ନା, ବତ୍ସ ! ମୋର ମତରେ ହୁଏ, ଦେବତ୍ୱର ପ୍ରଚ୍ଛନ୍ନ ଶ୍ରୀଶକ୍ତି, ମାନବକୁ ସହଜଲଭ୍ୟ ବସ୍ତୁ ହୋଇଥିଲେ, ଦେବତା ଓ ମାନବର ପାର୍ଥକ୍ୟ ନ ଥାନ୍ତା । ତଥାପି, ଏହି ପ୍ରହେଳିକା ମଧ୍ୟରେ, ପ୍ରତ୍ୟକ୍ଷରେ ବା ପରୋକ୍ଷରେ ଦେବତାର ଆଶୀର୍ବାଦ ଯେ ତୁମେ ପାଇ ପାରିଛ, ଏହା ତ କମ୍ ଗୌରବର ବସ୍ତୁ ନୁହେଁ, କବି !

ଉପେ । ବୁଝିଲି ଦେବ ! ଏହାପରେ ଗୋଟାଏ ଆଶ୍ୱାସନା ଦେଇ, ସେ ଦିନ ଅପଣ ହଠାତ୍ ବାଗ୍‌ଦେବୀ ମନ୍ଦିରରୁ ଅନ୍ତର୍ହିତ ହୋଇଥିଲେ । ଆଜ କିନ୍ତୁ, ତାହା ହୋଇ ପାରିବ ନାହିଁ । ଉପେନ୍ଦ୍ର ଆଜ ଜାଗ୍ରତ । ତାର

ଆଜୀବନ ସାଧନାର ବନମୟୂରେ, ସେ ଆଜି ଆପଣଙ୍କର ପରିଚୟ ଲାଭ କରିବା ଲାଗି ଏକାନ୍ତ ବ୍ୟାକୁଳ । କୁହନ୍ତୁ ଦେବ ! ଜନତାର ବାତ୍ସଲ୍ୟଭରା ହୃଦୟ ଦେଇ ଉପେନ୍ଦ୍ରଙ୍କ ପଛେ ପଛେ, ଘୁମୁସର ଗିରିକନ୍ଦରରୁ ନୟାଗଡ଼ ରାଜ୍ୟ ପର୍ଯ୍ୟନ୍ତ, ଧାଇଁ ଆସିଛନ୍ତି, କିଏ ଆପଣ ?

ସନ୍ୟାସୀ । ଜ୍ଞେଜ୍ଞାମଣି । ତୁମର ପରିଚୟ ପାଇବାକୁ ଏବେ ପ୍ରତିଜ୍ଞା କର, ଯେ, ମୋ ସହିତ ତୁମର ଏହି ପ୍ରତ୍ୟକ୍ଷ ସାକ୍ଷାତର ବିବରଣୀ ଯେପରି ତୁମ ଅନ୍ତଃକରଣରେ ଚିରଦିନ ଗୁପ୍ତ ରହିବ ।

ଉପେ । ଆପଣଙ୍କର ଆଦେଶକୁ ଉପେନ୍ଦ୍ର ଆଜୀବନ ନତଶିରରେ ପାଳନ କରିବ, ଦେବ !

ସନ୍ୟା । ଶୁଣ ତେବେ ଉପେନ୍ଦ୍ର ! ଘୁମୁସରର ଅଧିଷ୍ଠାତ୍ରୀ ଦେବୀ ବାଗ୍‌ଦେବୀ ଆଜି ତୁମର ସମ୍ମୁଖରେ । ଜୀବନର ଯେଉଁ ମହା ଉଦ୍ଦେଶ୍ୟ ଘେନି ତୁମେ ଏ ଦେଶରେ ଜନ୍ମ ହୋଇଛ, ସେହି ଉଦ୍ଦେଶ୍ୟ ଆଜି ସଫଳ ହୋଇ ପାରିଛି, କେବଳ ସନ୍ୟାସୀ ରଘୁନାଥଙ୍କର ଆଶ୍ରା ଦାନ ଫଳରେ । ଆଜିଠାରୁ ସମଗ୍ର କଳିଙ୍ଗ ସାମ୍ରାଜ୍ୟର ଅପ୍ରତିଦ୍ୱନ୍ଦୀ କବିସମ୍ରାଟ ତୁମେ । ମହାରାଜ ଧନଞ୍ଜୟ ଭଞ୍ଜଙ୍କୁ ଯେଉଁ ପ୍ରତିଶ୍ରୁତି ତୁମେ ଦେଇଥିଲ, ତାର ଫଳରେ ତୁମର ଏହି ମହାକାବ୍ୟ ବୈଦେହୀଶ ବିଳାସର ପୀୟୂଷ ନିସ୍ୟନ୍ଦିନୀ କବିତାଧାରା ତୁମର ଜାତିକୁ ତୁମେ ଦେଇଯାଇ ପାରିବ । ତୁମର ଏହି ଦେଶବ୍ୟାପୀ ଗୌରବରେ, କଳିଙ୍ଗ ଭାରତୀ ମୁଁ—ମୋର ଶେଷ ଅଭିନନ୍ଦନ ମାତ୍ର ଜଣାଇବାକୁ ଆଜି ଏହି ନୟାଗଡ଼କୁ ଧାଇଁ ଆସିଛି । (ଶୂନ୍ୟକୁ ହାତ ବଢ଼ାଇଲେ ଓ ଶୂନ୍ୟରୁ ଚୋଟିଏ ବୀଣା ସନ୍ୟାସିନୀଙ୍କ ହାତକୁ ଆସିଲା ।) ଗ୍ରହଣ କର ଉପେନ୍ଦ୍ର, କଳିଙ୍ଗ ଭାରତୀ ବାଗ୍‌ଦେବୀଙ୍କର ଏହି ବୀଣା । (ଉପେନ୍ଦ୍ର ଜାନୁପାତ ପୂର୍ବକ ଗ୍ରହଣ କଲେ ।) ବହୁଦିନ ପୂର୍ବେ ଏକମାତ୍ର ଶୂଦ୍ରମୁନି ସାରଳାଦାସ ଏହି ଅମର ବୀଣାର ଅଧିକାରୀ ହୋଇ, ଏ ଜାତିର କଣ୍ଠରେ ଢାଳି ଦେଇଥିଲେ ପ୍ରାଣୋନ୍ମାଦୀ କବିତାର ଅମୀୟ ଝଙ୍କାର । ତାଙ୍କର ତିରୋଧାନ ପରେ, ଯୋଗ୍ୟପାତ୍ର ଅଭାବରୁ, ଏହି ବୀଣା ଏ ପର୍ଯ୍ୟନ୍ତ ନୀରବ ରହିଥିଲା । ଆଜିର କଳିଙ୍ଗ ସାମ୍ରାଜ୍ୟରେ,

ଏହି ବୀଣାରେ କୋମଳ ଅଙ୍ଗୁଳି ସଞ୍ଚାଳନ କରି, କବିତାର ମନ୍ଦ୍ର ମଧୁର ଧ୍ୱନି ସୃଷ୍ଟି କରିବାକୁ, କବିସମ୍ରାଟ ଉପେନ୍ଦ୍ର, ତୁମେହିଁ ଏକମାତ୍ର ସମର୍ଥ। ଭଞ୍ଜକୁଳ ପ୍ରଦୀପ ! ଏ ବୀମଣ୍ଟର ମର୍ଯ୍ୟାଦା ତୁମ ହସ୍ତରେ ଅକ୍ଷୁଣ୍ଣ ରହିପାରିବ। କଳିଙ୍ଗ ଭୂଇଁର ବାଗ୍‌ଦେବୀଙ୍କର ବରପୁତ୍ର ତୁମେ। ଜନନୀର ଗୌରବ ତୁମରି ଅମର ଲେଖନୀ ମୁନରେ ଫୁଟିଉଠୁ। ଏହି ଏତିକିହିଁ ମୋର ଶେଷ ବାଣୀ।

ଉପେ। ମା—ମା— (ଅଭିକିଛି କହି ପାରିଲେ ନାହିଁ। ଅନ୍ତରର ଅନ୍ତଃସ୍ଥଳରେ, ଚକ୍ଷୁରୁ ଦରଦର ଧାରରେ ଅଶ୍ରୁ ଗଡ଼ି ପଡ଼ିଲା। ସେହି ଅଶ୍ରୁବିଜଡ଼ିତ କଣ୍ଠରେ, ଉପେନ୍ଦ୍ର ସନ୍ନ୍ୟାସିନୀଙ୍କର ପଦତଳେ ବସି ପଡ଼ି, ସେହି ବୀଣା ସଂଯୋଗରେ ଗାଇ ଉଠିଲେ।)

ବଲ୍ମୀକି ବ୍ୟାସ କବି ଯନ୍ଥିରେ, ମହା କାବ୍ୟ କେ ପୁରାଣ କରେ,
ମହା ନାଟକ ବାତ ସୂତରେ ହେଲେ ରଚିତା ଯେ,
ବାନ୍ଧିଲେ କାବ୍ୟ ଯେ କାଳିଦାସେ ଏମ୍ଭ ରଚନା ଭେକ ନରେଣେ
କୃପାସିନ୍ଧୁ ଏ ଗୀତ ପ୍ରକାଶେ ... ଶ୍ରୀ ଯେ,
ବଦେବକହିଁ ଉଦସ୍ଥି ଏକନ୍ତ ଯାମ୍ଭି ଯେ,
ବ୍ୟୋମେ ତାରକା ଯେବେ ଝଲକି ଥାଇ ଯେ,
ବାକ୍‌ବିଷ୍ଟରେ ଜ୍ୟୋତିରଙ୍ଗଣ ... ଜ୍ୟୋତିକ ଦେଖାନ୍ତି ପୁଣ .
ସୁଜନେ ସାବଧାନରେ ଶୁଣି ଛନ୍ଦ ରଚଇ ଯେ।

[ଉପେନ୍ଦ୍ର, ଏତକ ଗାଇ, ସମ୍ମୁଖରେ ଦଣ୍ଡାୟମାନ ଥିବ ସନ୍ନ୍ୟାସିନୀଙ୍କୁ ପ୍ରଣିପାତ କରିବା ସମୟରେ, ସନ୍ନ୍ୟାସିନୀଙ୍କର ପ୍ରସ୍ଥାନ।]

ଉପେ। (ନମସ୍କାର କରି ଉଠି ଦେବୀଙ୍କୁ ନ ଦେଖି) ଦେବି ବାଗ୍‌ଦେବି—ଜନନି ଏ ଅଧମ ସନ୍ତାନପ୍ରତି ଏତେ ଅନୁଗ୍ରହ ! ବୀଣାର ମର୍ଯ୍ୟାଦା ମୁଁ କି ରଖି ପାରିବି ? ବୀଣାପାଣି ! କବି ଉପେନ୍ଦ୍ରର ଜୀବନରେ ତୁମରି ଇଚ୍ଛା ପୂର୍ଣ୍ଣହେଉ।(ଏତକ କହି ପୁଣି ସେହି ସିଦ୍ଧଗୁମ୍ଫା ମଧ୍ୟକୁ ଯାଇ, ବୀଣାକୁ ରଖି, ବସିପଡ଼ି ପୋଥି ଧେନି ରଚନାରେ ମନୋନିବେଶ କଲେ।)

# ଦ୍ୱିତୀୟ ଦୃଶ୍ୟ

[ କୁଳକ୍ତି ଦୁର୍ଗ ମଧ୍ୟସ୍ଥ ଉଦ୍ୟାନର ଏକାଂଶ । ସେହି ଉଦ୍ୟାନ ମଧ୍ୟସ୍ଥ ଏକ ସୁଦୃଶ୍ୟ ପୁଷ୍କରିଣୀର ତଟଦେଶର ଉପରିଭାଗରେ, ଚିନ୍ତାମଗ୍ନ ହୋଇ ବସିଛନ୍ତି ବୃଦ୍ଧ ଧନଞ୍ଜୟ । ତାଙ୍କର ପାଦତଳେ ପୁଷ୍କରିଣୀର ପକ୍କା ପାବଚ୍ଛ ଶ୍ରେଣୀ । ସେହି ପାବଚ୍ଛ ଉପରେ ଧନଞ୍ଜୟଙ୍କ ପାଖକୁ ଲାଗି ବସି ରହିଛନ୍ତି ପୌତ୍ର ଶତ୍ରୁଞ୍ଜୟ । ସମୟ ଅପରାହ୍ଣ । ସ୍ୱଳ୍ପକ୍ଷଣରେ ଅସ୍ତମିତ ସୂର୍ଯ୍ୟଙ୍କର ରକ୍ତବର୍ଣ୍ଣ ପ୍ରତିଛବି ଦିଗ୍‌ବଳୟରେ ବିଲୀନ ହୋଇ ଯିବାକୁ ଅଳ୍ପ କିଛି ସମୟ ଅଛି । ପୁଷ୍କରିଣୀର ଚତୁଃପାର୍ଶ୍ୱ ବିବିଧ ପୁଷ୍ପବୃକ୍ଷମାନଙ୍କ ଦ୍ୱାରା ପରିଶୋଭିତ । ]

ଧନ । (ଅସ୍ତଗାମୀ ସୂର୍ଯ୍ୟଙ୍କୁ ଦୃଷ୍ଟି) ଦେଖୁଛ ପାଠଦେଉ ! ଦିବସବ୍ୟାପୀ ପ୍ରଚଣ୍ଡ ରୌଦ୍ରର ରାଜତ୍ୱ ପରେ, ଏହି ସୂର୍ଯ୍ୟାସ୍ତର କି କରୁଣମାମୟ କରୁଣ ଦୃଶ୍ୟ ! ପ୍ରଚଣ୍ଡତା ନାହିଁ, ଦୀପ୍ତି ନାହିଁ, ଅଛି ମାତ୍ର କେବଳ ଗୋଟାଏ ମୁମୂର୍ଷୁ ଶୌର୍ଯ୍ୟର କ୍ଷୀଣାଭାସ । ମ୍ଳାନ, ନିଃସହାୟ, ଅଥଚ ସ୍ନିଗ୍ଧ । କିଛି ବୁଝି ପାରୁଛ ଏଥିରୁ ?

ଶତ୍ରୁ । ମୁଁ ତ କିଛି ବୁଝିପାରୁ ନାହିଁ, ପିତାମହ ।

ଧନ । ଦୀର୍ଘ ଷାଠିଏ ବର୍ଷର ଏକଚ୍ଛତ୍ର ରାଜତ୍ୱ ପରେ, ଆଜି ଧନଞ୍ଜୟର ଜୀବନ-ସନ୍ଧ୍ୟା ଠିକ୍ ଏହିପରି ଗୋଟାଏ ମହତ୍ତ୍ୱର କାନ୍ତି କଙ୍କାଳରୂପେ ଠିଆ ହୋଇ ରହିଛି । ଯୌବନର ସେ ଦୀପ୍ତି ନାହିଁ, କି ଶୌର୍ଯ୍ୟ ନାହିଁ । ଜୀବନ ଅଛି କିନ୍ତୁ ତହିଁରେ ଜୀବନୀଶକ୍ତି ନାହିଁ । ଧୁମୁସରର ପ୍ରତାପଶାଳୀ ରାଜା ଧନଞ୍ଜୟ ଆଜି ନିତାନ୍ତ ନିଃସହାୟ । ଆଶା ନାହିଁ କି ଭରସା ନାହିଁ । ନିୟତିର ଏପରି କଠୋର ଉପହାସ କେବେ ଦେଖିଛ, ପାଠଦେଉ ?

ଶତ୍ରୁ । ବୃଥାରେ ଏ ସବୁ ଦୁଶ୍ଚିନ୍ତା ଅଳ ମନରେ ସ୍ଥାନ ଦେଉଛନ୍ତି କାହିଁକି, ମହାରାଜ ?

ଧନ । ଶତ୍ରୁଞ୍ଜୟ ! ତୁମେ ମୋତେ ମହାରାଜ ବୋଲି ସମ୍ବୋଧନ କରୁଛ ଯେ ? ଏ ତୁମର ବ୍ୟଙ୍ଗ ସମ୍ବୋଧନ ନୁହେଁ ତ ?

ଶତ୍ରୁ । ପିତାମହ ! ହିମାଳୟ ପର୍ବତକୁ ପ୍ରସ୍ତର ଖଣ୍ଡ ବୋଲି ପରିହାସ କରିବାର ଦୁଃସାହସ ମୋର ନାହିଁ । ମୋର ଅନୁରୋଧ, ଆପଣ ଏତେ ବିଚଳିତ ହେଉନ୍ତୁ ନାହିଁ ।

ଧନ । ରାଜଦେଉ ! ଘଟଣାର ସ୍ରୋତ ଯେପରି ନିର୍ମମଭାବରେ ମୋର ଦୁର୍ବଳ ମସ୍ତିଷ୍କ ଉପରେ ଅନବରତ ଅଘାତ କରି ଚାଲିଛି, ସେଥିରେ ବୃଦ୍ଧ ମୁଁ, ବିଚଳିତ ନ ହେବି କପରି ? ମୋର ଧାରଣା ନଥିଲା ଯେ, ସିଂହାସନର ମୋହ ରାଜରକ୍ତକୁ ସୁଦ୍ଧା ଏତେଦୂର ବିଭ୍ରାନ୍ତ କରିଦେଇପାରେ ।

ଶତ୍ରୁ । ଘୁମୁସର ରାଜ୍ୟର କର୍ଣ୍ଣଧାର ଆପଣ । ଦୃଢ଼ମୁଷ୍ଟିରେ ଏ ସବୁ ଅନ୍ୟାୟର ପ୍ରତିବିଧାନ କରନ୍ତୁ ମହାରାଜ ! ଦୁର୍ଜ୍ଜନର କଠୋର ଶାସନ ନ କରି, ଏପରି ଅଯଥା ଅନୁଶୋଚନା କଲେ ତ କିଛି ଲାଭ ନାହିଁ ।

ଧନ । କିନ୍ତୁ କାହାକୁ ଶାସନ କରିବି ? କୁମାର ନୀଳକଣ୍ଠଙ୍କୁ ? ଯେଉଁ ପୁତ୍ର ପିତାର ଉଦାର ହୃଦୟର ସ୍ନେହମୟ ଶାସନକୁ ପଦାଘାତ କରେ, ସେ କି କେବେ ସ୍ୱେଚ୍ଛାର ଶାସନରେ ବଶୀଭୂତ ହୋଇ ପାରିବ ବୋଲି ତୁମର ବିଶ୍ୱାସ ? ଅସମ୍ଭବ । ସୁତରାଂ ବିପ୍ଳବ ଅନିବାର୍ଯ୍ୟ ।

ଶତ୍ରୁ । ସେଥିପାଇଁ ତ କହୁଛି, ପିତାମହ ! ଏ ବିପ୍ଳବକୁ ଦମନ କରନ୍ତୁ । ପିତୃବ୍ୟ ନୀଳକଣ୍ଠଙ୍କର ଅତ୍ୟାଚାରର ମାତ୍ରା ଯେ କ୍ରମଶଃ ସୀମା ଲଙ୍ଘନ କରୁଛି । ରାଜ୍ୟର ସମସ୍ତ ଶକ୍ତି ପ୍ରୟୋଗ କରି ଏ ଅତ୍ୟାଚାରର ଗତିରୋଧ କରନ୍ତୁ, ମହାରାଜ !

ଧନ । କିନ୍ତୁ ଶକ୍ତି କାହିଁ ? କାହାକୁ ଘେନି ବୃଦ୍ଧ ଧନଞ୍ଜୟ ଆଜି ନିଜର ରକ୍ତର ବିରୁଦ୍ଧରେ ଅଭିଯାନ କରିବ ? କୁମାର ଗଙ୍ଗାଧରଙ୍କ ଉପରେ

ମୋର ଅଜସ୍ର ଭରସା ଥିଲା । ସେ କିନ୍ତୁ ତ୍ୟାଗର ଗୋଟିଏ ମହାନ୍ ଆଦର୍ଶ ସମ୍ମୁଖରେ, ଜାଣି ଜାଣି ନିଜର ପୌରୁଷକୁ ବଳି ଦେଇ, ଆଜି ଗୋଟିଏ ନିର୍ବିକାର ଜୀବନ ଯାପନ କରୁଛନ୍ତି । ତା ପରେ, କନିଷ୍ଠ ଭ୍ରାତା ଗୋବିନ୍ଦ ଭଞ୍ଜଙ୍କ ଉପରେ ଅବଶ୍ୟ ବହୁତ ନିର୍ଭର କରିଥିଲି । କିନ୍ତୁ ଅବସ୍ଥାଚକ୍ରରେ ସେ ଏକପ୍ରକାର ରାଜ୍ୟର ସମସ୍ତ ସମ୍ପର୍କ ଛିନ୍ନକରି, ଧନଞ୍ଜୟଙ୍କୁ ତ୍ୟାଗ କରି ପଳାୟନ କଲେ । ସୁତରାଂ ମୋର ଶଙ୍କା କାହିଁ ? ଏ ସବୁ ଦେଖି, ବୃଦ୍ଧ ଧନଞ୍ଜୟ ଯେ ଏ ପର୍ଯ୍ୟନ୍ତ ଉନ୍ମାଦ ନ ହୋଇଛି, ଏହାହିଁ ଆଶ୍ଚର୍ଯ୍ୟ ! (ଟିକିଏ ଭାବି) ଆଚ୍ଛା, ସାହେଦେଓ ?

ଶତ୍ରୁ । ଆଦେଶ କରନ୍ତୁ ପିତାମହ !

ଧନ । ତୁମେ ପାରିବ ? ମୁଁ ଚାହେଁ, ଘୁମୁସର ରାଜ୍ୟର ପ୍ରଜାମାନଙ୍କ ସମ୍ମୁଖରେ ମୋର ରାଜମୁକୁଟ ମୁଁ ତୁମରି ମସ୍ତକରେ ପିନ୍ଧାଇଦେବି । କୁହ, ତୁମେ ଅତ୍ୟାଚାରୀ ନୀଳକଣ୍ଠର କଣ୍ଠରୋଧ କରି ପାରିବ ? ତା ହେଲେ, କାଲି ପ୍ରଭାତରେ ଏ ରାଜ୍ୟର ସିଂହାସନ ମୁଁ ତୁମ ହସ୍ତରେ ସ୍ୱଚ୍ଛନ୍ଦରେ ଅର୍ପଣ କରିଦେବି । ତୁମେ ସମ୍ମତ ?

ଶତ୍ରୁ । ନା ମହାରାଜ, ଘୁମୁସର ରାଜ୍ୟର ଗୁରୁଦାୟିତ୍ୱ ବହନ କରିବାକୁ ମୁଁ ବାସ୍ତବିକ ଅସମର୍ଥ । ତା ପରେ, ରାଜା ହେବାର ଯୋଗ୍ୟତା ସମସ୍ତଙ୍କର ତ ଥାଏ ନା, ପିତାମହ ।

ଧନ । (ଶୁଷ୍କ ହାସ୍ୟସହ) ଏହି ଉତ୍ତର ଯେ ତୁମେ ଦେବ, ଏହା ମଧ୍ୟ ମୁଁ ଆଶା କରିଥିଲି । ସୁତରାଂ, ଆଉ ଦୁଃଖ କାହିଁକି, ସାହେଦେଓ ? ଘୁମୁସର ରାଜ୍ୟର ଧ୍ୱଂସ, ବିଧାତାଙ୍କର ଅଭିପ୍ରେତ । ଏହାର ସ୍ପଷ୍ଟ ସୂଚନା, ମୁଁ ବହୁଦିନ ଆଗରୁ ପାଇ ସାରିଛି । କିନ୍ତୁ ଏତିକି ଦୁଃଖ ଯେ, ଯେଉଁ ଘୁମୁସର ଜନନୀକୁ ମୋର ଜୀବନର ରକ୍ତ ପର୍ଯ୍ୟନ୍ତ ଦେଇ, ଏପରି ଗୌରବମୟୀ କରି ଗଢ଼ି ପାରିଥିଲି ମୁଁ ,ଆଜି ମୋର ଜୀବନ ସନ୍ଧ୍ୟାର ପ୍ରାକ୍କାଳରେ,ତାକୁ ରକ୍ଷା କରିବାକୁ ଏକାନ୍ତ ଅସମର୍ଥ । ହାୟ ଭଗବାନ ! ଶତ୍ରୁଞ୍ଜୟ ?

ଶତ୍ରୁ । କଣ, ପିତାମହ ?

ଧନ । (ଆକାଶକୁ ଦେଖାଇ) ପଶ୍ଚିମ ଗଗନର ସେହି ଅନ୍ଧାରିଆ ଦିଗ୍‌ବଳୟକୁ ଚାହିଁ ଦେଖ । ସେଠାରେ କଛି ଦେଖି ପାରୁଛ, ଯାଃଦେଇ ?

ଶତ୍ରୁ । ନା ପିତାମହ !

ଧନ । ଅପଦାର୍ଥ ! କିଛି ଦେଖିପାରୁ ନାହିଁ ? କିନ୍ତୁ ମୁଁ କଣ ଦେଖୁଛି ଜାଣ ? ଭୂମସର ସିଂହାସନର ଗୌରବମୟ ଛବି ଧୀରେ ଧୀରେ ସେହି ସନ୍ଧ୍ୟାର ଅନ୍ଧକାର ମଧ୍ୟରେ ଚିରଦିନ ଲାଗି ବନ୍ଧୁରିତ ଗୋଟାଏ ଅତଳ ଜଳଧି ଗର୍ଭରେ କମଙ୍କି ତ ହୋଇ ଯାଉଛି । ଅଉ, ତାର ସ୍ଥାନରେ ଭାସି ଉଠୁଛି—ଧ୍ୱଂସ ଓ ବିପ୍ଳବର ଭୈରବୀ ରକ୍ତଧାର । ସେହି ପ୍ଲାବନରେ ସମଗ୍ର ଭୂମସର ରାଜ୍ୟ ଯେପରି ସ୍ୱଚ୍ଛତର ମାନଚିତ୍ରରୁ ଚିରଦିନ ଲାଗି ନିଶ୍ଚିହ୍ନ ହୋଇ ଯାଉଛି ।

ଶତ୍ରୁ । ମହାରାଜ, ଅନୁନୟ କରୁଛି, ଏତେ ବ୍ୟସ୍ତ ହୁଅନ୍ତୁ ନାହିଁ ।

ଧନ । (ସେ ପ୍ରତି କର୍ଣ୍ଣପାତ ନ କରି) କିନ୍ତୁ ଗୋଟାଏ ଶୁଭ ଲକ୍ଷଣ ଯାଃଦେଇ ! ଦେଖ, ସେହି ଧ୍ୱଂସ ଦେବକାର ଅନ୍ତରାଳରେ ଧୀରେ ଧୀରେ ଫୁଟିଉଠୁଛି, ଗୋଟାଏ ଉଜ୍ଜ୍ୱଳ ଜ୍ୟୋତିଷ୍କ । ତାକୁ ଚିହ୍ନି ପାରୁଛ ?

ଶତ୍ରୁ । କେଉଁଟା ଶୁକ୍ରତାରା, ପିତାମହ !

ଧନ । ନା—ନା—ନା—ହେ ତୋର ଭୁଲ୍‌ ହେଉଁ, ଯାଃଦେଇ ! ସେ ମୋର ଭୂମସର ଜନନୀର ଅଞ୍ଚଳନିଧି—, ପ୍ରଣତର ଘର ଅମଳିନ ଧ୍ରୁବଜ୍ୟୋତି ! ଧ୍ୱଂସପ୍ରାପ୍ତ ଭୂମସର ରାଜ୍ୟର ଏକମାତ୍ର ଜ୍ୱଳନ୍ତ ସ୍ମୃତିଶିଖା—କବୀନ୍ଦ୍ର ଉପେନ୍ଦ୍ର । ଏ ରାଜ୍ୟର ଭସ୍ମସ୍ତୂପ ଉପରେ, ସେହି ମାତ୍ର ଗୋଟିଏ ଶ୍ମଶାନ ତୁଳସୀ ।

ଶତ୍ରୁ । ପିତାମହ, ପ୍ରକୃତିସ୍ଥ ହୁଅନ୍ତୁ । ଏପରି ଅଧୀରତା ଆପଣଙ୍କୁ ଶୋଭା ପାଏ ନା ।

ଧନ । ଠିକ୍ କହୁଛ, ପାଠଦେଉ ! ଧୂମ୍ରସରର ପ୍ରତାପଶାଳୀ ମହାରାଜା ମୁଁ ! ମୋ ପକ୍ଷରେ ଏପରି ଦୁର୍ବଳତା ଥାଉଛିନା; କିନ୍ତୁ ବାବା, ଏହାଛଡ଼ା ଅନ୍ୟ ଉପାୟ ଯେ ମୋର କିଛି ନାହିଁ ।

[ ଠିକ୍ ଏହି ସମୟରେ କୁମାର ଗଙ୍ଗାଧର ପ୍ରବେଶ କଲେ । ]

**ଗଙ୍ଗା ।** ସନ୍ଧ୍ୟାର ଅନ୍ଧକାର ମଧ୍ୟରେ ଏଠାରେ କଣ କରୁଛନ୍ତି ପିତା ?

ଧନ । କିଏ ? ରାଜକୁମାର ଗଙ୍ଗାଧର ?

ଗଙ୍ଗା । ହଁ ପିତା ! କିନ୍ତୁ ଏଠାରେ, ନିର୍ଜନ ଉପବନଟାରେ ଆପଣ ଏତେବେଳେ ଏକାକୀ କାହିଁକି ?

ଧନ । ବୃଦ୍ଧ ଧନଞ୍ଜୟ ତାର ନିଃସଙ୍ଗ ଜୀବନର କରୁଣ ଇତିହାସ ପାଠଦେଉଙ୍କ ଆଗରେ ବର୍ଣ୍ଣନା କରୁଛି, କୁମାର ! ଜୀବନଟା ଆଜି ବଡ଼ ଦୁର୍ବିସହ ହୋଇ ଉଠିଛି । ତେଣୁ, ମଝେ ମଝେ ଶତ୍ରୁଞ୍ଜୟଙ୍କ ସଙ୍ଗରେ ଘେନି ଏହି ଉପବନକୁ ଚାଲିଆସେ,—ଗୋଟାଏ ହତାଶାର ଆର୍ତ୍ତନାଦ କରିବାକୁ । କିନ୍ତୁ ଦୁର୍ଭାଗ୍ୟ ମୋର ଯେ, ଏହି ଶୂନ୍ୟ ପରିତ୍ୟକ୍ତ ପ୍ରାନ୍ତର ମଧ୍ୟରୁ ସହାନୁଭୂତିର କ୍ଷୀଣ ପ୍ରତିଧ୍ୱନିଟିଏ ସୁଦ୍ଧା ମୁଁ ଶୁଣିପାରେ ନାହିଁ । ଗଙ୍ଗାଧର ! ଏ ବୃଦ୍ଧ ପ୍ରତି କି ତୁମର ଟିକିଏ ଦୟା ହୁଏ ନା ?

ଗଙ୍ଗା । ଅବାଳ୍ୟ ମାତୃହୀନ ଗଙ୍ଗାଧର ପ୍ରତି ଆଜି ଏହି ମର୍ମନ୍ତୁଦ ଶ୍ଳେଷ କାହିଁକି ପିତା ? ଆପଣଙ୍କର ସନ୍ତାନ ଅଦର୍ଶୀରୁ ମୁଁ ତ ଟିକିଏ ମାତ୍ର ବଞ୍ଚିତ ହୋଇ ନାହିଁ । ଆଦେଶ କରନ୍ତୁ, ଆପଣଙ୍କର ଅଭିପ୍ରାୟ କଅଣ । ଯଦି ପ୍ରୟୋଜନ ପଡ଼େ, ଗଙ୍ଗାଧର ନିଜର ଜୀବନ ବିନିମୟରେ, ତାହା ପୂର୍ଣ୍ଣ କରିବାକୁ ପଶ୍ଚାତ୍‌ପଦ ହେବ ନାହିଁ ।

ଧନ । (ଇଙ୍ଗିତରେ ପାଖରେ ନେଇ ବସାଇ) ରାଜକୁମାର ! ଜୀବନର ଅତି ଦୁର୍ବଳ ମୁହୂର୍ତ୍ତରେ, ଧନଞ୍ଜୟ ଗୋଟାଏ ମହାଭ୍ରମ କରି ବସିଥିଲା । ସୁତରାଂ ତାର ପ୍ରାୟଶ୍ଚିତ୍ତ କରିବାକୁ, ଆଜି ନିତାନ୍ତ ପ୍ରୟୋଜନ ହୋଇ

ପଡ଼ିଛି । କୁମାର, ତେଣୁ ମୋର ଏକାନ୍ତ ଅନୁରୋଧ, ତୁମର ନ୍ୟାଯ୍ୟ ସିଂହାସନ ତୁମେ ଗ୍ରହଣ କର । ଏହା ମୋର ଅନୁଗ୍ରହର ଦାନ ନୁହେଁ । ଏହା ତୁମର ଦାବୀ । ଅନ୍ଧତାରୁ ନୀଳକଣ୍ଠଙ୍କର ସମସ୍ତ ଷଡ଼ଯନ୍ତ୍ର, ମନ୍ତ୍ରୀ ଦେବୀଙ୍କର ସମସ୍ତ କୌଶଳ, ଆଉ ଧନଞ୍ଜୟଙ୍କୁ ପଥଭ୍ରଷ୍ଟ କରି ପାରିବ ନାହିଁ, କୁମାର ! ତୁମର ପ୍ରାପ୍ୟ ତୁମେ ଗ୍ରହଣ କର, ବତ୍ସ !

ଗଙ୍ଗା । କ୍ଷମା କରନ୍ତୁ, ପିତା ! ଯେଉଁ ତ୍ୟାଗର ଭିତ୍ତି ଉପରେ, ଆଜି ମୋର ସମସ୍ତ ଆତ୍ମପ୍ରତିଷ୍ଠା ନିର୍ଭର କରିଛି, ସେହି ଏକମାତ୍ର ସମ୍ବଳକୁ ମୁଁ କଦାପି ଏପରି ଭାବରେ କ୍ଷୁଣ୍ଣ କରି ପାରିବି ନାହିଁ । ତା ପରେ, ଘୁମୁସରର ସିଂହାସନ, କୃଏତ ମୋର ଆଦର୍ଶକୁ ବଞ୍ଚାଇ ରଖି ପାରିବ ନାହିଁ, ମହାରାଜ ! ତେଣୁ, ଆପଣଙ୍କର ସନ୍ତାନ, ଛାର ସିଂହାସନ ଲାଗି ସତ୍ୟଭଙ୍ଗ କରି ଗୋଟାଏ ମିଥ୍ୟାବାଦୀ ହୋଇ ପାରିଲେ, ଏ କଳଙ୍କକୁ ଘୁମୁସରର ଗୌରବମୟ ଇତିହାସରେ ସ୍ଥାନ ଦେବାକୁ ମୁଁ ଏକାନ୍ତ ନାରାଜ । ସୁତରାଂ, ଆପଣଙ୍କର ସ୍ନେହର ଦାନକୁ ଗ୍ରହଣ କରି, ଆପଣଙ୍କର ରକ୍ତର ମର୍ଯ୍ୟାଦାକୁ ମୁଁ ହୀନ କରି ପାରିବି ନାହିଁ, ପିତା ! କୁମାର ଧନଞ୍ଜୟଙ୍କର ବନବାସ ପରେ, କୁମାର ନୀଳକଣ୍ଠ ଏ ରାଜ୍ୟର ରାଜା ହେବା ସ୍ୱାଭାବିକ । ମୁଁ ଅନୁନୟ କରୁଛି ପିତା, କୁମାର ନୀଳକଣ୍ଠର ରାଜ୍ୟପ୍ରାପ୍ତି ବିଷୟ ଶୀଘ୍ର ଘୋଷଣା କରନ୍ତୁ । ମୋର ବିଶ୍ୱାସ, ତଦ୍ୱାରା ନୀଳକଣ୍ଠଙ୍କର ବ୍ୟବହାରରେ ମାତା ଆପେ ଆପେ ପରି ହୋଇ ପାରିବ, ଆଉ ଆପଣ ମଧ୍ୟ ମାନସିକ ଶାନ୍ତି ଲାଭ କରିପାରିବେ ।

ଧନ । କୁମାର, ଅଭିମାନୀ ପୁତ୍ର ମୋର ! ମୁଁ ତୁମର ମନର ଭାବ ସମସ୍ତ ବୁଝି ପାରିଛି । ମୋର ବାର୍ଦ୍ଧକ୍ୟର ଏହି ଶୁକ୍ଳକେଶ, ଆଜି ମର୍ମେ ମର୍ମେ ଅନୁଭବ କରି ପାରୁଛି ଯେ, ନିଜର ଅବହେଳାରୁ କି ରତ୍ନ ମୁଁ ହରାଇ ବସିଛି । କିନ୍ତୁ ଏ କଥା ନିଶ୍ଚୟ କୁମାର ଯେ—ଧନଞ୍ଜୟ ଜୀବିତ ଥିବା ପର୍ଯ୍ୟନ୍ତ, କୁମାର ନୀଳକଣ୍ଠଙ୍କର ଛାୟା ସୁଦ୍ଧା ମୋର ସିଂହାସନକୁ ସ୍ପର୍ଶ କରି ପାରିବ ନାହିଁ । ଏହା ମୋର ପ୍ରତିଜ୍ଞା । ଯାର ରାଜତ୍ୱ କେବଳ ଗୋଟାଏ ଦୌରାତ୍ମ୍ୟର ନାମାନ୍ତର ମାତ୍ର, ଯେ ନିଜେ ଗୋଟାଏ ମୂର୍ତ୍ତିମନ୍ତ

ବ୍ୟତୀତ, ଏ ସିଂହାସନ କଦାପି ତାକୁ ସ୍ଥାନ ଦେଇ ପାରେ ନା। ଜୀବନର ଶେଷ ମୁହୂର୍ତ୍ତି ପର୍ଯ୍ୟନ୍ତ, ମୋର ସମସ୍ତ ଶକ୍ତି ଦେଇ ଅତି ଯତ୍ନରେ, ଏ ସିଂହାସନକୁ ମୁଁ ଅଟୁଟ କରି ରଖିବି। ତାପରେ, ଘୁମୁସର ସିଂହାସନ ଯଦି ଧ୍ୱଂସହୁଏ, ସେତେବେଳେ ସେ ଦୃଶ୍ୟର ହତଭାଗ୍ୟ ଦର୍ଶକରୂପେ, ଅନ୍ତତଃ ଧନଞ୍ଜୟ ଏଠାରେ ନଥିବ।

[ ଉଠି ଧୀରେ ଧୀରେ ପ୍ରସ୍ଥାନ କଲେ । ଶତ୍ରୁଞ୍ଜୟ ଓ ଗଙ୍ଗାଧର ମଧ୍ୟ ତାଙ୍କର ପଛେ ପଛେ ଚାଲିଗଲେ । ତାଙ୍କ ଯିବାର ଅବ୍ୟବହିତ ପରେ ବିପରୀତ ଦିଗରୁ ନୀଳକଣ୍ଠଙ୍କର ପ୍ରବେଶ । ]

ନୀଳ । ଠିକ୍ କହୁଛ ବୃଦ୍ଧ ! ତୁମର ଜୀବନ ଥିବା ପର୍ଯ୍ୟନ୍ତ ତୁମାର ନୀଳକଣ୍ଠ ମଧ୍ୟ ଘୁମୁସର ସିଂହାସନ ସ୍ପର୍ଶ କରିବାକୁ ଘୃଣା ବୋଧ କରେ । କିନ୍ତୁ ତୁମର ମୃତ୍ୟୁ ପରେ ?? ଦୁର୍ଦ୍ଧାନ୍ତ ନୀଳକଣ୍ଠ ସେତେବେଳେ ତୁମର ପ୍ରେତାତ୍ମାକୁ ଯେ ପଦାଘାତ କରିପାରେ, ଏ କଥା ପରପାରରେ ଥାଇ ଯେପରି ଭୁଲି ନ ଯାଅ, ବୃଦ୍ଧ ! ହତଭାଗ୍ୟ ରାଜା, ଆସନ୍ନମୃତ୍ୟୁର ପୂର୍ବ ମୁହୂର୍ତ୍ତିରେ ସିଂହାସନକୁ ନୀଳକଣ୍ଠଠାରୁ ଅଟୁଟ କରି ରଖିବାର କଳ୍ପନା ତୁମର, ଉନ୍ମାଦର ହାସ୍ୟାସ୍ପଦ ପ୍ରଳାପ ଛଡ଼ା ଆଉ କଣ ହୋଇ ପାରେ ? ( କହୁ କହୁ ଅନ୍ୟ ଦିଗରେ ପ୍ରସ୍ଥାନ କଲେ । )

---

## ତୃତୀୟ ଦୃଶ୍ୟ

[ ନୟାଗଡ଼ ରାଜପ୍ରାସାଦରେ ରାଜା ପୁରୁଷୋତ୍ତମଙ୍କର ପ୍ରମୋଦ ଭବନର ବହିର୍ଭାଗସ୍ଥିତ ବାରନ୍ଦାଟି ନିତାନ୍ତ ନିରାଡ଼ମ୍ବର । ତଥାପି ଆଭିଜାତ୍ୟର ଚିହ୍ନ ତହିଁରେ ସଂପୂର୍ଣ୍ଣରୂପେ ଫୁଟି ବାହାରୁଛି । ବାରନ୍ଦାଟିର ଉପରେ, ପ୍ରକାଣ୍ଡ ମୂଲ୍ୟବାନ ଗାଲିଚାଟିଏ ବିସ୍ତୃତ ହୋଇ ପଡ଼ିଛି । ତାହା ଉପରେ ରାଜୋଚିତ ଅଭ୍ୟର୍ଥନାର ସରଞ୍ଜାମ ସଜ୍ଜିତ ହୋଇ ରଖାଯାଇଛି । ସେହି ଗାଲିଚା ଉପରେ, ଉପାଧାନକୁ ଭରଦେଇ ନୟାଗଡ଼ ରାଜା ପୁରୁଷୋତ୍ତମ ଓ କବି ଉପେନ୍ଦ୍ର ଉଭୟେ ବସି ରହିଛନ୍ତି । ଉପେନ୍ଦ୍ରଙ୍କ ସମ୍ମୁଖରେ କେତେ ଖଣ୍ଡ ତାଳପତ୍ର ପୋଥି ଥିଲା ଓ ସେ ନିଜେ ଗୋଟିଏ ପୋଥି ହାତରେ ଧରିଥିଲେ । ସମୟ ପୂର୍ବାହ୍ନ । ]

ପୁରୁ । ମୁଁ ଆଶ୍ଚର୍ଯ୍ୟ ହେଉଛି କବି ! ଯେ, ଏତେ ଅଳ୍ପ ସମୟ ମଧ୍ୟରେ ତୁମେ କିପରି ତୁମର ବୈଦେହୀଶ ବିଳାସ ମହାକାବ୍ୟର ଶୃଙ୍ଖଳିତ ଛନ୍ଦ ରଚନା ସମାପ୍ତ କରି ଦେଇ ପାରିଲ । ଅଥଚ ସମସ୍ତ କାବ୍ୟଟା ପୁଣି ଆଦ୍ୟ ବ କାର ବିନ୍ୟାସରେ ଗଠିତ । କି ଅଦ୍ଭୁତ ପ୍ରତିଭା ତୁମର !

ଉପେ । (ହସି) ଏଥିଲାଗି କେବଳ ମୋର ପ୍ରତିଭାକୁ ପ୍ରଶଂସା କଲେ ଚଳିବ ନାହିଁ, ମହାରାଜା ! ଭଗବାନ ରାମଚନ୍ଦ୍ରଙ୍କର ଅପାର କରୁଣା, ଆଉ ଦେବୀ ବୀଣାପାଣିଙ୍କର ଆଶୀର୍ବାଦ, ମୋର ଏହି ଅସାଧ୍ୟ ସାଧନାର ପ୍ରଧାନ ପୃଷ୍ଠଭୂମିକା । ତାଙ୍କର ପ୍ରଚ୍ଛନ୍ନ ଅନୁକମ୍ପା ଫଳରେ, ଉପେନ୍ଦ୍ର ଏହି ମହାକାବ୍ୟକୁ ଏପରି ଅତୁଳନୀୟ ରୂପ ଦେବାକୁ ସମର୍ଥ ହୋଇ ପାରିଛି ।

ପ୍ରଭୁ । ତା' ମୁଁ ଜାଣେ, ଜେନାମଣି ! ରାମତାରକ ମନ୍ତ୍ରର ସିଦ୍ଧିଲାଭ ପରେ, ତୁମର ତୀକ୍ଷ୍ଣ ପ୍ରତିଭା ମୁଖର ହୋଇ ଉଠିଛି । କିନ୍ତୁ ତୁମର ଲେଖନୀ, ଏହି କେତେଦିନ ମଧ୍ୟରେ, ଅବଲୀଳାକ୍ରମେ ଯେ ଏତେଗୁଡ଼ିଏ ବିଚିତ୍ର ଛନ୍ଦ ରଚନା କରି ପାରିଛି, ଏହି ଏତିକ ଦେଖି ମୁଁ ଯେ ବିସ୍ମୟରେ ଅଭିଭୂତ ହୋଇ ପଡ଼ୁଛି, କବି ! ତୁମର ଏ ସାହିତ୍ୟ ଚର୍ଚ୍ଚା ଏକାବେଳକେ ଅସାଧାରଣ, ଅଲୌକିକ । ଜାଣ କବି, ମୁଁ ନିଜେ ଆଜିକୁ ଦୀର୍ଘ ଦୁଇ ବର୍ଷ ଧରି ଚେଷ୍ଟାର ମନୋନିବେଶ କରି ସୁଦ୍ଧା, ମୋର ଏକମାତ୍ର କାଲ୍ପନିକ କାବ୍ୟ "ଶୋଭାବତୀ"ର ରଚନାଟାକୁ ଏ ପର୍ଯ୍ୟନ୍ତ ଶେଷ କରି ପାରି ନାହିଁ ।

ଉପେ । ତା'ର କାରଣ ଅନ୍ୟ କିଛି ନୁହେଁ, ମାନ୍ଧାତା ! ଆପଣ ବୋଧହୁଏ ରାଜକାର୍ଯ୍ୟକୁ ଜୀବନର ପ୍ରଧାନ ଲକ୍ଷ୍ୟ ବୋଲି ମନେ କରିଛନ୍ତି । ଆଉ ସେହି ହେତୁରୁ, କାବ୍ୟ ରଚନାଟା ଆପଣଙ୍କର ଗୋଟାଏ ସୌଖିନ ସାହିତ୍ୟ ଚର୍ଚ୍ଚା । କିନ୍ତୁ ମୋର ଅବସ୍ଥା ତ ତାହା ନୁହେଁ । କାବ୍ୟ କବିତା ରଚନା ଯେ ମୋର ଜୀବନର ଏକମାତ୍ର ଅବଲମ୍ବନ । ସମଗ୍ର ଜଗତ୍ ଯେତେବେଳେ ଗଭୀର ନିଶୀଥିନୀର ଶାନ୍ତିମୟ ପ୍ରଲେପରେ ସୁଷୁପ୍ତ, ମୋର ଲେଖନୀ ହୁଏତ ସେତେବେଳେ ଅତିମାତ୍ରାରେ ଜୀବନ୍ତ ହୋଇ ଉଠେ । ସିଦ୍ଧଗୁମ୍ଫା ମଧ୍ୟରେ ମାତ୍ର ଦୁଇଛନ୍ଦ ରଚନା କରିସାରି, ମୋର ପ୍ରିୟ ଲୀଳାସ୍ଥଳୀ ମାଳସାହିକୁ ଫେରି ଆସି, କେତେ ବିନିଦ୍ର ରଜନୀ ଯେ ଏହି ମହାକାବ୍ୟ ପଛରେ ମୁଁ ବିନିଯୋଗ କରିଛି, ତାର କୌଣସି ହିସାବ ତ ମୁଁ ରଖି ନାହିଁ, ଭାଇ ! ମୋର ବିଶ୍ୱାସ—କାବ୍ୟ କବିତା ବ୍ୟତୀତ ମୋର ବୋଧହୁଏ ସ୍ୱତନ୍ତ୍ର ଅସ୍ତିତ୍ୱ କିଛି ନାହିଁ ।

ପ୍ରଭୁ । ଅଚ୍ଛା, ଜେନାମଣି ! ସମସ୍ତ ମହାକାବ୍ୟଟିକୁ, ତୁମେ କେତୋଟି ଛନ୍ଦରେ ସମାପ୍ତ କରିବ ବୋଲି ପରିକଳ୍ପନା କରିଛ ?

ଉପେ । ମୋର ସମଗ୍ର କାବ୍ୟଟି ଯେତେବେଳେ ବକାର ନିୟମରେ ରଚିତ ହେବାକୁ ଯାଉଛି, ସେହି ବକାର ନିୟମର ସାମଞ୍ଜସ୍ୟ ରକ୍ଷିବା ଉଦ୍ଦେଶ୍ୟରେ, ସମଗ୍ର ଛନ୍ଦର ସଂଖ୍ୟା ରହିବ ବାଉନ ଗୋଟି । ଆଉ ପ୍ରତ୍ୟେକ ଛନ୍ଦର ପଦସଂଖ୍ୟା ମଧ୍ୟ ସେହି ବକାର ନିୟମରେ ରହିବ ।

ଯେପରି ୩୨, ୪୨, ୬୨, ୯୨, ୨୨ । କେତେକ ଛନ୍ଦର ପଦସଂଖ୍ୟା ହେବ ବିଂଶ । ବିଶେଷତଃ ଊନବିଂଶ ଛନ୍ଦର ପଦସଂଖ୍ୟା ହୋଇଛି ୫୦, କିନ୍ତୁ ତାହା କାବ୍ୟରେ ବକାର ନିୟମରେ "ବୈଦେହିଶ" ଭାବରେ ଗଣନା କରାଯିବ ।

ସୂତ୍ର । କିନ୍ତୁ କବି, ତୁମର ଏହି କାବ୍ୟର ଗତି ଯେପରି ଅଗ୍ରସର ହେଉଛି, ସେଥିରୁ ମୋର ସନ୍ଦେହ ହୁଏ ଯେ, ସମଗ୍ର ରାମାୟଣର କଥାବସ୍ତୁ ଏହି ୫୨ ଛନ୍ଦ ମଧ୍ୟରେ ରହିପାରିବ ନାହିଁ ?

ଉପେ । ଆପଣଙ୍କର ଅନୁମାନ ଯଥାର୍ଥ । ରାବଣ ବଧ ପରେ, ରାମ ସୀତାଙ୍କର ଅଯୋଧ୍ୟା ପ୍ରତ୍ୟାଗମନ ଓ ରାମଚନ୍ଦ୍ରଙ୍କର ଅଭିଷେକ ମହୋତ୍ସବ, ଏହି ପର୍ଯ୍ୟନ୍ତ ମୋର ବୈଦେହିଶ ବିଳାସ କାବ୍ୟର କଥାବସ୍ତୁ । କାରଣ, ସେହି ଅଭିଷେକ ପରଠାରୁ, ସୀତାବନବାସ, ଲବକୁଶଙ୍କର ଅଭିଷେକ, ପ୍ରଭୃତି ବାକି ବିଷୟଗୁଡ଼ିକ ବିଭଙ୍ଗ ରସ । ଆଜି ସେହି ସବୁ ବିଷୟ, ଛନ୍ଦ ଗୀତରେ ବର୍ଣ୍ଣନା କରିବା ଦୋଷାବହ ବୋଲି ପଣ୍ଡିତମାନଙ୍କର ଅଭିମତ ।

ସୂତ୍ର । ମୋର ଧାରଣା ଥିଲା ଯେ, କାଳ୍ପନିକ କାବ୍ୟ ରଚନାରେ ତୁମେ ଅତି ଧୁରନ୍ଧର । ତାର ପ୍ରତ୍ୟକ୍ଷ ପ୍ରମାଣ ମଧ୍ୟ ମୁଁ ତୁମର କାବ୍ୟମାନଙ୍କରୁ ପାଇ ସାରିଛି । କିନ୍ତୁ ହଠାତ୍ ତୁମର ଏହି କାଳ୍ପନିକ କାବ୍ୟ ଧାରାର ଗତି ଯେ କାହିଁକି ପୌରାଣିକ ଦିଗକୁ ପରିବର୍ତ୍ତିତ ହେଲା, ତାହାର କାରଣ ତ ମୁଁ କିଛି ଖୋଜି ପାଉନାହିଁ ?

ଉପେ । ମୋର ଏହି ପୌରାଣିକ ମହାକାବ୍ୟ ରଚନାର ଅନ୍ତରାଳରେ ଏକ ମଧୁର ସ୍ମୃତି ନିହିତ ଅଛି । ବହୁଦିନ ପୂର୍ବେ, ପିତାମହ ଧନଞ୍ଜୟଙ୍କର ରଘୁନାଥ ବିଳାସ କାବ୍ୟଟିକୁ ପଢ଼ି, ତାଙ୍କ ସମ୍ମୁଖରେ, କାବ୍ୟଟି ତେତେ ଉଚ୍ଚକୋଟିର ନୁହେ ବୋଲି ମୁଁ ମନ୍ତବ୍ୟ ପ୍ରକାଶ କରିଥିଲି । ଆଜି ସେହି ମନ୍ତବ୍ୟର ପରେ, ରାମଚରିତକୁ ଅବଲମ୍ବନ କରି ଏକ ଅଭିନବ କାବ୍ୟ ରଚନା କରିବାର ପ୍ରତିଶ୍ରୁତି ମୁଁ ପିତାମହଙ୍କୁ ତେତେବେଳେ ଦେଇଥିଲି । ସୁତରାଂ ସେହି ପ୍ରତିଶ୍ରୁତି ରକ୍ଷା କରିବା ଉଦ୍ଦେଶ୍ୟରେ, ପିତାମହଙ୍କର ରଘୁନାଥ ବିଳାସ କାବ୍ୟର ପ୍ରତିଦ୍ୱନ୍ଦୀରୂପେ ମୋର ଏହି ମହାକାବ୍ୟର

ଛନ୍ତି । ମୋର ଇଚ୍ଛା, ଏହି କାବ୍ୟ ଯେପରି ମୋର ଶ୍ରେଷ୍ଠ ସୃଷ୍ଟିରୂପେ, ଏ ଦେଶର ସାହିତ୍ୟ ରାଜ୍ୟରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରି ପାରିବ ।

ପୁରୁ । କବି ହେବାର ସୌଭାଗ୍ୟ ମୋର ନାହିଁ, କୈନାମଣି ! କିନ୍ତୁ ଏ ଦେଶର ସର୍ବଶ୍ରେଷ୍ଠ କବି ଯେ ମୋର ଭଗିନୀପତି, ଏହି ଗୌରବରେ ମୁଁ ଆଜି ନିଜକୁ ଯଥେଷ୍ଟ ଭାଗ୍ୟବାନ ବୋଲି ମନେ କରେ । କିବା,ମୋତେ ଶୁଣାଇବା ଲାଗି, ତୁମେ ଯେତେବେଳେ ଭାବବିଭୋର ହୃଦୟରେ, ବୈଦେହୀଶ ବିଳାସ କାବ୍ୟର ରଚନା ଆବୃତ୍ତି କରିଯାଅ, ସେତେବେଳେ ତୁମର ସେ ଅପୂର୍ବ ତନ୍ମୟତା ଦର୍ଶନରେ ମୁଁ କେବଳ ମନ୍ତ୍ରମୁଗ୍ଧ ହୋଇ ଯାଏ । ଏପରି ଅମର କାବ୍ୟକଳାର ସ୍ରଷ୍ଟା ଏ ଦେଶରେ ଯେ ଜନ୍ମ ହୋଇ ପାରନ୍ତି, ଏ ବିଶ୍ୱାସ ମୁଁ ହଠାତ୍ କରି ପାରେ ନା ।

ଉପେ । ଆଜି ଏତିକିରେ ମୋତେ ବିଦାୟ ଦିଅନ୍ତୁ, ମାନ୍ଧାତା । ଅନ୍ୟ ଛାନ୍ଦଗୁଡ଼ିକର ରଚନା ସଂପୂର୍ଣ୍ଣ ହୋଇଗଲେ, ମୁଁ ପୁଣି ଆସି ଆପଣଙ୍କୁ ଶୁଣାଇ ଦେଇ ଯିବି ।

ପୁରୁ । ନୟାଗଡ଼ର ରାଜା ହିସାବରେ ମୋର ଆଜି ତୁମକୁ ଅନୁରୋଧ କରିବାର କିଛି ନାହିଁ, ଉପେନ୍ଦ୍ର ! କିନ୍ତୁ କସ୍ତୁରିକାଙ୍କର ହତଭାଗ୍ୟ ଭ୍ରାତା ହିସାବରେ ମୋର ଅନୁରୋଧ, ତୁମେ ନୟାଗଡ଼ ରାଜପ୍ରାସାଦରେ ମୋର ସ୍ନେହର ଅତିଥିରୂପେ କିଛି ଦିନ ଲାଗି ଅବସ୍ଥାନ କର, ଭାଇ ! ସେହି ନିର୍ଜନ ମାଳସାହିରେ ଆଉ କେତେଦିନ ଏହିପରି ପଡ଼ି ରହିଥିବ ? ଏ ଦୃଶ୍ୟକୁ ମୁଁ ଯେ ସହ୍ୟ କରିପାରୁ ନାହିଁ । ମୋତେ ବିଶ୍ୱାସ କର, ତୁମର କବି ଜୀବନର ସଫଳତା ଲାଗି, ପୁରୁଷୋତ୍ତମ, ନୟାଗଡ଼ ରାଜ୍ୟର ସମସ୍ତ ଐଶ୍ୱର୍ଯ୍ୟକୁ ତୁମରି ଚରଣରେ ଢାଳି ଦେବାକୁ ସର୍ବଦା ପ୍ରସ୍ତୁତ ।

ଉପେ । ମୋତେ କ୍ଷମା କରିବେ, ମାନ୍ଧାତା ! କବି ମୁଁ,—ଦୁନିଆଁର ସମସ୍ତ ଐଶ୍ୱର୍ଯ୍ୟଠାରୁ ମୋର କସ୍ତୁରିକାର ସ୍ମୃତି ମୋ ପକ୍ଷରେ ଅତି ଅଧିକ ମୂଲ୍ୟବାନ । ଆଉ ସେହି ମାଳସାହି, ମୋର ସେହି ଅପାଶୋରି ସ୍ମୃତିଧିଦ୍ଧାର ଗୋଟାଏ ପୁଣ୍ୟପୀଠ ମାତ୍ର । ତା ପର,—କବି ଉପେନ୍ଦ୍ର, ମୁକ୍ତ ପ୍ରକୃତିର ନଗ୍ନ ସୌନ୍ଦର୍ଯ୍ୟ ମଧ୍ୟରେ ଯେଉଁ ଆନନ୍ଦ ଉପଲବ୍ଧି କରେ, ରାଜପ୍ରାସାଦର

ଅବଶ୍ୟ କୃତ୍ତିମତା ସେ ଆନନ୍ଦ ତାକୁ ପରିବେଷଣ କରିପାରିବ ନାହିଁ । ତେଣୁ ମୋତେ ଆଉ ଅଯଥା ଅନୁରୋଧ କରିବେ ନାହିଁ, ରାଜାସାହେବ ! ଦୁନିଆଁର ଯେ କୌଣସି ସ୍ଥାନରେ ଥିଲେ ସୁଦ୍ଧା, ଉପେନ୍ଦ୍ର ଚିରଦିନ ଆପଣଙ୍କର ଭ୍ରାତୃସ୍ନେହରେ ଆବଦ୍ଧ ।

ଧୃତ୍ଳ । ମୁଁ ଜାଣେ ଉପେନ୍ଦ୍ର, ତୁମେ ମୋର ପ୍ରସ୍ତାବରେ ରାଜି ହେବ ନାହିଁ । ସୁତରାଂ, ଦେଶର ଶ୍ରେଷ୍ଠ ମନୀଷୀ ତୁମେ—ତୁମକୁ ଅତିଥିରୂପେ ପାଇ, ପରିଚର୍ଯ୍ୟା କରିବାର ସୌଭାଗ୍ୟ ମୋର ହେଲା ନାହିଁ, ଏ ଆକ୍ଷେପ ମୋର ଚିରଜୀବନ ରହିବ, କେଳାମଣି ! ଛାଡ଼, ଜାଲୁ ଯିବା ପୂର୍ବରୁ, ତୁମ କାବ୍ୟର ସେହି କାମ୍ୟକ ବନର ବର୍ଣ୍ଣନାଟି ମୁଁ ଆଉଥରେ ତୁମର କମକଣ୍ଠରୁ ଶୁଣିବାକୁ ଚାହେଁ । ଅହଲ୍ୟାଙ୍କର ଶୋଭା ଓ କାମ୍ୟକ ବନର ଦାସ୍ତି ବର୍ଣ୍ଣନାରେ ତୁମର ସେହି ଯବଯମକଟି ମୋତେ ମୁଗ୍ଧ କରି ଦେଇଛି । ଗାଅ କବି !

ଉପେ । (ପୋଥି ଦେଖି ଗାଇଲେ)

ହାସ୍ୟଳ କାମ୍ୟକ ବନେ ଥିବେ ଭ୍ରମିଯିବା,
ବୋଲି ବାନ୍ଧାଇଲେ ମୃଗ ନୟନ ବେଣୀ ଯୁବା ।
ବାଟେ ସେ ବନରେ ଅଦ୍ୟାଥିଲା ଦିବ୍ୟ ଶିଳା,
ଚରଣାଉଁ ରାମଚରଣ ଲାଗି ସେ ଅବଳା ।
ଶତ୍ରୁସ୍ୱ ହୋଇ ଅନାଇ ଛାଇବ ଚନ୍ଦ୍ରପଥ,
ବନିତାର ବଳାତାର ପ୍ରଭୁ ଏକାକୃତ ।
ଦାନତ୍ରିକ୍ତ ତୋଷଦାନୀ ରମଣୀ ଏ ଲେକେ,
ବନପ୍ରିୟୁ ତୋଷଦାନୀ ରମଣୀଠୁ ଲେକେ ।
ବିରାଜି ବର କନକ କଦମ୍ବ ଝୁଟରେ,
ବି ରାଜି ବର କନକ କଦମ୍ବ ରୁଚରେ ।
ବାସରେ ଅଛନ୍ତି ଶୋଭାତୁଙ୍ଗ ପୟୋଧରେ,
ବାସରେ ଅଛନ୍ତି ଶୋଭା ତୁଙ୍ଗ ପୟୋଧରେ ।
ବେଣୀ କେଶରେ ରଞ୍ଜନ ସିନ୍ଦୂର ଚଢାରେ,
ବେଣୀ କେଶରେ ରଞ୍ଜନ ସିନ୍ଦୂର ଚଢାରେ ।

ପୁରୁ । (ଆନନ୍ଦରେ) କବି, ମୁଁ ବୁଝିପାରୁ ନାହିଁ, କେଉଁ ଶକ୍ତି ବଳରେ ତୁମେ ଏପରି ମନୋରମ ବର୍ଣ୍ଣନାର ସମ୍ଭବ କରି ପାରିଛ । ଶ୍ରୋତା ମାତ୍ର ମୁଁ । ତୁମର ଅମିୟ କଣ୍ଠ ନିଃସୃତ ଏହି ସ୍ୱର ଝଙ୍କାର ଶୁଣି, ମୁଁ ଯେ ଏକାବେଳକେ ଭବୋନ୍ମତ୍ତ । ଜାଣେନା—ଏଥିଲାଗି କିପରି ଭାବରେ ମୁଁ ତୁମ୍ଭଙ୍କୁ ପୁରସ୍କୃତ କରିବି । କୁହ, କେନାମଣି ! ଏହି କେତୋଟି ମାତ୍ର ପଦର ରଚନା ଲାଗି କି ପୁରସ୍କାର ତୁମେ ମୋଠାରୁ ପ୍ରତ୍ୟାଶା କର ?

ଉପେ । ମାହାତା ! ପୁରସ୍କାରର ପ୍ରତ୍ୟାଶା ରଖି ମୁଁ ତ ଏ ପର୍ଯ୍ୟନ୍ତ କୌଣସି ରଚନାରେ ହସ୍ତକ୍ଷେପ କରି ନାହିଁ । ସୁତରାଂ ଅଳ୍ପ ପୁରସ୍କାର ଦାବୀ କରିବି କିପରି ? ଆପଣଙ୍କର ଏହି ଆନନ୍ଦବୋଧହିଁ ମୋର ଯଥେଷ୍ଟ ପୁରସ୍କାର । ତେବେ, ଆପଣ ଯଦି ନିତାନ୍ତ ମୋତେ ପୁରସ୍କୃତ କରିବାକୁ ଚାହାନ୍ତି, ମୋର ଗୋଟିଏ ସାମାନ୍ୟ ଅନୁରୋଧ ରକ୍ଷା କରି ପାରିବେ ?

ପୁରୁ । କୁହ କେନାମଣି, ଶୀଘ୍ର କୁହ, ଅନ୍ତତଃ ତୁମର ଗୋଟାଏ ଅନୁରୋଧ ରକ୍ଷା କରି ପାରିବାର ଗୌରବରୁ ମୋତେ ବଞ୍ଚିତ କରନା ଉପେନ୍ଦ୍ର !

ଉପେ । ମୋର ଅନୁରୋଧ, ଓଡ଼ଗାଁର ଶ୍ରୀ ରଘୁନାଥଙ୍କର ପ୍ରାଚୀନ ଭଗ୍ନ ମନ୍ଦିର ସ୍ଥାନରେ, ଆପଣ ନୂତନ ମନ୍ଦିରଟିଏ ପ୍ରତିଷ୍ଠା କରି ଦିଅନ୍ତୁ । ଆଉ, ମୋର ଜୀବନର ଆରାଧ୍ୟ ଦେବତା ଶ୍ରୀ ପ୍ରଭୁଦେବ ରଘୁନାଥଙ୍କର ନିତ୍ୟ ସେବା ପୂଜାର ଗୋଟାଏ ଚିରସ୍ଥାୟୀ ବନ୍ଦୋବସ୍ତ କରି ଦିଅନ୍ତୁ । ନୟାଗଡ଼ ରାଜାଙ୍କଠାରୁ ଏହି ଏତିକି ମାତ୍ର ପୁରସ୍କାର ମୁଁ ଭିକ୍ଷା କରୁଛି ।

ପୁରୁ । (କବିଙ୍କୁ ଆଲିଙ୍ଗନ କରି) ରାଜା ପୁରୁଷୋତ୍ତମ ତୁମର ଏହି ମହାନ୍ ଅନୁରୋଧକୁ ଅକ୍ଷରେ ଅକ୍ଷରେ ପାଳନ କରିବ, କବି ! ଯେତେ ଶୀଘ୍ର ସମ୍ଭବ, ତୁମର ଏ ଆଶା ପୂର୍ଣ୍ଣ ହେବ । (ପ୍ରହରୀର ପ୍ରବେଶ) କି ସମ୍ବାଦ ପ୍ରହରୀ ?

ପ୍ରହରୀ । କେନାମଣିଙ୍କର ଭୃତ୍ୟ ମାଧବ, କୌଣସି ସମ୍ବାଦ ଦେବା ଲାଗି ବାହାରେ ଅପେକ୍ଷା କରୁଛି ।

ପୁରୁ । ତାଙ୍କୁ ଏଠାକୁ ଆସିବାକୁ ଦିଅ, ଯାଅ । (ପ୍ରହରୀର ପ୍ରସ୍ଥାନ) ବୋଧହୁଏ, ତୁମର ଫେରିବାର ବିଳମ୍ବ ଦେଖି, ମାଧବ ମାଳସାହିରୁ, ତୁମକୁ ସଙ୍ଗରେ ନେଇଯିବା ଲାଗି ଆସିଛି ।

ଉପେ । ମାଧବ ତ ମାଳସାହିରେ ନ ଥିଲା । ମାଳବିକାଙ୍କ ନିକଟକୁ ଗୋଟାଏ ସମ୍ବାଦ ଦେଇ, ମୁଁ ତାକୁ କୁଲାଡ଼ ଦୁର୍ଗକୁ ପଠାଇଥିଲି ।

[ ଏହି ସମୟରେ ମାଧବ କାନ୍ଦି କାନ୍ଦି ପ୍ରବେଶ କଲା । ]

କି ସମ୍ବାଦ, ମାଧବ ?

ମାଧବ । (କାନ୍ଦି କାନ୍ଦି) ଛୋଟମଣି ସାଆନ୍ତେ, ସେ ଦିନ ମୁଁ ଯାହା ଭୟ କରୁଥିଲି, ତାହାହିଁ ଶେଷରେ ଘଟିଲା । ମୁଁ ଏତେ ବାରଣ କଲି, କିନ୍ତୁ ତଥାପି, ମୋ କଥାରେ କାନ ଦେଲେ ନାହିଁ । ଶେଷରେ ଏଡ଼େ ବଡ଼ ସର୍ବନାଶଟାଏ ହେଲା ସିନା !

ଉପେ । କଣ ହେଲା ?

ମାଧବ । କଣ କହିବି, ସା'ନ୍ତେ ? ମା ସା'ନ୍ତାଣୀ ଯେ ଆଜି ଏ ସଂସାରରେ ନାହାନ୍ତି ! ପଲଙ୍କ ଉପରେ ବସିଥିଲେ; ମୋର ଏହି ସମ୍ବାଦ ଶୁଣିବା ମାତ୍ରକେ ସେଇଠାରେ "ହାୟ ବିଧାତା" କହି ଗଡ଼ି ପଡ଼ିଲେ । ସେଠାରୁ ସେ ଆଉ ଉଠି ନାହାନ୍ତି । ସାମାନ୍ୟ ମିଛ କଥାଟା ଯୋଗୁଁ କେଡ଼େ ବଡ଼ ସର୍ବନାଶଟାଏ ଘଟିଗଲା, ସା'ନ୍ତେ ।

ଉପେ । (ହାତରୁ ପୋଥି ଖସି ପଡ଼ିଲା) ଗଜଗମନା ମାଳବିକା । ତୁମେ ସଧ ଏତେ ଚଞ୍ଚଳ ବିଦାୟ ନେଇ ଚାଲିଗଲ ? କିନ୍ତୁ ଏହା ତ ମୁଁ ଆଶା କରି ନ ଥିଲି ! ମୋର ପ୍ରେମ ପରୀକ୍ଷାରେ, ତୁମେ ଏତେ ଅଦ୍ଭୁତ ଭାବରେ କୃତକାର୍ଯ୍ୟ ହେବ ବୋଲି, ମୋର ଯେ ଆଦୌ ଧାରଣା ନ ଥିଲା । ଓଃ । (ମୁଣ୍ଡରେ ହାତ ଦେଇ ବସିଲେ ।)

ପୁରୁ । ମାଧବ, ବ୍ୟାପାର କଣ ? ମୁଁ ଯେ କିଛି ବୁଝିପାରୁ ନାହିଁ ? ମାଳବିକାଙ୍କର ହଠାତ୍ ମୃତ୍ୟୁର କାରଣ କଅଣ ?

ମାଧବ । ମହାରାଜାଙ୍କର ଚିଠାଉ କାଅନ୍ତୁ, ମଣିମା ! (ଚିଠାଉ ଦେଲା) ସେଥିରୁ ସବୁ ବୁଝି ପାରିବେ । ମା ସା'ନ୍ତାଣୀଙ୍କର ମନ ପରୀକ୍ଷା କରିବାକୁ,

କେଳାମଣି ଗୋଟାଏ ମିଛ ଖବର, ମୋ ହାତରେ ପଠାଇଥିଲେ । ମୁଁ ବହୁତ ବାରଣ କରିଥିଲି, ମଣିମା ! କିନ୍ତୁ ମୋର କଥା ରହିଲା ନାହିଁ । ସେହି ମିଛ ଖବର ଶୁଣି, ମା ପାଟରାଣୀ ଝାସ ପଡ଼ିଲେ ।

ପୁରୁ । (ଚିଠାଟି ନେଇ ପଢ଼ିଲେ, ପଢ଼ିସାରି) କେଳାମଣି ? କବିର ଭାବପ୍ରବଣତା ନେଇ, ରାଜକେମା ମାଳବିକାଙ୍କ ପ୍ରେମ ପରୀକ୍ଷା କି ଅନ୍ୟ ଉପାୟରେ ସମ୍ଭବ ହୋଇ ପାରି ନ ଥାନ୍ତା ?

ଉପେ । (ଜଡ଼ିତ କଣ୍ଠରେ)କଣ କହିବି, ଭାଇ ? ବିଦୁଷୀ ମାଳବିକାଙ୍କର ଅକପଟ ପ୍ରେମକୁ ସନ୍ଦେହ କରିବାର ଯେ ଏହି ଶୋଚନୀୟ ପରିଣତି ଘଟିବ, ଏହା ମୋର କଳ୍ପନାରେ ସୁଦ୍ଧା ସ୍ଥାନ ପାଇ ନ ଥିଲା । ହତଭାଗ୍ୟ ମୁଁ—ମୋର ପାପର ପ୍ରାୟଶ୍ଚିତ୍ତ କରିବାକୁ ମୋତେ ଅବସର ସୁଦ୍ଧା ଯେ ମିଳିଲା ନାହିଁ ।

ପୁରୁ । ଆଉ ବୃଥା ଅନୁଶୋଚନା କରି କି ଲାଭ କେଳାମଣି ? ମୋର ଅନୁରୋଧ, ତୁମେ ଯେତେ ଶୀଘ୍ର ପାର, କୁଲାଡ଼ ଦୁର୍ଗକୁ ଫେରିଯାଅ । ବୃଦ୍ଧ ମହାରାଜ ଧନଞ୍ଜୟ, ତୁମ ଲାଗି ଅତ୍ୟନ୍ତ ବ୍ୟାକୁଳ । ଏହି ନିଅ ତାଙ୍କର ପତ୍ର । (ଚିଠାଟି ଦେଲେ ।)

ଉପେ । (ନୀରବରେ ପତ୍ର ପାଠ କଲେ ।)

ମାଧବ । ସାଆନ୍ତେ, ଆମ ରାଜ୍ୟକୁ ଫେରି ଚାଲନ୍ତୁ, କି ଦୁର୍ଯୋଗରେ କୁଲାଡ଼ ଗଡ଼ରୁ ବାହାରିଥିଲେ କେଜାଣି, ତାରି ବିଷମୟ ଫଳ ଆଜି ଭୋଗ କରିବାକୁ ପଡୁଛି । ତେଣେ, ଦୁର୍ଗରେ ଯାହା ଖବର ଶୁଣିଲି, ସେଥିରେ ମୋର ମନ ଏଠାରେ ଆଦୌ ଥୟ ଧରୁ ନାହିଁ । ମହାରାଜା ନଜେ ଖୋଲି ବାଉଳଙ୍କ ପରି ହେଉଛନ୍ତି । ଆଃ ରାଜା ମଧ୍ୟ ଆମ ରାଜ୍ୟଛାଡି କୁଆଡ଼କୁ ଚାଲି ଗଲେଣି !

ଉପେ । (ନୀରବ ରହି କେବଳ ଏକ ଦୃଷ୍ଟିରେ ଅନ୍ୟମନସ୍କ ଭାବେ ଉପରକୁ ଅନାଇ ରହିଲେ ।)

ପୁରୁ । ଉପେନ୍ଦ୍ର—ଭାଇ ମୋର—ମହାରାଜାଙ୍କର ପତ୍ରରୁ ମନେ ହୁଏ ଯେ, ସେ ତୁମର ଅଭାବ ମର୍ମେ ମର୍ମେ ଅନୁଭବ କରୁଛନ୍ତି । ଅନ୍ତତଃ,

ତାଙ୍କର ଜରାଜୀର୍ଣ୍ଣ ପ୍ରାଣଟାକୁ ଟିକିଏ ଶାନ୍ତି ଦେବା ଲାଗି, ତୁମର ଶୀଘ୍ର ତୁଳଙ୍ଗ ଫେରିଯିବା ନିତାନ୍ତ ପ୍ରୟୋଜନ ।

ଉପେ । (ପୂର୍ବବତ୍ ନୀରବ !)

ପୁରୁ । ନୀରବ ରହିଲ ଯେ ? କଣ ଭାବୁଛ ଜେନାମଣି ?

ଉପେ । (ଦୀର୍ଘ ଶ୍ୱାସ ତ୍ୟାଗ କରି) କହୁନା !—ଭାବୁଛି, କେତେ ଚଞ୍ଚଳ ଉପେନ୍ଦ୍ର, ସମସ୍ତ ସାଂସାରିକ ବନ୍ଧନରୁ ମୁକ୍ତିଲାଭ କଲା ! କସ୍ତୁରିକା ଯାଇଥିଲେ, ତା ପରେ ଅଭିଜ୍ଞ ମାଳବିକା ମଧ୍ୟ ଗଲେ । ଏହା କଣ ଗୁରୁଦେବ ରଘୁନାଥଙ୍କର ଅଭିପ୍ରେତ ?

ପୁରୁ । ଅନର୍ଥକ ତୁମର ଗୁରୁଦେବଙ୍କର ଦୋଷ କାହିଁକି ଦେଉଛ, ଉପେନ୍ଦ୍ର ? ଏ ଅଭିଶାପକୁ ଯେ ନିଜେ ତୁମେ ବରଣ କରି ଆଣିଛ । ଏହା ତୁମର କବି ଭାଗ୍ୟର ବିଡ଼ମ୍ବନା ।

ଉପେ । ତେବେ ଏହି ଅପ୍ରକୃତ ଦୋଷର କି କୌଣସି ପ୍ରାୟଶ୍ଚିତ୍ତ ନାହିଁ ? ମୋର ଜୀବନର ଏତେ ବଡ଼ ଗୋଟାଏ ପ୍ରମାଦର ପ୍ରତିକାର ନ କଲେ, ପ୍ରେୟସୀ ମାଳବିକା ଯେ ପରପାରରେ ଥାଇ ସୁଦ୍ଧା ଶାନ୍ତିଲାଭ କରି ପାରିବେ ନାହିଁ ?

ପୁରୁ । କି ପ୍ରତିକାର ତୁମେ କରି ପାରିବ, ଜେନାମଣି ? ରାଜଜେମା ମାଳବିକାଙ୍କୁ ତ ତୁମେ ଆଉ ଫେରାଇ ଆଣି ପାରିବ ନାହିଁ !!

ଉପେ । ତା' ସତ ! କିନ୍ତୁ ଆଜୀବନ ବ୍ରହ୍ମଚୁର୍ଯ୍ୟ ଜୀବନ ଯାପନ କରି, ତାଙ୍କର ଅମଳିନ ମୂର୍ତ୍ତିକୁ ଚିରଦିନ ଲାଗି ମୋର ପବିତ୍ର ସମ୍ବଳ କରି ରଖି ପାରିବି ତ ?

ପୁରୁ । ଏ ଯେ କେବଳ କବିର କଳ୍ପନା ।

ଉପେ । ଠିକ୍ କହୁଛନ୍ତି, ମାନ୍ଧାତା ! ଏହି କଳ୍ପନାହିଁ ଆଜିଠାରୁ ସଂସାର ବିରାଗୀ ଉପେନ୍ଦ୍ରର ଏକମାତ୍ର ଜୀବନ ସଙ୍ଗିନୀ ! ନିୟତିର କୁଟିଳ ଦୃଷ୍ଟି ଯେପରି ମୋର ପ୍ରାଣାଧିକା କସ୍ତୁରିକାଙ୍କୁ ହଠାତ୍ ଦିନେ ମୋ ନିକଟରୁ ଟାଣି ନେଇଗଲା, ଠିକ୍ ସେହିପରି ଅଭିଜ୍ଞ ମାଳବିକାଙ୍କୁ ମଧ୍ୟ ଅତି ଅସମୟରେ

ମୋଠାରୁ ଛଡ଼େଇ ନେଇ ନେଲ । କିନ୍ତୁ ମୋର କଳ୍ପନାରାଣୀଙ୍କୁ ତ କେହି ଆଉ ମୋଠାରୁ ନେଇଯାଇ ପାରିବ ନାହିଁ । କଳ୍ପନା—କଳ୍ପନାହିଁ ଆଜଠାରୁ ମୋର ଜୀବନର ସର୍ବସ୍ୱ । କଳ୍ପନାହିଁ ମୋର ପ୍ରେୟସୀ । ମାଳବରାଜାଙ୍କର ଅମୂଲ୍ୟ ଦାନରେ ଏହି ଏତିକି ମାତ୍ର ଆଜି ମୋର ସର୍ବଶ୍ରେଷ୍ଠ ସାନ୍ତ୍ୱନା !

ପୁରୁ । କିନ୍ତୁ ତୁମେ ଶୀଘ୍ର ଘୁମୁସର ଫେରିଯାଅ,କବି ! ମୋର ମନେହୁଏ, ବୃଦ୍ଧ ଧନଞ୍ଜୟଙ୍କୁ ଏକମାତ୍ର ତୁମେ ଏ ଦୁଃଖରେ ସାନ୍ତ୍ୱନା ଦେଇ ପାରିବ ।

ଉପେ । ମୁଁ କୁଳାଡ଼ ଦୁର୍ଗକୁ ଫେରିଯିବି ନିଶ୍ଚୟ । କିନ୍ତୁ ବର୍ତ୍ତମାନ ନୁହେଁ, ମୋର ଏହି ମହାକାବ୍ୟ ବୈଦେହୀଶ ବିଳାସର ପରିସମାପ୍ତି ପରେ । ପିତାମହ ଧନଞ୍ଜୟଙ୍କର ଚରଣ ବନ୍ଦନା କରିବାର ଆକାଂକ୍ଷା ମୋର ଅଛି, ରାଜାସାହେବ ! ମୋର ବିଶ୍ୱାସ,ମୋର କଳ୍ପନା ରାଣୀଙ୍କର ଅବଦାନ ଏହି ମହାକାବ୍ୟହିଁ ବୃଦ୍ଧ ମହାରାଜାଙ୍କର ଶୋକସନ୍ତପ୍ତ ପ୍ରାଣରେ ସାନ୍ତ୍ୱନା ବାରି ସେଚନ କରି ପାରିବ । ବର୍ତ୍ତମାନ ମୋତେ ବିଦାୟ ଦିଅନ୍ତୁ,ରାଜାସାହେବ !

ପୁରୁ । ( ଉଠି ଠିଆ ହୋଇ ) କିନ୍ତୁ ତୁମର ଏ ମହାକାବ୍ୟର ପରିସମାପ୍ତି କ'ଣ ଖୁବ୍ ଶୀଘ୍ର ହୋଇ ପାରିବ,କବି ? ତୁମର ମାନସିକ ଅବସ୍ଥା ଯେ ବର୍ତ୍ତମାନ ବିକ୍ଷିପ୍ତ ।

ଉପେ । ସେଥିପାଇଁ କାଲି ପ୍ରଭାତରୁ ମୁଁ ମାଳପାହି ତ୍ୟାଗକରି ଓଡ଼ଗାଁ ଯାତ୍ରା କରିବି । ମୋର ବିଶ୍ୱାସ, ମୋର ଗୁରୁଦେବ ଶ୍ରୀ ରଘୁନାଥଙ୍କ ମନ୍ଦିରରେ ମୁଁ ମୋର ମାନସିକ ଶାନ୍ତିକୁ ଫେରାଇ ଆଣି ପାରିବି । ଆଉ ବୋଧହୁଏ, ମୋର ମହାକାବ୍ୟର ଅବଶିଷ୍ଟ ରଚନା, ମୁଁ ସେହି ରଘୁନାଥ ମନ୍ଦିରରେ ବସି ନିର୍ବିଘ୍ନରେ, ଅଳ୍ପସମୟ ମଧ୍ୟରେ ଶେଷ କରି ପାରିବି । ସଂସାର ବନ୍ଧନମୁକ୍ତ ହତଭାଗ୍ୟ କେନାମକୀର ଓଡ଼ଗାଁର ରଘୁନାଥ ମନ୍ଦିର ଯେ ଆଜି ଏକମାତ୍ର ଆଶ୍ରୟ ସ୍ଥଳ !

[ପୋଥିଗୁଡ଼ିକ ଧରି ଧୀରେ ଧୀରେ ଏକ ଦିଗରେ ପ୍ରସ୍ଥାନ କଲେ । ମାଧବ ତାଙ୍କ ସଙ୍ଗେ ସଙ୍ଗେ ଗଲା । ରାଜା ପୁରୁଷୋତ୍ତମ ସେଠାରେ ଠିଆ ହୋଇ, ଏକଦୃଷ୍ଟିରେ ଉପେନ୍ଦ୍ରଙ୍କ ଗନ୍ତବ୍ୟପଥକୁ ଚାହିଁ ରହିଲେ । ]

---

# ଚତୁର୍ଥ ଦୃଶ୍ୟ

[ ତୃତୀୟ ଅଙ୍କର ଦ୍ୱିତୀୟ ଦୃଶ୍ୟ ବର୍ଣ୍ଣିତ ଧସ୍ରକୋଟ ରାଜାଙ୍କର ପ୍ରମୋଦ କକ୍ଷ । ସମୟ—ସନ୍ଧ୍ୟା । କକ୍ଷଟିରେ ପୂର୍ବପରି ସଜ୍ଜିତ ମୂଲ୍ୟବାନ ଆସନଗୁଡ଼ିଏ ରହିଛି । ଗୋଟିଏ ଆସନରେ ବସି ରହିଛନ୍ତି କୁମାର ଘନଭଞ୍ଜ । ଅନ୍ୟ ଗୋଟିଏ ଆସନରେ କୁମାରଙ୍କ ନିକଟରେ ବସିଛନ୍ତି—ରାଜାଙ୍କର ପାର୍ଶ୍ୱଚର ନିରଞ୍ଜନ । ରାଜା ରାମଚନ୍ଦ୍ରସିଂହ ଦେବଙ୍କର ଆସନ ଓ ଅନ୍ୟାନ୍ୟ ଆସନ ଗୁଡ଼ିକ ଶୂନ୍ୟ । ଧସ୍ରକୋଟ ନର୍ତ୍ତକୀ କେବଳ କକ୍ଷ ମଧ୍ୟରେ ନିଜର ନୃତ୍ୟ ଦେଖାଉଥିଲେ । ]

ଘନ । (କିଛି ସମୟ ଦକ୍ଷିଣୀ ନୃତ୍ୟ ଚାଲିଲା ପରେ) ଏ ନୃତ୍ୟ ବନ୍ଦ କର, ନିରଞ୍ଜନ ! (ନୃତ୍ୟ ବନ୍ଦହେଲା) ସଙ୍ଗୀତ ବିହୀନ ନୃତ୍ୟ, ଆନନ୍ଦ ପରିବର୍ତ୍ତରେ ଆଣିଦିଏ ବିରକ୍ତି । ମୁଁ ଅନ୍ତତଃ ଏ ନୃତ୍ୟର ପକ୍ଷପାତୀ ନୁହେଁ ।

ନିର । ନର୍ତ୍ତକୀ—ଚନ୍ଦ ଗାର ତ ଗୋଟିଏ ରସମୟ ସଙ୍ଗୀତ ଗାଇ, ରାଜକୁମାରଙ୍କର ସନ୍ତୋଷ ବିଧାନ କର ।

ଘନ । କୌଣସି ରସମୟ ସଙ୍ଗୀତର ମୋର ପ୍ରୟୋଜନ ନାହିଁ, ନର୍ତ୍ତକୀ ! ଦୁମୁସରର କବିଶ୍ରେଷ୍ଠ ଉପେନ୍ଦ୍ରଙ୍କର କିଛି କାବ୍ୟ ସଙ୍ଗୀତର ଚର୍ଚ୍ଚା ତୁମେ କରି ପାରିବ ?

ନର୍ତ୍ତକୀ । ନିଶ୍ଚୟ ମଣିମା ! କବିଙ୍କର ରସିକହାରାବଳୀ କାବ୍ୟର ବର୍ଷାନୁଚନ୍ଦ୍ରା ଛନ୍ଦ ଶୁଣନ୍ତୁ ।

(ଗାଇଲେ)

ଶ୍ରବଣେ ଘନ ଘନ ଟର୍ଜ୍ଜନ ଘନ ଘନ
ଶୁଣୁଁ କେତେକ ଥନ ଥନ,
କହେ ସୁମନ ମନ ମୋହ୍ମି ଜୀବନ ବନ-
ଜାଗୀ ହେବନି ଛନ ଛନ,
ହେ ଜଳଧର,
କେହୁ ନେବ ଦୁର୍ଦ୍ଦିନ ଦନ,
ସେ ଯେ ମୋର କଧନ ଧନ;
ହୋଇବ ଅନ ଅନ- ଭବ୍ରୁ ଭୁବନବାନ
ସେ କି କଷ୍ଟ ଭଜନ ଜନ । ୧ ।

ଶତପ ଶର ଶର ପ୍ରହାର ବର ବର-
ଷୀକ କରିବ ଜରଜର,
ଧ୍ୱାନ ଅନ୍ଧାର ଦ୍ୱାର- ମଣି ଆଗାର ଗାର
ଗଣି ଗୁଣିବ ଦରଦର
ହେ ଜଳଧର,
ଚଞ୍ଚଳା ଚଳା ଡରଡର
ଶୁଣୁଁ ହୋଇବ ଥରଥର,
ମଦନ କର କର- ବାଳ କି ବାରବାର
ଝଂପକେ ଯେନି ବାରବାର । ୨ ।

[ ଗାଇସାରି ନର୍ତ୍ତକୀ ଏକ ପାର୍ଶ୍ୱରେ ଠିଆ ହୋଇ ରହିଲେ । ]

ଧନ । (ଆନନ୍ଦରେ) ଚମତ୍କାର, ଏଥିରେ ମୁଁଣି ପ୍ରାକ୍ତାନୁପ୍ରାସନ୍ତି ଅତି ଉପଭୋଗ୍ୟର ବସ୍ତୁ ହୋଇ ଉଠିଛି । ଧନ୍ୟ ଘୁମୁସର ଗୌରବ ଉପେନ୍ଦ୍ର !

ନର । ରାଜକୁମାର, ମୁଁ ଦେଖୁଛି, ଉପେନ୍ଦ୍ରଙ୍କର କାବ୍ୟ କବିତା ପ୍ରତି ଆପଣ ବିଶେଷ ଅନୁରକ୍ତ ।

ଘନ । କେବଳ ମୁଁ ନୁହେଁ ନରଞ୍ଜନ ! ଏ ଦେଶର ଅବାଳବୃଦ୍ଧବନିତା ସମସ୍ତେ ଯେ ଆଜି ଉପେନ୍ଦ୍ରଙ୍କର କବିତାର ମୋହିନୀ ମାୟାରେ ମୁଗ୍ଧ । ଏହି ଗୌରବମୟ ମୂର୍ତ୍ତିର ଉଦୟ ଦେଖୁଛନ୍ତି, ଧୁମୁସରର ନିର୍ବାସିତ ରାଜକୁମାର ମୁଁ—ମୋ ହୃଦୟରେ ଯେ କି ଆନନ୍ଦର ଉଚ୍ଛ୍ୱାସ ବହିଯାଏ, ତାହା ତୁମେ ବୁଝି ପାରିବ ନାହିଁ । ସେ ଯେ ମୋର ଭ୍ରାତୃଷ୍ପୁତ୍ର । ରକ୍ତର ସମ୍ପର୍କ । ଦୁନିଆଁର ଯେତେ ପ୍ରାନ୍ତରେ ଥିଲେ ସୁଦ୍ଧା ରକ୍ତର ଏହି ଅନୁଭୂତିକୁ ମୁଁ ଯେ କଦାପି ଭୁଲି ପାରିବି ନାହିଁ; ନରଞ୍ଜନ !

[ଠିକ୍ ଏତିକି କହି ସାରିଲାବେଳକୁ ଧରାକୋଟ ରାଜା ରାମଚନ୍ଦ୍ର, ହସି ହସି ସେହି କକ୍ଷକୁ ପ୍ରବେଶ କଲେ । ତାଙ୍କୁ ଦେଖି, ସମସ୍ତେ ଆସନ ତ୍ୟାଗ କରି ଅଭିନନ୍ଦନ କଲେ ।]

ରାମ । କୁମାର ଘନଭଞ୍ଜ ! ମୁଁ ଜଣେ ଅପୂର୍ବ ଅତିଥିଙ୍କୁ ଆଜି ମୋର ସଙ୍ଗରେ ଏଠାକୁ ନେଇ ଆସିଛି । ତାଙ୍କୁ ଚିହ୍ନିପାରିବ ? ଦେଖିଲ ?

[ଏତିକି କହିବା ସଙ୍ଗେ ସଙ୍ଗେ ଧାରାକୋଟ ଗୁପ୍ତଚର, ଥାଟରାଜ ଗୋବନ୍ଦ ଭଞ୍ଜଙ୍କ ସଙ୍ଗରେ ନେଇ ପ୍ରବେଶ କଲେ । ]

ଘନ । (ଗୋବନ୍ଦଙ୍କୁ ଦେଖି) ପିତା, ପିତା ! ( ଚରଣ ସ୍ପର୍ଶକରି ) ଆପଣ ଏଠାରେ ? କି ଉଦ୍ଦେଶ୍ୟରେ ଧରାକୋଟକୁ ଆଗମନ କରିଛନ୍ତି ? ନିର୍ବାସିତ ଘନଭଞ୍ଜର ଦୁଃଖ ସୌଭାଗ୍ୟ ଦେଖିବାକୁ ନୁହେଁ ତ ?

ଗୋବନ୍ଦ । କୁମାର ! ଗୋବନ୍ଦଭଞ୍ଜକୁ ଆଉ ଲଜ୍ଜା ଦିଅନା ବତ୍ସ !

ଘନ । ଲଜ୍ଜା ! ଧୁମୁସର ରାଜ୍ୟର ଥାଟରାଜାଙ୍କର ପୁଣି ଲଜ୍ଜା କାହିଁକି ? କ୍ୟାୟୀ ବନ୍ଧୁରର ଛଳନା ରେ ଯେଉଁ ଥାଟରାଜା ତାଙ୍କର ନିରୀହ ନିର୍ଦ୍ଦୋଷ ସୁପୁତ୍ରକୁ ପ୍ରାଣଦଣ୍ଡର ଆଦେଶ ଦେଇପାରନ୍ତି; ତାଙ୍କର ପୁଣି ଲଜ୍ଜା କାହିଁକି ? ଏ ଯେ ତାଙ୍କ ରାଜତ୍ୱର ଗୌରବ ।

ଗୋବନ୍ଦ । କୁମାର, ମୋତେ କ୍ଷମା କର । ମୁଁ ଆଜି କେବଳ ଲଜ୍ଜିତ ନୁହେଁ, ଯଥାର୍ଥରେ ଅନୁତପ୍ତ । ସେହି ଅନୁତାପର ଜ୍ୱାଳାକୁ ବକ୍ଷରେ

ଧାରଣ କରି, ଗୋବିନ୍ଦଭଞ୍ଜ ଅଛି ଅର୍ଦ୍ଧୋନ୍ମାଦ । ଆଠଗଡ଼ କାର ପଦବୀ ଉପରେ ପଦାଘାତ କରି, ସେ ଅଜି ତାର ସର୍ବସ୍ୱ ବନମଯୂରେ, ଗୃହେ ମାତ୍ର ଶାନ୍ତି । ଆଉ ସେହି ଶାନ୍ତିର ଅନ୍ୱେଷଣରେ ସେ ଅଜି ତୁମର ହୃଦୟ ନିକଟରେ ଆଶ୍ରୟପ୍ରାର୍ଥୀ । ପୁତ୍ର ! ମୋର ଏ ଆଶା କି ପୂର୍ଣ୍ଣ ହେବନାହିଁ ?

ଧନ । ମୁଁ ଯେ ଏଥିରୁ କିଛି ବୁଝିପାରୁ ନାହିଁ, ରାଜାସାହେବ !

ରାମ । କୁମାର—ତୁମପ୍ରତି ଅନ୍ୟାୟ ବିଗ୍ରହ କରିଥିବା ଯୋଗୁଁ, ବନ୍ଧୁ ଗୋବିନ୍ଦଭଞ୍ଜ ଅଜି ନିଜ ଉପରେ ଯଥେଷ୍ଟ ପ୍ରତିଶୋଧ ନେଇ ସାରିଲେଣି । ସେ ଅଜି ଘୁମୁସରର ଆଠଗଡ଼ା ନୃପତି । କେବଳ ତୁମରି ବିଚ୍ଛେଦ ସହି ନ ପାରି, ଘୁମୁସର ରାଜ୍ୟର ସମସ୍ତ ଦାୟିତ୍ୱ ମହାରାଜ ଧନଞ୍ଜୟଙ୍କୁ ଫେରାଇ ଦେଇ, ସେ ସ୍ୱେଚ୍ଛାରେ ଏ ନିର୍ବାସନ ବରଣ କରିଛନ୍ତି ।

ଧନ । ଆଶ୍ଚର୍ଯ୍ୟ ! ଅପଣ ଅଜି ସ୍ୱେଚ୍ଛାରେ ଘୁମୁସର ତ୍ୟାଗ କରି ଅସିଛନ୍ତି, କେବଳ ମୋରି ଲାଗି ?

ରାମ । ହଁ କୁମାର—ଏହା ନିରାଟ ସତ୍ୟ । ତୁମରି ଅନୁସନ୍ଧାନରେ ଆଜିକୁ ଦଶଦିନ ହେବ, ସେ ଆରମ୍ଭ କରିଥିଲେ ଏକ ଅନନ୍ତିତ ଅଭିଯାନ । ଧରାକୋଟ ରାଜ୍ୟର ଏହି ଗୁପ୍ତଚର, ରାଜ୍ୟ ମଧ୍ୟରେ ତାଙ୍କ ଗତିବିଧିକୁ ସନ୍ଦେହ କରି, ତାଙ୍କୁ ମୋ ନିକଟରେ ଅଜି ଅଣି ଉପସ୍ଥାପିତ କରିଛନ୍ତି । ନୋଚେତ୍ ମୋର ପ୍ରମୋଦ କକ୍ଷରେ, ନିର୍ବାସିତ ପିତା ପୁତ୍ରଙ୍କର ମିଳନ ଏତେ ସହଜ ହୋଇ ପାରି ନ ଥାନ୍ତା ।

ଧନ । ଏଥି ଲାଗି ମୋର ଆନ୍ତରିକ କୃତଜ୍ଞତା ଗ୍ରହଣ କରନ୍ତୁ, ରାଜାସାହେବ !

ରାମ । ତୁମର ଏ କୃତଜ୍ଞତା ମୋର ଯଥାର୍ଥ ପ୍ରାପ୍ୟ ନୁହେଁ, କୁମାର ! ଯେଉଁ ଗୋବିନ୍ଦଭଞ୍ଜ କେବଳ ନିଜର ନିର୍ବାସିତ ପୁତ୍ର ଲାଗି, ଗୋଟାଏ ସିଂହାସନର ପ୍ରଲୋଭନକୁ ଦୂରରୁ ଫିଙ୍ଗିଦେଇ ପାରିଛନ୍ତି, ଏ କୃତଜ୍ଞତା ବରଂ ତାଙ୍କଠାରେ ପ୍ରକାଶ କର, ଧନଞ୍ଜୟ ! ଏ ଯୁଗରେ ଏପରି ତ୍ୟାଗର ଦୃଷ୍ଟାନ୍ତ ଯେ ବିରଳ ।

ଘନ । ( ଗୋବିନ୍ଦଙ୍କ ପାଦଧରି ) ପିତା, କ୍ଷମା କରନ୍ତୁ । ଅଭିମାନ ଜର୍ଜରିତ ଅତ୍ମା ମୋର, ଅନେକ ରୁଢ଼ବାକ୍ୟ ପ୍ରୟୋଗ କରି, ଆପଣଙ୍କୁ ଅନର୍ଥକ ଅଘାତ ଦେଇଛି । ସୁତରାଂ, ଆପଣଙ୍କର ଆଶୀର୍ବାଦ ଆଜି ମୋର ଏକାନ୍ତ ପ୍ରୟୋଜନ ।

ଗୋବିନ୍ଦ । ଉଠ କୁମାର ! (ଜଡ଼ିତ କଣ୍ଠରେ) ତୁମେ ଜାଣନା ଯେ, ସିଂହାସନର ଜ୍ୟୋତି ହୁଏତ କ୍ଷଣକାଳ ଲାଗି ପିତାକୁ ଅନ୍ଧକରି ଦେଇପାରେ, କିନ୍ତୁ ପିତୃସ୍ନେହକୁ ଅନ୍ଧ କରିଦେଇ ପାରେ ନା । ତୁମର ନିର୍ବାସନ ଯେ କୁମାର ନୀଳକଣ୍ଠଙ୍କର ଚକ୍ରାନ୍ତର ଫଳ, ଏହା ଏତିକି ବୁଝିବାକୁ ଆଜି ମୋର ଅଉ ବାକି ନାହିଁ । ତେଣୁ ତୁମକୁ ପାଇ ମୋର ହୃଦୟ ଆଜି ଅନନ୍ଦରେ ପରିପୂର୍ଣ୍ଣ ହୋଇ ଉଠୁଛି ସତ, କିନ୍ତୁ ରାଜ୍ୟ ଧନଞ୍ଜୟଙ୍କର ଭବିଷ୍ୟତ୍ ଭାବି ମୁଁ ବଡ ଚିନ୍ତାକୁଳ, କୁମାର ! ସ୍ନେହମୟ ଜ୍ୟେଷ୍ଠଭ୍ରାତା ମୋର, ଅଜି ସେ କେତେ ଅସହାୟ । ମୋତେ ଅନ୍ତଃପୁରରେ ବିଦାୟ ଦେବା ସମୟରେ ତାଙ୍କର ଅଶ୍ରୁପୂର୍ଣ୍ଣ ଛଳ ଛଳ ଅଖି ଦୁଇଟିର କରୁଣ ଦୃଶ୍ୟ ଯେ ମୁଁ ଭୁଲି ପାରୁ ନାହିଁ । ବାହୁବଳୀ, ଘୁମୁସରର ଅଜି ବଡ଼ ଦୁର୍ଦ୍ଦିନ—କୁମାର !

ଘନ । ଶୁଣନ୍ତୁ ରାଜାସାହେବ, ନୀଳକଣ୍ଠଙ୍କର କାର୍ଯ୍ୟ । ଏଥିରେ ଆପଣ ଘୁମୁସରର ମଙ୍ଗଳ ଆଶା କରି ପାରନ୍ତି କି ?

ରାମ । ବ୍ୟସ୍ତ ହୁଅନା କୁମାର ! ଗୁପ୍ତଚର ମୁଖରୁ କୁଲାଡ଼ ଦୁର୍ଗର ସମସ୍ତ ସମ୍ବାଦ ମୁଁ ସଂଗ୍ରହ କରିଛି । ନିଭୃତ ମନ୍ତ୍ରଣାଗାରରେ ଏ ସମ୍ପର୍କରେ ସମସ୍ତ ବ୍ୟବସ୍ଥା ଅମେ ଯଥା ସମୟରେ କରି ପାରିବା । ସୁତରାଂ, ଏ ବିଷୟରେ ଏଠାରେ ଅଉ ଅଧିକ ଅଲୋଚନା କରିବା ଉଚିତ ହେବନାହିଁ, କୁମାର ! ନିରଞ୍ଜନ ! ମୋର ବାଲ୍ୟବନ୍ଧୁ ଗୋବିନ୍ଦଭଞ୍ଜ ଅଜି ମୋର ବିଶିଷ୍ଟ ଅତିଥି । ତାଙ୍କର ଉପଯୁକ୍ତ ଅଭିନନ୍ଦନରେ ଯେପରି କୌଣସି ତ୍ରୁଟି ନ ହୁଏ ।

ନିର । ନର୍ତ୍ତକି ! ( ଗୀତ ଗାଇ ନୃତ୍ୟ ଦେଖାଇବାକୁ ଇଙ୍ଗିତ ଦେଲେ । )

ରାମ । ନିର୍ବାସିତ ପିତା ପୁତ୍ରଙ୍କର ଏହି ଅପ୍ରତ୍ୟାଶିତ ମିଳନରେ, କୌଣସି ରସ ସଙ୍ଗୀତ ଗାଇ ପରିସ୍ଥିତିକୁ ଅବିଳ କରିଦେବା ମୋର ଇଚ୍ଛା

ନୁହେଁ, ନର୍ତ୍ତକ ! ଯେଉଁ ଜଗନ୍ନାଥଙ୍କର ଅପାର କରୁଣା ବଳରୁ, ଏପରି ଗୋଟାଏ ଅକଷ୍ମିକ ମଧୁର ମିଳନର ସମ୍ଭବ ହୋଇ ପାରିଲା, ତାହାଙ୍କର ମହିମା ସଙ୍ଗୀତ ଶୁଣିବାକୁ ଆଜି ମୋର ଏକାନ୍ତ ଇଚ୍ଛା ।

ବର । ଏପରି ସଙ୍ଗୀତ ଗାଇ ପାରିବ, ନର୍ତ୍ତକୀ ?

ନର୍ତ୍ତକୀ । ଜଗନ୍ନାଥ କ୍ଷେତ୍ରର ମହିମା ସଙ୍ଗୀତ ଶୁଣନ୍ତୁ, ମଣିମା— (ଗାଇଲେ)

ଯେଉଁ କ୍ଷେତ୍ରରାଜ ବିରାଜମାନ ଗରୁଡ଼ଧ୍ୱଜେ,
ଶ୍ରବଣେ ଚରିତ ଦୁରିତ ଜନ ଦୁରିତ ଗଞ୍ଜେ ।
ଯେବଣ କଣ୍ଠଲେ ଛଣ୍ଠଲେ ବରିଷ୍ଠଲେ ମୁକତି
ମହାପ୍ରସାଦରେ ସାଦରେ ଲୋକମାନେ ଲଭନ୍ତି ।
ଅଳସ କଳସ ବଟର ଯହିଁ ଛାୟା ଆଶ୍ରିତ,
କଳପି କଳପି ନର କଳୁଷ ତରନ୍ତି ମତ ।
ଦନା ତୁଣ୍ଡାଗ୍ରରେ ଚଞ୍ଚୁରେ କୁଣ୍ଡ ପଡ଼ନ୍ତେ ଯହିଁ
କାକର ହୋଇଲା କର ଭୁଜ, କାସ ବଦୃର ତହିଁ ।
ପତାକା ଅଞ୍ଚଳ ଚଞ୍ଚଳ ଡାକେ ପାପୀଙ୍କି ଅବା,
ଏ ନୀଳ ନଗ ନଗରକୁ ଆସ ଭଲ କରିବା ।
ଯେତେ ଦୂର ଘଣ୍ଟା ନିନାଦ ଶୁଭେ କନ୍ଦରେ ନେଇ,
ପକାଏ ଅନ୍ତ ଦୁଷ୍କୃତ ଗଳେ ଗଳଥା ଦେଇ ।
ସୁମନ ମନରେ ଇଚ୍ଛନ୍ତି ତହିଁ ବେଢ ଘାତକୁ
ଗମନରେ ନରେ ତେଜନ୍ତି ଶମନର ଭୟକୁ ।

ଘନ । ଏ କଣ ଦୁମୁସର ଢଳକ ଉପେନ୍ଦ୍ରଙ୍କର ରଚନା, ନର୍ତ୍ତକୀ ?

ନର୍ତ୍ତକୀ । ହିଁ ମଣିମା, ଏହା କବିଶେଖରଙ୍କର ରସିକହାରାବଳୀ କାବ୍ୟର ଦୃଷ୍ଟାନ୍ତ ଛନ୍ଦ । ନୀଳାଚଳନାଥଙ୍କର ବିଖ୍ୟାତ ଚନ୍ଦନଯାତ୍ରାର ଉତ୍ସବ ବର୍ଣ୍ଣନା କରିବା ପୂର୍ବରୁ, ଏହା କେବଳ ଶ୍ରୀକ୍ଷେତ୍ରର ସାମାନ୍ୟ ଉପକ୍ରମଣିକା ମାତ୍ର ।

ଗୋବିନ୍ଦ । - ଦେଖୁଛ, କୋନାମଣିଙ୍କର କାବ୍ୟ ସାହିତ୍ୟ ଇତିମଧ୍ୟରେ ଧରାକୋଟ ରାଜ୍ୟରେ ମଧ୍ୟ ନିଜର ଆସନ ଅଧିକାର କରି ସାରିଲାଣି, ଆଶ୍ଚର୍ଯ୍ୟ ।

ରାମ । ଏଥିରେ ଆଶ୍ଚର୍ଯ୍ୟ ହେବାର ତ କିଛି ନାହିଁ, ବନ୍ଧୁ । ଆପଣଙ୍କର କୋନାମଣିଙ୍କର ସାହିତ୍ୟ ଯେ ସମଗ୍ର କଳିଙ୍ଗ ସାମ୍ରାଜ୍ୟର ସମ୍ପତ୍ତି । ତାଙ୍କୁ ଆପଣ କେବଳ ଘୁମୁସର ରାଜ୍ୟ ମଧ୍ୟରେ ଆବଦ୍ଧ କରି ରଖି ପାରିବେ କିପରି ?

ଗୋବିନ୍ଦ । ଠିକ୍ କହୁଛ ରାମଚନ୍ଦ୍ର ! ଉପେନ୍ଦ୍ରଙ୍କର ପ୍ରତିଭା-ରଶ୍ମି, କେବଳ ଘୁମୁସର ରାଜ୍ୟର ଅନ୍ଧକାର ଦୂର କରିବା ଲାଗି ଉଦ୍ଦିଷ୍ଟ ନୁହେଁ । ତାଙ୍କର ପ୍ରତିଭାର ପ୍ରଖର ଜ୍ୟୋତି, କ୍ରମେ ଦିନେ ସମଗ୍ର ବିଶ୍ୱ ସାହିତ୍ୟ ଉପରେ ଏକ ଅପୂର୍ବ ଆଲୋକ ପାତ କରିପାରେ ।

ରାମ । ଚାଲନ୍ତୁ ବନ୍ଧୁ, ପଥଶ୍ରମ ଯୋଗୁଁ ଆଜି ଆପଣ ଅତ୍ୟନ୍ତ ପରିଶ୍ରାନ୍ତ । ସୁତରାଂ ରାମଚନ୍ଦ୍ରର ଆତିଥ୍ୟ ଗ୍ରହଣ କରି, ଟିକିଏ ବିଶ୍ରାମ ନେବେ, ଚାଲନ୍ତୁ ।

[ ଆଗେ ରାମଚନ୍ଦ୍ର, ତା ପରେ ଗୋବିନ୍ଦ, ତା ପରେ ଘନଙ୍କର ପ୍ରସ୍ଥାନ । ସେମାନଙ୍କର ଯିବା ପରେ, ନରଞ୍ଜନା ଓ ନର୍ତ୍ତକୀର ଅନ୍ୟ ଦିଗରେ ପ୍ରସ୍ଥାନ । ]

---

# ପଞ୍ଚମ ଦୃଶ୍ୟ

[ ପ୍ରଥମ ଅଙ୍କର ପ୍ରଥମ ଦୃଶ୍ୟ ବର୍ଣ୍ଣିତ କୁଜଙ୍ଗ ଦୁର୍ଗ ଅଭ୍ୟନ୍ତରସ୍ଥ, ରାଜା ଧନଞ୍ଜୟଙ୍କ ମନ୍ତ୍ରଣା କକ୍ଷ । ସମୟ—ସନ୍ଧ୍ୟା । ପଲଙ୍କ ଉପରେ ଅର୍ଦ୍ଧଶାୟିତ ରାଜା ଧନଞ୍ଜୟ । ମୁଖରେ ତାଙ୍କର ଅବସାଦର ଛାୟା ପୂର୍ଣ୍ଣରୂପେ ପରିସ୍ଫୁଟ । ତାଙ୍କର ପାଦଦେଶରେ ଅନ୍ୟ ଗୋଟାଏ ଆସନରେ ବସି ରହିଥିଲେ, କୁମାର ଗଙ୍ଗାଧର । ଦ୍ୱାରଦେଶରେ ଦୁଇଜଣ ପ୍ରହରୀ କ୍ଲାନ୍ତ ପଦଚାରଣା କରୁଥିଲେ । ଉନ୍ମୁକ୍ତ ବାତାୟନ ମଧ୍ୟଦେଇ, ଭାସି ଆସୁଥିବା ସାନ୍ଧ୍ୟ ସମୀରଣରେ ରାଜାଙ୍କର ବହୁମୂଲ୍ୟ ଉତ୍ତରୀୟଟି ମଧ୍ୟେ ମଧ୍ୟେ କମ୍ପି ଉଠୁଥିଲା । କକ୍ଷର ସାଜସଜ୍ଜା ପୂର୍ବାପର ଅପରିବର୍ତ୍ତିତ ହୋଇ ରହିଛି । ]

ଗଙ୍ଗା । ତଥାପି ସୁଦ୍ଧା, ମୁଁ ଅନୁନୟ କରୁଛି ପିତା, କୁମାର ନୀଳକଣ୍ଠଙ୍କ ହସ୍ତରେ ରାଜ୍ୟଭାର ଅର୍ପଣ କରନ୍ତୁ । ନୋଚେତ୍, ବୃଦ୍ଧ ଆପଣ, ମୋର ଭୟହୁଏ, ଆପଣ ଏହି ଦୁଶ୍ଚିନ୍ତାର ଆଘାତ ସହ୍ୟ କରି ପାରିବେ ନାହିଁ ।

ଧନ । କିନ୍ତୁ ଏ ଆଘାତ ସହ୍ୟ କରିବା ବ୍ୟତୀତ, ଆଜି ମୋର ଅନ୍ୟ କିଛି ଉପାୟ ତ ନାହିଁ, କୁମାର ! ବୋଧହୁଏ, ଏହା ଜଗନ୍ନାଥଙ୍କର ଅଭିପ୍ରେତ । କଣ କରିବ ! ଶତଚେଷ୍ଟା କରି ସୁଦ୍ଧା, ମୋର ବିଷାକ୍ତ ମନ, ନୀଳକଣ୍ଠଙ୍କ ଉପରେ ଯେ କୌଣସି ଆସ୍ଥା ସ୍ଥାପନ କରିପାରୁ ନାହିଁ । ନୀଳକଣ୍ଠ ମୋର ପୁତ୍ର, ଅଥଚ ତାଙ୍କ ପାଇଁ ଟିକିଏ ମାତ୍ର ସ୍ନେହ ସହାନୁଭୂତି ବ୍ୟୟ କରିବାକୁ ମୁଁ କୁଣ୍ଠିତ ।

ଗଙ୍ଗା । ଏ ସମସ୍ତ ମୁଁ ଜାଣେ ପିତା ! କିନ୍ତୁ ତଥାପି, ଏ ରାଜ୍ୟର ସିଂହାସନ ଅଧିକାର କରିବାକୁ, ତାଙ୍କ ବ୍ୟତୀତ ଅନ୍ୟ କେହି ତ ବର୍ତ୍ତମାନ ଏ ଦୂମୁସରରେ ନାହାନ୍ତି ।

ଧନ । କିଏ କହେ ନାହାନ୍ତି ? ଯୋଗୀସନ୍ନ ଅଶ୍ୱତ୍ଥମାନଙ୍କର ବାଣୀକୁ ଏତେଶୀଘ୍ର କିପରି ଭୁଲିଗଲ, କୁମାର ? ଘନଭଞ୍ଜ ଆଜି ଘୁମୁସରରେ ନାହାନ୍ତି ସତ, କିନ୍ତୁ ଏ ଦୁନିଆଁରେ ତାଙ୍କର ଅସ୍ତିତ୍ୱ ତ ଅଛି । ନିୟତିର ଗତି ଉପରେ ଶରଦନ ମୋର ଅଖଣ୍ଡ ବିଶ୍ୱାସ । ସୁତରାଂ, ଏହି ସିଂହାସନକୁ ମୋତେ ଅନ୍ତତଃ, ତାଙ୍କର ଲାଗି ଗଚ୍ଛିତ କରି ରଖିବାକୁ ହେବ ।

ଗଙ୍ଗା । ମୋର ମନେହୁଏ, ହେମାମଣି ଉପେନ୍ଦ୍ରଙ୍କୁ ଏ ରାଜ୍ୟର ସିଂହାସନ ଅର୍ପଣ କଲେ, ବୋଧହୁଏ ନୀଳକଣ୍ଠଙ୍କର ଆଉ କୌଣସି ଅଭିଯୋଗ ରହନ୍ତା ନାହିଁ । ସୁତରାଂ ହେମାମଣିଙ୍କୁ ଏ ରାଜ୍ୟର ଭାର ଦେବାରେ ଆପଣଙ୍କର ତ କୌଣସି ଆପତ୍ତି ନାହିଁ ?

ଧନ । ମୋର ଆପତ୍ତି କଥା ପଚାରୁଛ ? ଉପେନ୍ଦ୍ରଙ୍କର ଗୌରବମୟ ମସ୍ତକରେ ଏ ରାଜ୍ୟର ରାଜମୁକୁଟ ପିନ୍ଧାଇ ଦେବାଲାଗି ମୋର ହସ୍ତ ସେ ଶର ପ୍ରସାରିତ । କିନ୍ତୁ ହତଭାଗ୍ୟ ଘୁମୁସରର ଲଲାଟରେ, ବୋଧହୁଏ ଏତେ ବଡ଼ ସୌଭାଗ୍ୟ ନାହିଁ । ମୁଁ ନିଶ୍ଚିତରୂପେ ଜାଣେ, କବି ଉପେନ୍ଦ୍ର, ସିଂହାସନ ଗ୍ରହଣ କରିବା ତ ଦୂରର କଥା, ସିଂହାସନର ଛାୟା ସୁଦ୍ଧା ସ୍ପର୍ଶ କରିବାକୁ ଏକାନ୍ତ ନାରାଜ । ଏ ଦେଶର କାବ୍ୟ କବିତା ରାଜ୍ୟର ସମ୍ରାଟ ସେ । ଘୁମୁସର ରାଜ୍ୟର ରାଜମୁକୁଟ ସେ ତାଙ୍କ ପାଖରେ ନିତାନ୍ତ ନଗଣ୍ୟ । ତା ପରେ, ରାଜବଧୂ ମାଳବିକା ହୁଏତ ତାଙ୍କୁ ଏ ରାଜ୍ୟରେ ବାନ୍ଧି ରଖି ପାରିଥାନ୍ତେ । କିନ୍ତୁ, ସେ ବନ୍ଧନ ମଧ୍ୟ ଆଜି ଛିନ୍ନ । ସୁତରାଂ, ସିଂହାସନ ମୂଲ୍ୟରେ ହେମାମଣିଙ୍କୁ କ୍ରୟ କରିବାର ସ୍ପର୍ଦ୍ଧା, ଘୁମୁସର ରାଜ୍ୟର ନାହିଁ ।

[ଠିକ୍ ଏହି ସମୟରେ, କଷାୟ-ବସ୍ତ୍ର-ପରିହିତ, ମୁଣ୍ଡିତ ମସ୍ତକ, କବି ଉପେନ୍ଦ୍ର ହସି ହସି ସେହି କକ୍ଷ ମଧ୍ୟକୁ ପ୍ରବେଶ କଲେ । ନଗ୍ନ ଦେହରେ ଖଣ୍ଡିଏ ମାତ୍ର ଉତ୍ତରୀୟ । ଏକ ହସ୍ତରେ ଗୃହ ଗୋଟିଏ ପୋଥି ଓ ଅନ୍ୟ ହସ୍ତରେ ଆଉ ଗୋଟିଏ ପୋଥି ।]

ଉପେ । (ପ୍ରବେଶ କରୁ କରୁ) ପିତାମହ !

ଧନ । (ସ୍ୱର ଶୁଣି ଚମକି) କିଏ, ଛେନାମଣି ଉପେନ୍ଦ୍ର !! (ଏତିକି କହି ପଲଙ୍କରୁ ଉଠି ଧାଇଁଗଲେ ତାଙ୍କ ପାଖକୁ । ଉପେନ୍ଦ୍ର ଚରଣ ସ୍ପର୍ଶକରି ନମସ୍କାର କଲେ । ରାଜା ତାଙ୍କୁ ଉଠାଇ ନେଇ ଆଲିଙ୍ଗନ କଲେ । ସଙ୍ଗେ ସଙ୍ଗେ, ତାଙ୍କ ଆଖିରୁ ଝରି ପଡ଼ିଲା ଅଶ୍ରୁ ।) ହାୟ୍ ହତଭାଗ୍ୟ କବି ! କଣ ଅଛି ଆଜି ଆଉ ? କୁଳଡ଼ ଦୁର୍ଗ ଯେ ଅନ୍ଧକାର ।

ଉପେ । (ପିତାମହଙ୍କ ସହିତ ପଲଙ୍କ ଆଡ଼କୁ ଆସି ଅସୁ, ଗଙ୍ଗାଧରଙ୍କୁ ଦେଖି, ତାଙ୍କର ଚରଣ ସ୍ପର୍ଶ କଲେ) ପାଠଦେଉ, ଭଲ ଅଛନ୍ତି, ପିତୃବ୍ୟ ?

ଗଙ୍ଗା । ହଁ ବତ୍ସ ! କିନ୍ତୁ, ରାଜକେମା ମାଳବିକାଙ୍କ ଲାଗି ସମସ୍ତେ ଶୋକାକୁଳ ।

ଧନ । (ରୁଦ୍ଧ ସ୍ୱରରେ)ଛେନାମଣି । ତୁମର ନୟାଗଡ଼ ଯାତ୍ରା ପରେ, ଏକମାତ୍ର ବନ୍ଧୁମାତା ବିଦୂଷୀ ମାଳବିକା, ତୁମର କାବ୍ୟ ସଙ୍ଗୀତ ଶୁଣାଇ, ବୃଦ୍ଧ ଧନଞ୍ଜୟର ଜର୍ଜ୍ଜର ଜୀବନକୁ କରିପାରି ଥିଲେ, ଆନନ୍ଦ ମୁଖର । ସେହି ମଧୁର ସ୍ମୃତିର ଦଂଶନ ମୁଁ ଯେ ଏ ପର୍ଯ୍ୟନ୍ତ ମର୍ମେ ମର୍ମେ ଅନୁଭବ କରୁଛି ।

ଉପେ । ପିତାମହ ! ଉପେନ୍ଦ୍ରର ମାଳବିକା ତ ମରି ନାହାନ୍ତି । ସେ ଯେ ଚିର ଜୀବନ୍ତ, ଶାଶ୍ୱତ । ମୃତ୍ୟୁର କି କ୍ଷମତା ଅଛି ଯେ,ସେ ମାଳବିକାଙ୍କୁ ଉପେନ୍ଦ୍ରଠାରୁ ବିଚ୍ଛିନ୍ନ କରି ପାରିବ ?

ଧନ । ଉନ୍ମାଦ କବି ! ମୁଁ ଯେ ତୁମର କଥା କିଛି ବୁଝିପାରୁ ନାହିଁ ।

ଉପେ । ରକ୍ତ ମାଂସର ମାଳବିକା ଅବଶ୍ୟ ଆଜି ନାହାନ୍ତି ସତ, କିନ୍ତୁ ମୋର କଳ୍ପନାର ଦେବୀ ମାଳବିକାଙ୍କୁ ମୁଁ ଯେ ଚିରଦିନ ଲାଗି ମୋର ଏ ପୋଥି ମଧ୍ୟରେ ଆବଦ୍ଧ କରି ରଖିଛି । ତାଙ୍କର ମଧୁର ସ୍ପର୍ଶ ଆପଣ ଏହି ପୋଥି ମଧ୍ୟରେ ପାଇ ପାରିବେ, ପିତାମହ ! କବି ଉପେନ୍ଦ୍ରର କଳ୍ପନାର ରାଣୀ ସେ । ସେ ଯେ ଚିର-ଅବିନଶ୍ୱର ।

ଧନ । କି ପୋଥି ସେ କବି ?

ଉପେ । ମୋର ବୈଦେହୀଶ ବିଳାସ ମହାକାବ୍ୟର ପୋଥି । ଗ୍ରହଣ କରନ୍ତୁ ମହାରାଜ ! ସମଗ୍ର କାବ୍ୟଟି କେବଳ ରାଜକବି ଧନଞ୍ଜୟଙ୍କ ଲାଗି ଉଦ୍ଦିଷ୍ଟ । (ଦକ୍ଷିଣ ହସ୍ତରେ ଧରିଥିବା ଗୁରୁ ଖଣ୍ଡେ ପୋଥି ରାଜାଙ୍କ ହାତକୁ ବଢ଼ାଇ ଦେଲେ । )

ଧନ । ମୋ ଲାଗି ଉଦ୍ଦିଷ୍ଟ !! କଥାଟାର ଅର୍ଥ ତ ବୁଝି ପାରିଲି ନାହିଁ, କବି !

ଉପେ । ସେଦିନ ଛାମୁଙ୍କର ରଘୁନାଥ ବିଳାସ କାବ୍ୟ ପଢ଼ି ସାରିଲା ପରେ, ସେହି ରାମ ଚରିତକୁ ଅବଲମ୍ବନ କରି ଏକ ଅପୂର୍ବ କାବ୍ୟ ଲେଖିବାର ଯେଉଁ ପ୍ରତିଶ୍ରୁତି ମୁଁ ଦେଇଥିଲି, ଏହି କାବ୍ୟ ତାର ମଧୁର ପରିଣତି, ପିତାମହ ! ସମଗ୍ର କାବ୍ୟଟି ବ ଜାର କଯ୍ନମରେ ରଚିତ । ତେଣୁ କାବ୍ୟଟିର ନାମ ବୈଦେହୀଶ ବିଳାସ । ବାଉନଟି ଛନ୍ଦ, ବାଇଶି ଦିନରେ ସମାପ୍ତ କରିଛି । ପ୍ରତ୍ୟେକ ଛନ୍ଦର ପଦସଂଖ୍ୟା ମଧ ବ ଜାର କଯ୍ନମରେ ନିର୍ଦ୍ଦିଷ୍ଟ । ବସନ୍ତ ରଙ୍ଗର ସୂତାରେ ସମଗ୍ର ପୋଥିକୁ ଗ୍ରଥିତ କରି, ବର-କୋଳି ପଟା ଲଗାଇ, ଆଜି ଆପଣଙ୍କ ହାତରେ ଉପହାର ଦେଉଛି, ମହାରାଜ !

ଧନ । ଶୁଣୁଛ, ଗଙ୍ଗାଧର ! ଏହି ଅଭିନବ କାବ୍ୟ ରଚନାର ଇତିହାସ ? ଏ ପ୍ରତିଭାକୁ ନିଜସ୍ୱ କରି ରଖିବାକୁ, ପୃଥିବୀର ରାଜ୍ୟର ଶକ୍ତି କାହିଁ ?

ଗଙ୍ଗା । କେନାମଣି ! ତୁମର ଏହି କାବ୍ୟର କିଛି ଅଂଶ ପିତାଙ୍କ ନିକଟରେ ଆବୃତ୍ତି କରି ପାରିବ ? ତା'ପରେ, ଏ ଭଳି ଏକ ଅଭିନବ କାବ୍ୟର ରଚନା ଶୁଣିବାକୁ, ମୋର ମଧ୍ୟ କୌତୁହଳ ଜାତ ହେଉଛି ।

ଧନ । ଠିକ୍ କଥା, କବି ! ସେଦିନ ମୋର କାବ୍ୟର ଚନ୍ଦ୍ରକୂଟ ବର୍ଣ୍ଣନା ପାଠକଲା ପରେ, ତୁମେ ଯେଉଁ ମନ୍ତବ୍ୟ ପ୍ରକାଶ କରିଥିଲ, ତାହାରି ଭିତ୍ତି ଉପରେ ତୁମର ଏ ମହାକାବ୍ୟଟି ଗଠିତ । ସୁତରାଂ, ତୁମର ଏହି କାବ୍ୟର ଚନ୍ଦ୍ରକୂଟ ବର୍ଣ୍ଣନା ଶୁଣିବାକୁ ଆଜି ମୋର ବିଶେଷ ଆଗ୍ରହ । ମୋତେ ସେତିକି ବର୍ଣ୍ଣନା, ବର୍ତ୍ତମାନ ଶୁଣାଅ, କବି !

ଉପେ । (ସ୍ୱଜାଙ୍କ ନିକଟରୁ, ଗୃହପୋଥିରୁ ଗୋଟିଏ ଆଣି, ଗୋଟିଏ ଆସନରେ ବସି, ତାହା ଖୋଲି, ସେଥିରୁ ଆବୃତ୍ତି କଲେ । )

ବସୁରଇ ମାଳ ଯମକରେ କବି ମନେ,
ବୁଲେ ଭ୍ରମ ଭ୍ରମ ଭ୍ରମନେହି ଧେନୁ ବନେ ।
ବୃହଦ୍‌ଭାନୁ ଭାନୁ ଭାନୁ ପ୍ରଭା ତାପ ନାହିଁ,
ବୃତ ତମାଳ ମାଳ ମାଳତୀ ଲତା ଯହିଁ ।
ବଂଶେ ଘନ ଘନ ଘନ ଲୁଣ କଣ ଯଥା,
ବୃଷ୍ଟି ମଧୁର ମଧୁର ମଧୁରକେ ତଥା ।
ବୋଧେ ଶୃଙ୍ଖଳାରେ ରଘୁନାଥ ସୀତା ମତ,
ବତଂସ ଶତକୂଟ ଯେ କୂଟକେ ବ୍ରତତୀ ।
ବ୍ରତତୀ ତତ ଜୟନ୍ତୀ, ଅତୀବ ବାସନ୍ତୀ,
ବାସନ୍ତୀ ସତରେ ଫୁଲ୍ଲ ଫୁଲରେ ପ୍ରବର୍ତ୍ତି ।
ବର୍ତ୍ତିକ ତକ ଅଳି ଅଳି ଯେ ବହିରତ,
ବହିରତ ମାନ ମାନ ଶୁକ ସୁକବିତ ।
ବୋଧନ୍ତି ଭ୍ରମ ସିଂହାବଲୋକନେ ଅବଳା,
ବଳାକା ପନ୍ତି କରନ୍ତି ଧ୍ରୁବକୁ ଧବଳା,
ବଳାଇ ମାନସ ମାନ ଅନା ପ୍ରାଣବନ୍ଧୁ,
ବନ୍ଧୁକ ରଞ୍ଜନ ଅତ ରଙ୍ଗ ନୀରବନ୍ଧୁ !
ବ୍ୟାଘ୍ର ଗତରେ ସର୍ଧାରେ କହନ୍ତି ଗୀର ଷେ,
ଗୀର ତରୁରେ ତରୁଣୀ କୁସୁମ ବରଷେ ।
ବର ଉନ୍ନତ ଉନ୍ନତ ଉପମା ବିସ୍ତାନ,
ବହୁତ କରନ୍ତି ବହୁ କବିଙ୍କ ବଚନ ।
ବସନ୍ତ ବସନ ବଣ ମହା ଯମକରେ,
ବସନ୍ତ ବସନ୍ତ ପକ୍ଷୀ ବସନ୍ତ ଦ୍ରୁମରେ ।
ବିକଶିତ ହୋଇଛନ୍ତି କେଶରୀ କେଶରୀ,
ବିଳସେ ଶାଖାରେ ଦେଖ କେଶରୀ ଛେକ ସରି ।

ବିଦାରି ପାଉଛି କରି କେଶରୀ କେଶରୀ,
ବିହାନ ହୋଇଛି ମାତ୍ର କେଶରୀ କେଶରୀ ।
ବାଳାକୁ ହସ୍ତ ଦେଖାଇ ପୁଣି ରଘୁବର,
ବାକ୍ୟ ସମ୍ବୋଧନ ଭଣେ ପଦ ଯମକର ।
ବଇଦେହୀ ସୁମନା ସୁମନା ଏ ସୁରଭି ।
ବଇଦେହୀ ସୁମନା ସୁମନା ଏ ସୁରଭି ।
ବିଦ୍ୟ ଲୋକରେ ପ୍ରିୟକ ମାଧବୀ ସଙ୍ଘାତ,
ବିଦ୍ୟ ଲୋକରେ ପ୍ରିୟକ ମାଧବୀ ସଙ୍ଘାତ ।

ଧନ । (ଉଠିଆସି ଉପେନ୍ଦ୍ରଙ୍କୁ ଆଲିଙ୍ଗନ କରି) କବିଶ୍ରେଷ୍ଠ ଉପେନ୍ଦ୍ର ! ଏ ସ୍ୱର୍ଗୀୟ କବିତା ଧାରାକୁ ଅଭିନନ୍ଦନ କରିବାକୁ, ଆଜି ଯେ ଧନଞ୍ଜୟର ଭାଷାର ଅଭାବ । ଏ ଯେ ଅଭିନବ ଶୈଳୀ । ଏ ମାଳ ଯମକର ତୁଳନା ଯେ ନାହିଁ । ଶୃଙ୍ଖଳା, ସିଂହାବଲୋକନ, ବ୍ୟାଘ୍ରଗତି, ମହାଯମକ, ପଦଯମକ, ଏ ସବୁକୁ ମୁଁ ଯେ କେବଳ ବିସ୍ମୟ ବିସ୍ଫାରିତ ଲୋଚନରେ ଅନାଇ ରହିଛି । ଏ ଦେଶର ସାହିତ୍ୟରେ, ଭାଷାର ଏପରି ସୂକ୍ଷ୍ମ କାରୁକାର୍ଯ୍ୟ ଯେ ଏକାନ୍ତ ଦୁର୍ଲ୍ଲଭ, କବି !

ଉପେ । ଏହା ପରେ ମଧ୍ୟ ଏହି ଛନ୍ଦରେ ଅଛି, ଗୋମୂତ୍ରଛନ୍ଦ, ଅନ୍ତଲାପି, ବହିର୍ଲାପି, ମଧ୍ୟ ଯମକ; ଆଦ୍ୟ ଯମକ, ବିଲୋମ ଲୋମ ମେଷ ଯୁକ୍ତ, ବକ୍ରୋକ୍ତି, ପ୍ରାନ୍ତ ଯମକ ।

ଗଙ୍ଗା । ବିଲୋମ ଲୋମ ମେଷ ଯୁକ୍ତ ଶୈଳୀ କଣ ? ତାହା ତ ମୁଁ ବୁଝିପାରୁ ନାହିଁ ?

ଉପେ । ଗୀତର ପ୍ରତ୍ୟେକ ପାଦକୁ, ମୂଳରୁ ଶେଷକୁ ପାଠ କଲେ ଯାହା, ଶେଷରୁ ମୂଳକୁ ପାଠ କଲେ, ଠିକ୍ ତାହା । ସେ ଲକ୍ଷଣର ବର୍ଣ୍ଣନା ଶୁଣନ୍ତୁ । ଆପଣଙ୍କର ସନ୍ଦେହ ମୋଚନ ହୋଇ ଯାଉବ । (ପୋଥି ଦେଖି)

ବରଦ ବିରସାନନ ସାର ବିଦରବ
ବଧମାନ ଜରତ ତରଜାନ ମାଧବ ।
ବିଦ୍ଧ ମାର ତ ହେବ ବହେ ତର ମାଧବୀ,
ବହେ ସଦା ତରସ ଶରତ ଦାସ ହେବ ।

ଧନ । ଉପେନ୍ଦ୍ର, ତୁମର ପ୍ରତିଭାର ମୂଲ୍ୟ ଦେବାକୁ, ରାଜା ଧନଞ୍ଜୟ ଆଜି ଯଥାର୍ଥରେ ଦରିଦ୍ର । ମୋର ସମ୍ବଳ ଯେ କିଛି ନାହିଁ, ବାବା ! ତେବେ, ସମଗ୍ର କଳିଙ୍ଗ ସାମ୍ରାଜ୍ୟର ଶ୍ରେଷ୍ଠ ଓଡ଼ିଆ ଜାତି ପକ୍ଷରୁ, ଘୁମୁସରର ବୃଦ୍ଧ ରାଜା, ଆଜି ସର୍ବପ୍ରଥମେ ତୁମ୍ଭକୁ ଅଭିନନ୍ଦନ କରୁଛି, ଏ ଜାତିର ସର୍ବଶ୍ରେଷ୍ଠ କବିସମ୍ରାଟ ପଦବୀରେ ଭୂଷିତ କରି । ମୋର ଏ ସାମାନ୍ୟ ଉପାଧିକୁ ଗ୍ରହଣ କର, ଜେନାମଣି ! (ନିଜର ବହୁମୂଲ୍ୟ ଜଡ଼ିତ୍ୟୁଚିକୁ ଉପେନ୍ଦ୍ରଙ୍କର ମସ୍ତକରେ ଶିରୋପାରୂପେ ବାନ୍ଧିଦେଲେ ।)

ଉପେ । (ଶିରୋପା ଗ୍ରହଣ କରି, ପ୍ରଥମେ ରାଜା ଓ ତତ୍‌ପରେ ଗଙ୍ଗାଧରଙ୍କୁ ନମସ୍କାର କଲେ ।)

ଧନ । କବି ! ବହୁଦିନ ହେଲା ତୁମର ମଧୁର କଣ୍ଠଧ୍ୱନି ମୁଁ ଶୁଣିପାରି ନାହିଁ । ତୁମର ଏହି ମହାକାବ୍ୟ ବୈଦେହୀଶ ବିଳାସକୁ ଅବଲମ୍ବନ କରି, ମୋର ସେ ଆଶା ଆଜି ପୂର୍ଣ୍ଣ କର । ବାବା ! ତୁମେ ଯେ ଏକାଧାରରେ କବି ଓ ଗାୟକ ।

ଉପେ । (ଥିଉ ଗୋଟିଏ ପୋଥି ଆଣି, ତାକୁ ଖୋଲି ସ୍ୱରସଂଯୋଗରେ ଗାଇଲେ )

ଶୁଣନ୍ତୁ ପିତାମହ । ବର୍ଷାଋତୁର ବରେଣ୍ୟାଭୂଷ ବର୍ଣ୍ଣନା ।

ବରେଣ୍ୟାଭୂଷ ପ୍ରକଟାଇ କବିରେ, ବରଷା ସମୟ ସଞ୍ଚରି,
ବ୍ୟାପି ଶୋଭି ଦଶେ ଭୟଙ୍କର ଦଶେ, ଗର୍ଜିସେ ଘନାଘନ ହରି,
ବିସର୍ଜଇ ଯେ, ବଡ଼ ଆନନ୍ଦରେ ଜୀବନ,
ବଧୂରେ କାଳିକା ମହିଷ ସନ୍ତାପ ନାଶି ପ୍ରମୋଦ କରେ ଦାନ ॥
ବିସ୍ତୃତ ପଦ ଲୀନ ହେବାରେ ଚଞ୍ଚଳା, ଜ୍ୟୋତି ପ୍ରକାଶି କଲା ଲୀଳା,
ବିଷକଣ୍ଠ ସୁଖେ ବଳସେ କୂଳରେ, ଶିଖିକା ସଂଘାତ ହୋଇଲା,
ବିଲୋକନେ ଯେ, ବିରସ ଯୋଗୀଏ ନୋହିଲେ,
ବିକାଶ ପୁଷ୍ପେ ସୁଜାତି ସୁମନାଏ ମଧୁପ ମନକୁ ମୋହିଲେ

ଧନ । ଚମତ୍କାର ବର୍ଣ୍ଣନା ! ଏ ସଙ୍ଗୀତ ଶୁଣି, ମୋର ଅନ୍ତରୁ ଯେ ମୁଁ ଇତିମଧ୍ୟରେ ହରାଇ ବସିଥିଲି, କବି ! (ଠିକ୍ ଏହି ସମୟରେ ଚମ୍ପା ନାଗର ପ୍ରବେଶ ।)

ଚମ୍ପା । ମହାରାଜ !

ଧନ । କିଏ, ନାନା ? ତୁମେ ଏଠାରେ କାହିଁକି ?

ଚମ୍ପା । ଆଜି ଯେ ଅମାବାସ୍ୟା । ଛୁଆଁ ତ ରାତିରେ ମଣୋହି କରିବେ ନାହିଁ । ସୁତରାଂ ସନ୍ଧ୍ୟାରେ ମୋଣୋହି ବଢ଼ାଇବାକୁ,ରାଣୀମା ଜଣାଇଛନ୍ତି ।

ଧନ । ଯାଅ,ରାଣୀମାଙ୍କୁ ସମ୍ବାଦ ଦେବ ଯେ,ସେ ନିଜେ ମୋର ଖାଦ୍ୟ ଏଠାକୁ ନେଇ ଆସିବେ । ଅନ୍ତଃପୁର ମଧ୍ୟକୁ ମୁଁ ଆଜି ଯାଇପାରିବ ନାହିଁ ।

ଚମ୍ପା । ଯଥା ଆଜ୍ଞା, ମଣିମା ! (ପ୍ରସ୍ଥାନ ।)

ଧନ । ଆଜିର ଏ ଶ୍ଳେଷକାବ୍ୟ ପରିସ୍ଥିତିକୁ ମୁଁ ଯେ କ୍ଷଣକାଳ ଲାଗି ତ୍ୟାଗ କରି ଯିବାକୁ ରାଜି ନୁହେଁ, ଗଙ୍ଗାଧର !

ଗଙ୍ଗା । ରାଣୀମା ତୁମର ଆଗମନ ସମ୍ବାଦ ପାଇଛନ୍ତି, କେନାମଣି ?

ଉପେ । ଏଠାକୁ ଆସିବାର ବହୁପୂର୍ବରୁ ମୁଁ ରାଣୀମା'ଙ୍କର ଚରଣ ବନ୍ଦନା କରି ସାରିଛି, ପିତୃବ୍ୟ !

ଧନ । ଅଚ୍ଛା କେନାମଣି ! ମୋର ମନେ ହେଉଛି, ତୁମେ ଏଠାକୁ ଆସିଲାବେଳେ, ଅନ୍ୟ ଖଣ୍ଡେ ପୋଥି ବାମ ହସ୍ତରେ ଧରିଥିଲ ! କାହିଁ,ସେ ପୋଥିଟିକୁ ତ ମୋତେ ଦେଲ ନାହିଁ ? କି ପୋଥି ସେ ?

ଉପେ । (ଆସନ ଉପରୁ ବାହାର କରି) ଏହି ପୋଥି କଥା କହୁଛନ୍ତି, ମହାରାଜ ? ଏହା ମୋର ଅସମ୍ପୂର୍ଣ୍ଣ କାବ୍ୟ "କଳା କଉତୁକ", ଦୁଇଟି ଛାନ୍ଦ ମାତ୍ର ରଚନା ଶେଷ ହୋଇଛି । ମୋର ଏହି କାବ୍ୟ ସୃଷ୍ଟି ପଛରେ ଅପଣଙ୍କର ସ୍ମୃତି ମଧ୍ୟ ଜଡ଼ିତ, ପିତାମହ !

ଧନ । କିପରି ? ମୋର ତ କିଛି ସ୍ମରଣ ହେଉ ନାହିଁ ?

ଧନ । ଅପଣଙ୍କର ମନେ ନ ଥିବ । ବହୁଦିନ ପୂର୍ବେ ଦିନେ ଅପଣ କାନ୍ତ କବି ଦୀନକୃଷ୍ଣଙ୍କର ରସକଲ୍ଲୋଳ କାବ୍ୟ ପାଠ କରୁଥିଲେ । ସମଗ୍ର କାବ୍ୟଟି କ କାର ନିୟମରେ ରଚିତ,ଅଥଚ କାବ୍ୟଟିର ନାମ ରସକଲ୍ଲୋଳ

ଥିବାରୁ, ଏହି ନାମଟି ଭ୍ରମପୂର୍ଣ୍ଣ ବୋଲି,ମୁଁ ଚେତେବେଳେ ମତ ପ୍ରକାଶ କରି କହିଥିଲି ଯେ, କାବ୍ୟଟିର ନାମ କଲ୍ଲୋଳରସ ରଖିଥିଲେ, ଭଲ ହୋଇଥାନ୍ତା । ସେ ଦିନର ମୋର ସେ ପ୍ରସ୍ତାବଟିକୁ ଆପଣ ଅନୁମୋଦନ କରି ନ ଥିଲେ । ପ୍ରକାରାନ୍ତରରେ, କବି ଦୀନକୃଷ୍ଣଙ୍କର କାବ୍ୟର ନାମଟିକୁ ମୁଁ ସମାଲୋଚନା କରିଥିବାରୁ, ଆପଣ ମୋତେ ମଧ୍ୟର ଭର୍ତ୍ସନା ମଧ୍ୟ କରିଥିଲେ । ସେହି ଅଭିମାନର ସ୍ମୃତି ବହନ କରି, ମୋର ଏହି କାବ୍ୟ, "କଳା କଉତୁକ"ର ଜନ୍ମ । ଏହି କାବ୍ୟର ପ୍ରତ୍ୟେକ ପଦର ଆଦ୍ୟ ପ୍ରାନ୍ତ 'କ' । ଶ୍ରୀକୃଷ୍ଣଙ୍କର ଲୀଳା କାବ୍ୟଟିର କଥାବସ୍ତୁ । ତେଣୁ କାବ୍ୟଟିର ନାମ ରଖିଛି—କଳାକଉତୁକ । କାବ୍ୟଟି ସମ୍ପୂର୍ଣ୍ଣ ହୋଇ ନାହିଁ । ହୋଇଥିଲେ, ତାହା ମଧ୍ୟ ଆପଣଙ୍କର ଚରଣରେ ସମର୍ପଣ କରିଥାନ୍ତି ।

ଧନ । ତାହେଲେ କବି ! ତୁମର ଏହି ମହାକାବ୍ୟ ବୈଦେହୀଶ ବିଳାସ ଭଳି, ଏହାକୁ ମଧ୍ୟ ଏକ ଅଭିନବ କାବ୍ୟରୂପେ ଗଢ଼ିବାର କଳ୍ପନା ତୁମର ଅଛି, ନୁହେଁ ?

ଉପେ । ନା ପିତାମହ ! ଏହା ମହାକାବ୍ୟ ହେବ ନାହିଁ । କେବଳ ଦଶଗୋଟି ଛନ୍ଦରେ ଏହାର କଳେବର ସମ୍ପୂର୍ଣ୍ଣ ହେବ ।

ଧନ । କାହିଁ, କାବ୍ୟଟିର ପ୍ରଥମ ଛନ୍ଦର ୨ୟ ପଦର ଆବୃତ୍ତି କରିଲ, କେନାମଣି ?

ଉପେ । ଶୁଣନ୍ତୁ ! (ପୋଥି ପଢ଼ି ଶୁଣାଇଲେ)

'କମଳଧର ହେ କମଳଧର ଜିତ ନାୟକ,
କମଳଧର ଯାର ଗ୍ରାମ ନାମ ସଦା ଧାୟକ,
କରୁଣାକର ହେ କରୁଣାକର ହୋଇ ହେତୁକ,
କହିବି ଚନ୍ଦ୍ରାବଳୀ କୃଷ୍ଣ କଳା କେଳି କୁତୁକ,
କଳାକଉତୁକ ଏ ଗୀତ ନାମ ହେବ ଖ୍ୟାତକ,
କରୁଥିବେ ପ୍ରତି ପାଦରେ ବାସ, ଆଦ୍ୟ ପ୍ରାନ୍ତ 'କ' ॥

ଧନ । ଗଙ୍ଗାଧର, ଏପରି ଅସୀମ ସାହସିକ କାବ୍ୟ ରଚନା ଏ ଦେଶରେ କେବେ ତୁମେ ଦେଖିଛ ? ଏ ରଚନା ନିକଟରେ, କବି

ଯାନକୃଷ୍ଣଙ୍କର ପ୍ରତିଭା ଯେ ମଳିନ ପଡ଼ିଯିବ ! କବୀନ୍ଦ୍ର, ଆଜି ମୋର ଜୀବନର ସମସ୍ତ ଆକାଂକ୍ଷା ପରିପୂର୍ଣ୍ଣ । ଧନଞ୍ଜୟ ଆଜି ବୃଦ୍ଧ, ମୃତ୍ୟୁ ପଥର ପଥିକ ହେବାକୁ ତା'ର ଆଉ ବେଶୀ ଦିନ ନାହିଁ । ତୁମ କବି ପ୍ରତିଭାର ପୂର୍ଣ୍ଣ ବିକାଶ ଯେ ମୁଁ ଦେଖି ପାରିଛି, ଏହା ମୋର ପରମ ସୌଭାଗ୍ୟ । କିନ୍ତୁ, ମୋର ଆଉ ଗୋଟିଏ ଶେଷ ଅନୁରୋଧ, ତୁମ୍ଭଙ୍କୁ ରକ୍ଷା କରିବାକୁ ହେବ, କବି !

ଉପେ । ଅନୁରୋଧ ନୁହେଁ, ଆଦେଶ କରନ୍ତୁ, ପିତାମହ !

ଧନ । ଜେମାମଣି ! ମୋର ଆଶା, ମୁଁ ସ୍ୱହସ୍ତରେ ଘୁମୁସର ରାଜ୍ୟର ରାଜମୁକୁଟ, ଥରେ ତୁମର ମହନୀୟ ମସ୍ତକରେ ପିନ୍ଧାଇ ଦେବି । ତେତିକି କରି ପାରିଲେ, ମୋର ବିଶ୍ୱାସ, ଧନଞ୍ଜୟର ଆତ୍ମା ପରପାରରେ ଥାଇ ସୁଦ୍ଧା ପରମ ଶାନ୍ତି ଲାଭ କରି ପାରିବ । ତୁମର ପ୍ରତିଭାର ପୁରସ୍କାର ରୂପେ ସମଗ୍ର ଘୁମୁସର ରାଜ୍ୟର ଏହି ନିବେଦନକୁ ଗ୍ରହଣ କର, ଉପେନ୍ଦ୍ର !

ଉପେ । (ହସି) ଏହା ତ ମୋର ପ୍ରତିଭାର ପୁରସ୍କାର ନୁହେଁ । ଏହା ଯେ ମୋର ପ୍ରତିଭାର ଆତ୍ମହତ୍ୟା ! ମୃତ୍ୟୁ ! ସମଗ୍ର ଘୁମୁସର ରାଜ୍ୟ କି ଏହାହିଁ ଚାହେଁ, ମହାରାଜ ? ସତ୍ୟ ସତ୍ୟ କି ଘୁମୁସରର ମଙ୍ଗଳ ଲାଗି କବି ଉପେନ୍ଦ୍ରର ମୃତ୍ୟୁ ଏକାନ୍ତ ପ୍ରୟୋଜନ ?

ଧନ । ଶୁଣିଲ, ଗଙ୍ଗାଧର ? ମୁଁ ଆଗରୁ କଣ କହୁଥିଲି ? ଠିକ୍ ଅକ୍ଷରେ ଅକ୍ଷରେ ମିଳିଗଲା କି ନାହିଁ ? ଜେମାମଣିଙ୍କର ଏ ପ୍ରଶ୍ନର କୌଣସି ଉତ୍ତର କି ତୁମେ ଦେଇ ପାରିବ ?

[ ଏହି ସମୟରେ ଦ୍ରୁତ ପଦ ବିକ୍ଷେପରେ, ମଣ୍ଡୋଦେବୀ ରୌପ୍ୟ ପାତ୍ରରେ ଦୁଗ୍ଧ ଓ ରୌପ୍ୟ ଥାଳରେ କେତେ ଖଣ୍ଡି ପରୁଟବୁନ୍ଦି ଧେନି ପ୍ରବେଶ କଲେ । ସଙ୍ଗରେ ପରିଚାରିକା ଜଳ ପାତ୍ର ଓ ଜଳାଧାର ସହ ପ୍ରବେଶ କଲା । ]

ମଣ୍ଡୋ । କିଅନ୍ତୁ ମହାରାଜ, ମଣୋହି ଶେଷ କରନ୍ତୁ । ସନ୍ଧ୍ୟା ଯେ ଉତ୍ତୀର୍ଣ୍ଣ ପ୍ରାୟ । ଆଉ ବେଶୀ ବିଳମ୍ବ କଲେ, ଅମାବାସ୍ୟାର ନିଶିପାଳନ ବୋଧହୁଏ ସମ୍ଭବ ହୋଇ ପାରିବ ନାହିଁ ।

ଧନ । ମଣ୍ତ୍ରୀଦେବ ! ଜେନାମଣିଙ୍କର ଅଭିନବ କାବ୍ୟ ରଚନା ଶ୍ରବଣରେ ମୁଁ ଆଜ ଏତେଦୂର ବଭୋର ଯେ, ଅନ୍ତଃପୁରକୁ ଯିବାର ଅବସର ସୁଦ୍ଧା ପାଇ ପାରିଲି ନାହିଁ; ମୋତେ କ୍ଷମା କରିବ ।

[ ଇଙ୍ଗିତ ଦେବାରୁ, ପରିଚାରିକା ନିକଟରୁ ଗଲ୍ଲ ଓ ରାଜା ଜଳ ପାତ୍ରରୁ ଜଳ ନେଇ ଜଳାଧାରରେ ହାତ ଧୋଇ ପକାଇ, ସେହି ପଲଙ୍କ ଉପରେ ବସି ମଣୋହି ଆରମ୍ଭ କଲେ । ମଣ୍ତ୍ରୀଦେବୀ ରୌପ୍ୟଥାଳ ଧରିଥାନ୍ତି । ]

ଧନ । (ଖାଉ ଖାଉ) ରାଣି, ଚକୁଳି ଆଜ ଏତେ ବିସ୍ୱାଦ ଲାଗୁଛି କାହିଁକି ? ( ଦୁଗ୍ଧ ପାତ୍ର ରାଣୀଙ୍କ ହସ୍ତରୁ ନେଲେ ଓ ପାନ କଲେ । ) ଆଶ୍ଚର୍ଯ୍ୟ ! ଦୁଗ୍ଧର ସ୍ୱାଦ ମଧ୍ୟ ତିକ୍ତ ! କାରଣ କଣ ? ଏପରି ବିସ୍ୱାଦ ତ ପୂର୍ବେ କେବେ ମୁଁ ଅନୁଭବ କରି ନାହିଁ ? (ଦୁଗ୍ଧତକ ପିଇଦେଲେ । ରାଣୀ ରୌପ୍ୟଥାଳ ଓ ଦୁଗ୍ଧପାତ୍ର ପରିଚାରିକାକୁ ଦେଲେ । ପରିଚାରିକା-ଠାରୁ ଜଳ ନେଇ, ରାଜା ହାତମୁଖ ଧୋଇ ସାରିବା ପରେ, ପରିଚାରିକାର ପ୍ରସ୍ଥାନ ।)

ମଣ୍ତ୍ରୀ । (ଅସନ୍ତୋଷ ପ୍ରକାଶ କରି) ମହାରାଜାଙ୍କର ମଣୋହି ଆଜ ଏପରି ବିସ୍ୱାଦ ହେବାର କାରଣ ତ ମୁଁ କିଛି ଜାଣିପାରୁ ନାହିଁ । ହୁଏତ ରାନ୍ଧୁଣୀ ଚମ୍ପାକାଳୀର ଅନ୍ୟମନସ୍କତାରୁ କିଛି ଗୋଳମାଳ ହୋଇ ଯାଇଛି ।

ଧନ । (ହଠାତ୍ ଚିତ୍କାର କରି ଉଠିଲେ) ଗଙ୍ଗାଧର, ଉପେନ୍ଦ୍ର ! ଏ କଣ, ହଠାତ୍ ମୋର ମସ୍ତିଷ୍କ ଏପରି ତୀବ୍ରଭାବରେ ଆନ୍ଦୋଳିତ ହୋଇ ଉଠିଲା କାହିଁକି ? ସାରା ଶରୀରଟା ମୋର ହଠାତ୍ ଏପରି ଜଳି ପୋଡ଼ି ଉଠିଲା କାହିଁକି ? ଓଃ--(ଗଙ୍ଗାଧର ଓ ଉପେନ୍ଦ୍ର ଉଭୟେ ପାଖକୁ ଗଲେ ।)

ମଣ୍ତ୍ରୀ । (ଚମକି ପଡ଼ି) କଣ ହେଲା, ମହାରାଜ ?

ଗଙ୍ଗା । (ବ୍ୟସ୍ତ ହୋଇ) ପ୍ରହରୀ ! ରାଜବୈଦ୍ୟ—(ଇଙ୍ଗିତ ପାଇ ଜଣେ ପ୍ରହରୀ ଚାଲିଗଲା ।)

ଧନ । ଓଃ ଗଙ୍ଗାଧର ! ମୋର କଣ୍ଠତାଳୁ ଯେ ଶୁଷ୍କ ହୋଇ ଯାଉଛି । ସର୍ବାଙ୍ଗରେ ଯେ ଅସହ୍ୟ ଯନ୍ତ୍ରଣା—କେଜାଣି—ଏ ଯେ ଉତ୍କଟ ବିଷର ପ୍ରତିକ୍ରିୟା ! ଓଃ—

ମନ୍ତ୍ରୀ । ବିଷ ! ! ! ଏ ଯେ ଅସମ୍ଭବ ମହାରାଜ !

ଧନ । ଚୁପ୍ କର ରାକ୍ଷସି ! ଓଃ ଏତେବେଳେ ବୁଝି ପାରୁଛି, ଚକୁଳି ସ୍ୱାଦ ଲଗୁଥିଲା କାହିଁକି, ଦୁଗ୍ଧ ତିକ୍ତ ଲାଗୁଥିଲା କାହିଁକି ! ଗଙ୍ଗାଧର— ଓଃ—ରାକ୍ଷସି ! ଶେଷରେ ମୋର ଖାଦ୍ୟରେ ବିଷ ପ୍ରୟୋଗ କଲୁ ? ଓଃ — ଏ ଯେ ଅସହ୍ୟ ଯନ୍ତ୍ରଣା ।

[ ଦ୍ରୁତ ଗତିରେ ପ୍ରହରୀ ସହିତ ରାଜବୈଦ୍ୟଙ୍କର ପ୍ରବେଶ । ]

ଗଙ୍ଗା । ମହାରାଜାଙ୍କୁ ଶୀଘ୍ର ପରୀକ୍ଷା କରନ୍ତୁ କବିରାଜ ! ମଣୋହି ସାରିବାର ପରମୁହୂର୍ତ୍ତରୁ ଏପରି ଅବସ୍ଥା ଆରମ୍ଭ ହୋଇଛି । (କବିରାଜ ପରୀକ୍ଷା କଲେ ।)

[ ଉପେନ୍ଦ୍ର ନିର୍ନିମେଷ ନୟନରେ ଠିଆ ହୋଇ ଏ ସବୁ ଦେଖୁଥିଲେ । ]

ଧନ । କବିରାଜ—ଓଃ—କଣ୍ଠ ତାଳୁ ଯେ ଶୁଷ୍କ ! ସାରା ଶରୀରରେ ଯେ ତୀବ୍ର ଅନ୍ତର୍ଦାହ । ଦେହଟା ଯେ ଜଳି ପୋଡ଼ି ଯାଉଛି ! ଜଳ— ଜଳ—ଜଳ ! କବିରାଜ—ମୋତେ ବଞ୍ଚାଇ ପାରିବ ? (ବ୍ୟସ୍ତ ହୋଇ ପଡ଼ିଗଲେ ପଲଙ୍କ ଉପରେ ।)

[ଉପେନ୍ଦ୍ର ଧାଇଁଯାଇ, ପାଣି ଆଣି ରାଜାଙ୍କ ମୁହଁରେ ଦେଲେ ।]

ଗଙ୍ଗା । କଣ ନିର୍ଣ୍ଣୟ କଲେ, କବିରାଜ ?

ବୈଦ୍ୟ । ଏ ଯେ ଅତି ଉଗ୍ର ବିଷର ପ୍ରତିକ୍ରିୟା, କୁମାର ! (ରାଜାଙ୍କର ନାଡ଼ିକା ଦେଖି) ନାଡ଼ୀ ଯେ କ୍ରମେ ଦୁର୍ବଳ ହୋଇ ପଡ଼ୁଛି ! କୁମାର, ମହାମନ୍ତ୍ରୀଙ୍କୁ ସମ୍ବାଦ ଦିଅନ୍ତୁ ।

ଗଙ୍ଗା । ପ୍ରହରୀ—ମହାମନ୍ତ୍ରୀ (ଇଙ୍ଗିତ ପାଇ ପ୍ରହରୀ ଚାଲିଗଲା ।)

ଧନ । (ଜଡ଼ିତ କଣ୍ଠରେ) କବିରାଜ ! କୌଣସି ପ୍ରକାରେ ଧନଞ୍ଜୟଙ୍କୁ ଆଜି ବଞ୍ଚାଇ ଦିଅନ୍ତୁ । ମୁଁ ଥରେ—ଥରେ ମାତ୍ର ଏହି ରାଜସୀ ମଣ୍ଡାଙ୍କୁ ଦେଖିବାକୁ ଚାହେଁ । ଗଙ୍ଗାଧର—ମୋତେ ବଞ୍ଚାଅ ! କବି—ଉପେନ୍ଦ୍ର—ମୋତେ ରକ୍ଷାକର—ଓଃ ପିପାସା—(ଉପେନ୍ଦ୍ର ଜଳ ଦେଲେ ।)

ଗଙ୍ଗା । ମହାରାଜଙ୍କ ଜୀବନ ରକ୍ଷା କରିବାର କି କୌଣସି ଉପାୟ ନାହିଁ, କବିରାଜ ?

ବୈଦ୍ୟ । ଏ ପ୍ରଶ୍ନର ଯେ କୌଣସି ଉତ୍ତର ନାହିଁ,ରାଜକୁମାର ! ତୀବ୍ର ହଳାହଳ ତାର ସମସ୍ତ ପ୍ରତିକ୍ରିୟା ଆରମ୍ଭ କରି ସାରିଲାଣି ! ସ୍ୱୟଂ ଧନ୍ୱନ୍ତରୀ ମଧ୍ୟ ଏହାର କୌଣସି ପ୍ରତିକାର କରି ପାରିବେ ନାହିଁ ।

[ ମହାମନ୍ତ୍ରୀ ବୃଷଭାନୁ ଓ ପାଟଦେଈ ଶତ୍ରୁଞ୍ଜୟଙ୍କର ପ୍ରହରୀସହ ପ୍ରବେଶ । ]

ବୃଷ । (ବ୍ୟସ୍ତ ହୋଇ) ମହାରାଜାଙ୍କର ଅବସ୍ଥା,କିପରି ଅଛି କବିରାଜ ?

ଶତ୍ରୁ । ଜେନାମଣି—ଭାଇ—ତୁମେ ଏଠାରେ ? କିନ୍ତୁ ଏ କଣ ହେଲା ? କାହାର ଏ କାର୍ଯ୍ୟ ?

ଉପେ । (ନୀରବ ।)

ଧନ । (ଯନ୍ତ୍ରଣାରେ ଛଟପଟ ହେଉଥିଲେ ପଲଙ୍କରେ ।)ଓଃ—କେହି ମୋତେ ଆଉ ରକ୍ଷା କରି ପାରିଲ ନାହିଁ ? କୁମାର—ଗଙ୍ଗାଧର—ଓଃ—ପିପାସା—ଜଳ—ଜଳ—(ଉପେନ୍ଦ୍ର ଜଳ ଦେଲେ ।)

ବୃଷ । ମହାରାଜ—ମହାରାଜ—(ପାଖରେ ଯାଇଁ ବସିଲେ ।)

ଧନ । ବୃଷଭାନୁ—ମହାମନ୍ତ୍ରୀ ! ବନ୍ଧୁ, ବିଦାୟ ! ଘୁମୁସରକୁ ତୁମ ହାତରେ ଦେଇ ଯାଉଛି । କୁମାର ଗଙ୍ଗାଧର—ଜେନାମଣି—ବୃଦ୍ଧ ଧନଞ୍ଜୟଙ୍କୁ ବିଦାୟ ଦିଅ । ଓଃ—କଣ୍ଠ ଯେ ମୋର କ୍ରମେ ଜଡ଼ିତ ହୋଇ ପଡ଼ୁଛି ।

ବୃଷ । ମହାରାଜ ! (କାନ୍ଦି ଉଠିଲେ ।)

ଗଙ୍ଗା । ପିତା, ପିତା— ( ତାଙ୍କର ପାଦତଳେ ଲୋଟିଗଲେ, ଅଶ୍ରୁପୂର୍ଣ୍ଣ ଚକ୍ଷୁରେ । )

ଧନ । ମନ୍ତ୍ରୀ, ରାଜର୍ଷି ! କୁମାର, ମୋତେ ଟିକିଏ ଧରି ବସାଅ । ମୁଁ ସେ ରାଜର୍ଷୀଙ୍କୁ ଥରେ ଦେଖେଁ । (ଗଙ୍ଗାଧର କୋଳରେ ଧରି ବସାଇଲେ ।) ଶୁଣ ରାଜର୍ଷି—ଧନଞ୍ଜୟର ଶେଷ ଅଭିଶାପ । ଜଳ, ଜଳ—ଓଃ ପିପାସା— (ଉପେନ୍ଦ୍ର ପାଣି ଦେଲେ ।) ଯେଉଁ ନୀଳକଣ୍ଠ ଲାଗି ତୋର ଏ ଅୟୋଜନ, ସେ କଦାପି ଏ ରାଜ୍ୟର ରାଜା ହୋଇ ପାରିବ ନାହିଁ । ଅଉ—ଠିକ୍ ଏହିପରି ବର୍ଷର ପ୍ରତିକ୍ରିୟାରେ ତୋର ମଧ୍ୟ ଦିନେ ମୃତ୍ୟୁ ହେବ । ଓଃ— ଅସହ୍ୟ—ଜବସନ୍ତ୍ରା ଜେନାମଣି ! ଉପେନ୍ଦ୍ର—ଜଳ ଟିକିଏ । (ଉପେନ୍ଦ୍ର ଜଳ ଦେଲେ) ଓଃ—ଦୀର୍ଘଜୀବୀ ହୁଅ, ବାବା—ଘୁମୁସର— ବିଦାୟ ! ( କହି ଗଙ୍ଗାଧର କୋଳରେ ଚିରଦିନ ଲାଗି ଆଖିବୁଜି ଦେଲେ ।)

ଗଙ୍ଗା । ପିତା—ପିତା—ପିତା—

ବୈଦ୍ୟ । ସମସ୍ତ ଶେଷ ହୋଇ ଯାଇଛି, ରାଜକୁମାର । ଚିନ୍ତାର କିଛି ଆଉ ଭୟ ନାହିଁ । ମହାରାଜ ଚଯ ଅନ୍ତ ନାହାନ୍ତି ! ( ଗଙ୍ଗାଧର ରାଜାଙ୍କ ଶବକୁ ଶୁଆଇ ଦେଲେ । )

ଦୃଷ ଓଃ—ମହାରାଜ—(କାନ୍ଦି ପକାଇଲେ ।)

ଉପେ । (କ୍ରୋଧେ) ରାଣୀମା । ଏ ପର୍ଯ୍ୟନ୍ତ ନୀରବ ରହି, ମୁଁ ଆପଣଙ୍କର ଏହି ଅଦ୍ଭୁତ କାର୍ଯ୍ୟ ଦେଖୁଥିଲି । କିନ୍ତୁ, ଏଣିକି ଆଉ ନୀରବ ରହିବା, ମୋ ପକ୍ଷରେ ଅସମ୍ଭବ । ଦେଖା ପୁଣି ଏପରି ଦାନବୀ ହୋଇପାରେ, ରାଣୀମା ? ପୁତ୍ରର ସିଂହାସନ ଲାଭ ଲାଗି, ସ୍ୱାମୀହତ୍ୟା କି ଆପଣଙ୍କ ପରି ନାରୀ ପକ୍ଷରେ ଏକାନ୍ତ କାମ୍ୟ ଥିଲା ? ଛି, ଛି—ନାରୀତ୍ୱର ଏତେ ବଡ଼ ଅବମାନନା ଆପଣ କିପରି କଳ୍ପନା କରି ପାରିଲେ, ଏହା ଦେଖି ମୁଁ ଆଶ୍ଚର୍ଯ୍ୟ ହେଉଛି ।

ମନ୍ତ୍ରୀ । (କ୍ରୋଧେ) ଚୁପ୍ କର, ଜେନାମଣି । ଅବୋଧ ଭାବରେ ସ୍ଥାନ କାଳ ପାତ୍ରର ବ୍ୟବଧାନ ନ ରଖି, ଘୁମୁସରର ରାଣୀଙ୍କୁ, ଏ ଅପବାଦ ଦେବାର ସ୍ପର୍ଦ୍ଧା ତୁମର ଅସହ୍ୟ ।

ଗଙ୍ଗା । ହେଲାମଣି ତ କିଛି ଭୁଲ୍ କହି ନାହାନ୍ତି, ରାଣୀମା ! ରାଜ୍ୟ ଲୋଭରେ, ଆଜି ଘୁମୁସରର ଏତେ ବଡ଼ ସର୍ବନାଶ କରିବାକୁ ଆପଣଙ୍କ ବ୍ୟତୀତ, ଏତେଦୂର ନୀଚସ୍ତରକୁ ଆଉ କିଏ ଯାଇ ପାରେ ?

[ ସହସା ଦଳା ଦୟା ଓ କେତେକ ଅନୁଚରବର୍ଗ ସହ ନୀଳକଣ୍ଠଙ୍କର ପ୍ରବେଶ ।]

ନୀଳ । ଏତେଦୂର ନୀଚସ୍ତରକୁ ଯାଇ ପାରନ୍ତି, ସ୍ୱୟଂ ବକ୍ତା ନିଜେ, କୁମାର ଗଙ୍ଗାଧର ।

ଗଙ୍ଗା । ମୁଁ ଯେ କିଛି ବୁଝିପାରୁ ନାହିଁ, ନୀଳକଣ୍ଠ ! ତୁମେ କଣ କହିବାକୁ ଚାହଁ ? ପରିଷ୍କାରଭାବେ ପ୍ରକାଶ କର ।

ନୀଳ । ମୁଁ କହିବାକୁ ଚାହେଁ ଯେ, ମହାରାଜାଙ୍କୁ ବିଷ ପ୍ରୟୋଗ କରି ହତ୍ୟା କରିବାରେ, ପ୍ରଧାନ ଅଭିଯୁକ୍ତ ଅସାମୀ ତୁମେ ନିଜେ ।

ଗଙ୍ଗା । (ବ୍ୟଙ୍ଗ ହାସ୍ୟ କରି) ଏତେ ବଡ଼ ଦୁଃଖରେ ସୁଦ୍ଧା, ତୁମର ଏ ଅଭିଯୋଗ ଶୁଣି, ମୁଁ ଯେ ହାସ୍ୟ ସମ୍ବରଣ କରିପାରୁ ନାହିଁ ।

ନୀଳ । ପାପୀ ଏହିପରି ଛଳନା ଦେଖାଇ, ଧାର୍ମିକର ଛଦ୍ମବେଶ ଧାରଣ କରିଥାଏ, କୁମାର ।

ଉପେ । କିଏ ପାପୀ ? ପିତୃବ୍ୟ ଗଙ୍ଗାଧର ! ଏତେ ବଡ଼ ମିଥ୍ୟା ଉଚ୍ଚାରଣ କରିବାକୁ, ଆପଣ ଟିକିଏ ସଙ୍କୋଚ ବୋଧ କଲେ ନାହିଁ ? ସିଂହାସନର ଲୋଭ ଆପଣଙ୍କୁ ଆଜି ଏତେଦୂର ବିବେକଶୂନ୍ୟ କରି ଦେଇଛି, ପିତା ?

ନୀଳ । ସାବଧାନ ଉପେନ୍ଦ୍ର ! ନୀଳକଣ୍ଠର କାର୍ଯ୍ୟରେ ବାଧା ଦେବାକୁ ଦୁଃସାହସ କରନା । ଦଳା — ଯାଅ — ଏହି ମୁହୂର୍ତ୍ତରେ କୁମାର ଗଙ୍ଗାଧର ଓ ପାଟଦେଇ ଶକୁନ୍ତଳାଙ୍କୁ ବନ୍ଦୀକର । ମହାମନ୍ତ୍ରୀ — ଆପଣ ଆଜି ରାଜ୍ୟରେ ଘୋଷଣା କରି ଦିଅନ୍ତୁ ଯେ, କୁମାର ନୀଳକଣ୍ଠ ଆଜିଠାରୁ ଘୁମୁସରର ରାଜା । ଯାଅ ଦଳା — ବନ୍ଦୀକର, ଠିଆ ହୋଇ ରହିଲ ଯେ ?

ଉପେ । ବନ୍ଦୀ କରିବା ପୂର୍ବରୁ, ମୁଁ ଜାଣିବାକୁ ଚାହେଁ, ପିତୃବ୍ୟ ଗଙ୍ଗାଧର ଆଉ ପାଠଦେଇ ଶତ୍ରୁଞ୍ଜୟଙ୍କର କି ଅପରାଧ ?

ନୀଳ । ନୀଳକଣ୍ଠ, ତାର କାର୍ଯ୍ୟ ନିମିତ୍ତ ପୁତ୍ର ନିକଟରେ କୈଫିୟତ୍ ଦେବନି, ତାର ରାଜତ୍ୱ ଆରମ୍ଭ କରେ ନା ! ଏ ରାଜ୍ୟର ବର୍ତ୍ତମାନ ରାଜା ମୁଁ । ସୁତରାଂ, ରାଜ୍ୟର ମଙ୍ଗଳ ଲାଗି ମୋ ପକ୍ଷରେ କୁମାର ଗଙ୍ଗାଧରଙ୍କୁ ଆଉ ତାଙ୍କର ପୁତ୍ରଙ୍କୁ ବନ୍ଦୀ କରିବା ଏକାନ୍ତ ପ୍ରୟୋଜନ । ଯାଅ, ଦଳୁ—ବନ୍ଦୀ କର । ଯଦି ବାଧା ଦିଅନ୍ତି, ତେବେ ତରବାରି ବ୍ୟବହାର କରିବାକୁ କୁଣ୍ଠିତ ହୁଅ ନାହିଁ ।

ଗଙ୍ଗା । (ନୀଳକଣ୍ଠର ଆଗକୁ ଆସି) ଅନ୍ତତଃ ମୋ ପକ୍ଷରୁ କୌଣସି ବାଧା ପାଇବାର ଆଶଙ୍କା ତୁମର ନାହିଁ, ନୀଳକଣ୍ଠ ! ଏହି ମୁଁ ତୁମ ସମ୍ମୁଖରେ, ଧୂମ୍ରସରର ପ୍ରଜା ହିସାବରେ ସ୍ୱେଚ୍ଛାରେ ବନ୍ଦୀତ୍ୱ ସ୍ୱୀକାର କରୁଛି । (ହାତ ବଢ଼ାଇ ଦେଲେ) ପାଠଦେଇ ! ସେଠାରେ ଠିଆ ହୋଇ ରହିଛ କାହିଁକି ? ଧୂମ୍ରସରର ନୂତନ ରାଜାଙ୍କର ଆଦେଶ ପାଳନ କର । (ଶତ୍ରୁଞ୍ଜୟ ଆସି ପିତାଙ୍କ ନିକଟରେ ଠିଆ ହେଲେ ।) ବନ୍ଦୀ କର, ଦଳୁ ! ଏଥିଲାଗି ମୋର କୌଣସି ଆପତ୍ତି ନାହିଁ । କିନ୍ତୁ ମୋର ଏତିକି ମାତ୍ର ଦୁଃଖ ନୀଳକଣ୍ଠ ଯେ, ମହାରାଜାଙ୍କର ଜ୍ୟେଷ୍ଠ ପୁତ୍ର ମୁଁ, ପିତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସ୍ୱହସ୍ତରେ ଶେଷ କରିବାର ସୁଯୋଗ ମୁଁ ପାଇ ପାରିଲି ନାହିଁ । ମହାମନ୍ତ୍ରୀ ବୃଷକେତୁ—ମୋର ଅନୁରୋଧ—ପିତାଙ୍କର ଏହି ଶବର ଯେପରି ଅମର୍ଯ୍ୟାଦା ନ ହୁଏ ।

ନୀଳ । ସେ ଚିନ୍ତା କରିବାର ତୁମର ଆବଶ୍ୟକ ନାହିଁ, ଗଙ୍ଗାଧର ! ଏ ରାଜ୍ୟର ରାଜା ହିସାବରେ, ସେ ଦାୟିତ୍ୱ ମୋର । ଯାଅ, ବନ୍ଦୀକର ଦଳୁ ! ନୀରବରେ ଠିଆ ହୋଇ କଣ ଦେଖୁଛ ?

[ସଙ୍ଗେ ସଙ୍ଗେ ଦଳୁ ଓ ତାର ସଙ୍ଗୀମାନେ, ଗଙ୍ଗାଧର ଓ ଶତ୍ରୁଞ୍ଜୟଙ୍କୁ ବନ୍ଦୀ କଲେ । ]

ଉପେ । (ଅଶ୍ରୁପୂର୍ଣ୍ଣ ଚକ୍ଷୁରେ) ଏ କଅଣ କରୁଛନ୍ତି, ପିତା ? ପୁଣ୍ୟାତ୍ମା ମହାରାଜ ଧନଞ୍ଜୟଙ୍କର ଆତ୍ମା ଯେ ଏ ପର୍ଯ୍ୟନ୍ତ ଏ କକ୍ଷ ତ୍ୟାଗ କରି, ଏ

ଦୁର୍ଗର ବାହାରକୁ ଯାଇ ପାର ନାହିଁ । ଅନ୍ତତଃ ତାଙ୍କର ସ୍ୱର୍ଗୀୟ ଆତ୍ମାକୁ ସମ୍ମାନ ଦେଖାଇବା ନିମନ୍ତେ,ବର୍ତ୍ତମାନ ଲାଗି ଏ ଜଘନ୍ୟ ଆଦେଶ ପ୍ରତ୍ୟାହାର କରନ୍ତୁ, ପିତା ! ଏ ବର୍ବରତାର ନାମ ଯେ ରାଜତ୍ୱ ନୁହେଁ ।

ନୀଳ । (କ୍ରୋଧେ) ସ୍ତବ୍ଧ ହୁଅ, ଜେମାମଣି ! ଶୁଣିଛ, ତୁମେ ଜଣେ କବି ମାତ୍ର । କିନ୍ତୁ ଏ ରାଜନୀତି ! ଏଥିରେ ତୁମର ହସ୍ତକ୍ଷେପ ନ କରିବାହିଁ ଉଚିତ । ଉଦାରତା ଦେଖାଇବାର ସ୍ଥାନ ଏ ନୁହେଁ,ଅନ୍ୟତ୍ର । ମନେରଖ, ଏହା ରାଜା ନୀଳକଣ୍ଠଙ୍କର ରାଜତ୍ୱର ସୂଚନା ମାତ୍ର । ଏଥିରେ କାହାର କୌଣସି ପ୍ରତିବାଦ ଶୁଣିବାକୁ, ମୋର ଧୈର୍ଯ୍ୟ ଓ ସମୟର ଏକାନ୍ତ ଅଭାବ । ଯାଅ ଦଳପତି, ବନ୍ଦୀମାନଙ୍କୁ କାରାକକ୍ଷକୁ ନେଇଯାଅ ।

ମଣ୍ଡା । (ଆନନ୍ଦରେ) ଜୟ ରାଜା ନୀଳକଣ୍ଠଙ୍କର ଜୟ ।

ଉପେ । ଉତ୍ତମ ! ମହାରାଜ ଧନଞ୍ଜୟଙ୍କର ମୃତ୍ୟୁର ଅବ୍ୟବହିତ ପରେ ତାଙ୍କର ପ୍ରିୟତମା ମହିଷୀ ମଣ୍ଡାଦେବୀ ଯେ, ତାଙ୍କ ପୁତ୍ରର ସିଂହାସନ ଲାଭରେ, ଏତେଦୂର ଗଭୀର ଆନନ୍ଦ ଉପଭୋଗ କରି ପାରନ୍ତି, ଏହା ଆଜି ମୋର ଏକ ଅଭିନବ ଅଭିଜ୍ଞତା । କିନ୍ତୁ ଦୁନିଆଁରେ ଗୀତର ଏହି ଅଦ୍ଭୁତ ବ୍ୟତିକ୍ରମକୁ, ଭଗବାନ ସହ୍ୟ କରିପାରିବେ ବୋଲି ଭାବିଛନ୍ତି, ରାଣୀମା ? ଅସମ୍ଭବ ! ଆଉ ପିତା ! ନବଲବ୍ଧ ରାଜତ୍ୱର ଗର୍ବରେ ଆପଣ ଆଜି ହିତାହିତ ଜ୍ଞାନଶୂନ୍ୟ । କିନ୍ତୁ ମୋର ବଡ଼ ଦୁଃଖ ଯେ, ଆପଣ ରାଜା ହୋଇ ସୁଦ୍ଧା, ପିତୃତ୍ୱର ସର୍ବଶ୍ରେଷ୍ଠ ଗୌରବରୁ ଆଜି ବଞ୍ଚିତ ହେଲେ । ସେ ଗୌରବ କଣ ଜାଣନ୍ତି, ପିତା ? ତାହା ଉପେନ୍ଦ୍ରର ଅଚଳା ପିତୃଭକ୍ତି । ସୁତରାଂ ମୋତେ ବିଦାୟ ଦିଅନ୍ତୁ, ପିତା ! ଘୁମୁସର ରାଜ୍ୟରେ ମୋର ସ୍ଥାନ ଆଉ ନାହିଁ । (କୌଣସି ଉତ୍ତରର ଅପେକ୍ଷା ନ ରଖି, ମୃତ ମହାରାଜାଙ୍କୁ ନମସ୍କାର କରି, ତାଙ୍କର ପୋଥିଗୁଡ଼ିକ ନେଇ ଦ୍ରୁତପଦରେ ସେଠାରୁ ବାହାରି ଗଲେ । )

ମଣ୍ଡା । ଦେଖୁଛ, ଜେମାମଣି ତୁମର ପୁତ୍ର ନୁହନ୍ତି, ନୀଳକଣ୍ଠ ! ତୁମର ଶତ୍ରୁ ଶତ୍ରୁ । ଯାଅ ଦଳପତି, ବନ୍ଦୀମାନଙ୍କୁ କାରାକକ୍ଷକୁ ନେଇଯାଅ ।

[ ଦଳପତି ଓ ତାର ଅନୁଚରବର୍ଗ ବନ୍ଦୀମାନଙ୍କୁ ନେଇଗଲେ ।

## ଷଷ୍ଠ ଦୃଶ୍ୟ

[ କୁଲଡ଼ ରାଜପଥର ଜନସମାଗମ ପୂର୍ଣ୍ଣ ଏକାଂଶ । ସମସ୍ତ-ପ୍ରଭାତ । ରାଜପଥର ଏକ ପାର୍ଶ୍ୱରେ ଛଦ୍ମବେଶୀ ଦରିଦ୍ର ଭିକ୍ଷୁକଟିଏ ପ୍ରାଣସ୍ପର୍ଶୀ ଭାବରେ ଗାଉଥିଲା, କବି ଉପେନ୍ଦ୍ର ବିରଚିତ ଗୋଟିଏ ଜଣାଣ । କଣ୍ଠ ତାର ଦରଦଭରା । ସଙ୍ଗୀତର ଧ୍ୱନିକୁ ଅନୁସରଣ କରି ଦୁଇଜଣ ନାଗରିକ ସେଠାରେ ପ୍ରବେଶ କଲେ ଓ ନୀରବରେ ସଙ୍ଗୀତ ଶୁଣିଲେ । ଭିକ୍ଷୁକ ଅନ୍ୟ କେହି ନୁହେଁ,—ଧର୍ମକୋଠ ରାଜ୍ୟର ଛଦ୍ମବେଶୀ ଗୁପ୍ତଚର । ]

ଭିକ୍ଷୁକ । (ଗାଉଥିଲା)

ମାନ ଉଦ୍ଧାରଣ                    କର ହେ ତାରଣ,
ଶରଣ ମୁଁ ତୁମ୍ଭ ପାଦତଳେ ।
ଅନାଥର ନାଥ ନୀଳଗିରି ନାଥ, ଜଗନ୍ନାଥ ନାମ ନୀଳାଚଳେ,
ମହୋଦଧି କୂଳେ କଳ୍ପବଟ ମୂଳେ, ବିଜେ କରିଛ ବଡ଼ ଦେଉଳେ ।
କସ୍ତି ଦ୍ୟାକୁ ଗଲ ବାନା ବନାଇଲ, କାଣ୍ଡ ଯେ ବାନ୍ଧିଲ ସିନ୍ଧୁଜଳେ,
ଲଙ୍କାରେ ରାବଣ ବଧିଲ ଆପଣ, ଜନକ ନନ୍ଦିନୀ ସୀତା ଛଳେ ।
ବନ ପୋଡ଼ କାଳେ ଘୋର ଦାବାନଳୁ ଉଦ୍ଧରି ରଖିଲ ବ୍ରଜବାଳେ,
ଭଣେ ଉପଇନ୍ଦ୍ର କବିକୁଳ ଚନ୍ଦ୍ର, ଶରଣ ମୁଁ ତୁମ୍ଭ ପାଦତଳେ ।

(ଗୀତ ଗାଇ ସାରି, ଭିକ୍ଷୁକ ନାଗରିକଙ୍କର ପାଖକୁ ଆସି କହିଲା,)

ଭିଖାରୀକୁ କିଛି ଦୟା କରନ୍ତୁ, ବାବା ?

୧ମ ନାଗ । ତୁମର ଘର କେଉଁଠାରେ, ଭିଖାରି ?

ଭିକ୍ଷୁକ । ଏ କଥା କାହିଁକି ପଚାରୁଛନ୍ତି, ସାଆନ୍ତେ ?

୧ମ ନା । ତୁମକୁ ତ କେବେ ଆମେ ଏ କୁଲଡ଼ ଗଡ଼ରେ ଦେଖି ନାହୁଁ ?

ଭିକ୍ଷୁ । କେତେ ଅନ୍ଧ, କେତେ ଭିଖାରୀ ଅଛି, ଏ ବୃନ୍ଦାବନ ଗଡ଼ରେ ବୁଲୁଛନ୍ତି, ସା'ନ୍ତେ ! ସମସ୍ତଙ୍କୁ କଣ ଆପଣ ଚିହ୍ନନ୍ତି ?

୨ୟ ନା । ତା' ଅବଶ୍ୟ ସତକଥା । ସମସ୍ତଙ୍କୁ ଆମେ ଜାଣୁ ନାହିଁ । କିନ୍ତୁ, ଏହି ଗଡ଼ର ବାସିନ୍ଦା ଆମେ । କେନାମଣିଙ୍କର ଜଗନ୍ନାଥ ଜଣାଣଟିକୁ ଏମିତି ମଧୁର ଭାବରେ ଗାଉଥିବା କୌଣସି ଭିଖାରୀକୁ ଆମେ ଏ ପର୍ଯ୍ୟନ୍ତ ଦେଖି ନ ଥିଲୁଁ । ସେଥିଲାଗି, ତୁମର ଘର କେଉଁଠି ବୋଲି ପଚାରିଲୁ ।

ଭିକ୍ଷୁ । ମୋ ଘର ଏଠାରୁ ଅନେକ ଦୂର, ସା'ନ୍ତେ । ଧରାକୋଟ ରାଜ୍ୟର ଦୀନ ଦରିଦ୍ର ପ୍ରଜାଟାଏ ମୁଁ । ପେଟ ପୋଷିବା ଲାଗି ମୋର ଅନ୍ୟ କିଛି ସମ୍ବଳ ନାହିଁ ବୋଲି, ଏହିପରି ବାରଦ୍ୱାରରେ ଗୀତ ଗାଇ ଭିକ ମାଗିବା ମୋର ପେଷା ।

୧ମ ନା । ଧରାକୋଟ ରାଜ୍ୟରେ ତୁମର ଘର ? ତାହେଲେ, ତୁମେ ଆମ ରାଜ୍ୟର କେନାମଣିଙ୍କର ଏ ଜଣାଣ ଗୀତ ଜାଣିଲ, କିପରି ?

ଭିକ୍ଷୁ । କେନାମଣି କିଏ ସାଆନ୍ତେ, ମୁଁ ତ ବୁଝିପାରୁ ନାହିଁ ? ମୁଁ ତ ତାଙ୍କର ଜଣାଣ ଗାଇ ନାହିଁ । ଏ ତ କବି ଉପେନ୍ଦ୍ର ଭଞ୍ଜଙ୍କର ଗୀତ ।

୨ୟ ନା । ସେହି ଉପେନ୍ଦ୍ରଭଞ୍ଜ, ଆମ ଏହି ଘୁମୁସର ରାଜ୍ୟର ନୂଆ ରଜାଙ୍କର ବଡ଼ପୁଅ କେନାମଣି । ତାଙ୍କ ଗୀତ,ତୁମେ ଧରାକୋଟ ରାଜ୍ୟର ଲୋକ ହୋଇ, ଜାଣିଲ କିପରି, ଭିଖାରି ?

ଭିକ୍ଷୁ । କାହିଁକି, ସାଆନ୍ତେ ! ଉପେନ୍ଦ୍ରଭଞ୍ଜଙ୍କର ଛାନ୍ଦ, ଗୀତ,ଚଉପଦୀ, ଚଉତିଶା, ଆମ ରାଜ୍ୟର ବହୁତ ଲୋକ ତ ଜାଣନ୍ତି । ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ କହନ୍ତି ଯେ, ଉପେନ୍ଦ୍ରଭଞ୍ଜ ଜଣେ ଖୁବ୍ ବଡ଼ ବିଖ୍ୟାତ କବି । କିନ୍ତୁ ସେ ଯେ ଆପଣଙ୍କର ଘୁମୁସର ରାଜ୍ୟର ରାଜକୁମାର, ତାହା ତ ମୋତେ ଜଣା ନ ଥିଲା, ସାଆନ୍ତେ । ଥରେ ତାଙ୍କର ଦର୍ଶନ ଟିକିଏ ମିଳି ପାରିବ ?

୧ମ ନା । ତାଙ୍କ ଦର୍ଶନ ତୁମେ ଅକ୍ଳେଶରେ ପାଇ ପାରିବ । କିନ୍ତୁ ତାଙ୍କୁ ଦର୍ଶନ କରିବାକୁ ତୁମେ ଏତେ ବ୍ୟସ୍ତ କାହିଁକି ?

ଭକ୍ତ । ବ୍ୟସ୍ତ କିଛି ନୁହେଁ, ସାଆନ୍ତେ ! ତେବେ ଭିକାରି ଲୋକ ମୁଁ— ରାଜାଙ୍କ ଆଗରେ ତାଙ୍କର ଗୀତଟିଏ ଗାଇଲେ, ବୋଧହୁଏ ଖୁସି ହୋଇ ସେ କିଛି ବେଶୀ ଭିକ୍ଷା ଦିଅନ୍ତେ । ଦରିଦ୍ରର ଆଶା ତ ! ତା ପର, ଆମ ଦେଶର ଜଣେ ଏତେବଡ଼ ବିଖ୍ୟାତ କବି ଯେ ଏ ରାଜ୍ୟର ରାଜାଙ୍କର ପୁତ୍ର, ଏ କଥା ଶୁଣି, ତାଙ୍କୁ ଥରେ ଦର୍ଶନ କରି, ତାଙ୍କର ପାଦଧୂଳି ନେବାକୁ ମୋର ଖୁବ୍ ଇଚ୍ଛା ।

୧ମ ନା । ତା ହେଲେ ଭିକାରି ! ତୁମେ ରାଜବାଟୀ ଆଡ଼କୁ ଯାଅ । ସେଠାରେ ଆଜି ନୂଆରାଜା, ଗାଦିରେ ବସୁଥିବାରୁ, ଖୁବ୍ ଉତ୍ସବର ଧୂମ୍ ଚାଲିଛି । ବହୁତ ଭିକାରିଙ୍କୁ ବହୁତ କିଛି ଦାନ ଦିଆଯାଉଛି । ସେଠାରେ ତୁମେ ହୁଏତ କେନାମଣି ଉପେନ୍ଦ୍ରଙ୍କୁ ଦେଖି ପାରିବ, ଆଉ ଯଥେଷ୍ଟ ଭିକ୍ଷା ମଧ୍ୟ ପାଇ ପାରିବ ।

ଭକ୍ତ । ନୂଆରାଜା କାହିଁକି, ସାଆନ୍ତେ ? ଆଗରୁ କଣ ଏ ରାଜ୍ୟରେ କେହି ରାଜା ନ ଥିଲେ ?

୨ୟ ନା । ପୁରୁଣା ବୁଢ଼ାରାଜା ଧନଞ୍ଜୟ ଭଞ୍ଜଙ୍କୁ କାଲି ତାଙ୍କ ରାଣୀ ଓ ତାଙ୍କ ପୁଅ ନୀଳକଣ୍ଠ ପଗ ବିଷଦେଇ ମାରି ପକାଇଲେ । ତେଣୁ,ଆଜି ସେହି ନୀଳକଣ୍ଠ ପୁଣି ନୂଆରାଜା ହୋଇ ଗାଦିରେ ବସୁଛନ୍ତି । ତୁମେ ଯେଉଁ କବି ଉପେନ୍ଦ୍ରଭଞ୍ଜଙ୍କ କଥା କହୁଛ, ସେ ହେଉଛନ୍ତି, ଏହି ନୂଆରାଜା ନୀଳକଣ୍ଠଙ୍କ ପୁଅ ।

ଭକ୍ତ । (ଆଶ୍ଚର୍ଯ୍ୟେ) ରାଜ ରାଜୁଡ଼ାରେ ପୁଣି ଏପରି କଥା ସବୁ ଘଟେ ? ବୁଢ଼ାରଜାଟାକୁ ବିଷ ଦେଇ ମାରି ପକାଇଲେ ! ଛି—ଛି—ନୂଆରଜା, ତା ହେଲେ ତ ଖୁବ୍ ଭଲ ଲୋକ ନୁହନ୍ତି, ସାଆନ୍ତେ ?

୨ୟ ନା । ଭଲଲୋକ !! ହେଁ—ତାଙ୍କପରି ପାପୀ ଏ ଦୁନିଆଁରେ ନଥିବେ,ଭିକାରି ! ସେ ରାଜା ହେବାରେ ଗଡ଼ର ପ୍ରଜା ସବୁ ଖାଲି ଭୟରେ ଥରୁଛନ୍ତି । ରାଜା ହେଲେ ସିନା, କିନ୍ତୁ ତାଙ୍କର ଅତ୍ୟାଚାର ଏଣିକି ଆଉ ସହିହେବ ନାହିଁ । ବୁଢ଼ାରଜା ଥିଲେ ଦେବତା ! ଏ ତ ରାଜା ନୁହନ୍ତି,

କାଳସର୍ପ । ଦେଖୁନାହଁ — ଏତେ ବଡ଼ ଉତ୍ସବ ଦିନଠାରେ, ଗଡ଼ର ପ୍ରଜା ଆମ୍ଭେମାନେ, ଅଥଚ ସେ ଆଡ଼କୁ ଯିବାକୁ ଆମ ପାଦ ଚଳୁ ନାହିଁ ।

୧ମ ନା । ଛାଡ଼ ! ଆମର ସେ କଥାରୁ କଣ ମିଳିବ, ଭାଇ ! ଯିଏ ଯାହା କରିବ, ଭଗବାନ ତାର ଫଳ ଦେବେ । ଯାଅ ଭିଖାରି, ଗଡ଼ରୁ ବହୁତ ଭିକ୍ଷା ମିଳିବ ତୁମକୁ ।

ଭିକ୍ଷୁ । ନା, ସାନ୍ତେ; ଆପଣଙ୍କଠାରୁ ଯାହା ଶୁଣିଲି, ସେଥିରେ ଏ ଭିଖାରିର ପେଟ ପୂରିଗଲାଣି । ଗଡ଼କୁ ଯିବା ଆଉ ମୋର ଦରକାର ନାହିଁ। ଏପରି ରାଜାଠାରୁ ଦାନ ନେଲେ, ତାହା ମୋ ଭଳି ଜଣେ ଭିଖାରିର ମୁଦ୍ଧା ହଜମ ହେବ ନାହିଁ । ଏ ରାଜ୍ୟରେ ରହିବା ମଧ୍ୟ ପାପ । ମୁଁ ବାହାରିଲି, ସାନ୍ତେ ! ଜୁହାର ! (ଗୀତ ଗାଇ ଗାଇ ଚାଲିଗଲା ।)

"ଲକ୍ଷେ ଯୋଜନରେ ଗଜ ଡାକ ଦେଲା, ତା ଡାକ ଶୁଣିଲ ପଣାଖେଳେ,
ମାରକଣ୍ଡ ଋଷି ଯାଉଥିଲେ ଭୃଷି, ଉଦ୍ଧରି ଧରିଲ ବାମ କରେ ॥
ଯୁଧିଷ୍ଠିର ବୋଲେ ହସ୍ତିନାକୁ ଗଲ, ଭୋଜନ କଲ ବିଦୁର ଘରେ,
କୁରୁ ସଭାତଳେ ପାଞ୍ଚାଳୀ ଗଳିଲା, କୋଟି ବସ୍ତ୍ର ଦେଲ ଅବହେଳେ ॥

୧ମ ନା । କାହା ପାଖରେ କି କଥା ଗପିଯାଉଛ ତୁମେ, ମଙ୍ଗରାଜେ ? କିଏ ଶୁଣିଲେ, ଆଉ ଏ ମୁଣ୍ଡ ରହିବ ? ଆମର ପରି ଗରିବ ପ୍ରଜା ମୁଣ୍ଡ ।

୨ୟ ନା । ଅରେ, ଏ କଥା ତ କିଛି ଲୁଚା ଛପା ନୁହେଁ । ଘୁମୁସର ରାଜ୍ୟର ସମସ୍ତେ ଜାଣିଲେଣି । ଆମ୍ଭେ କହିଲେ,କଣ ଦୋଷ ହୋଇଗଲା ?

୧ମ ନା । ଦୋଷ କଥା କହୁନାହିଁ ଯେ, ଆଜି କାଲି ଦିନ ବଡ଼ ଖରାପ, ମଙ୍ଗରାଜେ ! ଦେବତା ଭଳିଆ ବୁଢ଼ାରଜା ଧନଞ୍ଜୟ ଯେତେବେଳେ ତିଷ୍ଠି ପାରିଲେ ନାହିଁ, ସେତେବେଳେ ତୁମେ ଆମେ କେଉଁ ଛାର !! ସୁତରାଂ, ଚୁପ୍‌ଚାପ୍ ରହିବା ସବୁଠାରୁ ଭଲ । କିନ୍ତୁ ଭାଇ, ମୋର କାହିଁକି ସନ୍ଦେହ ହେଉଛି, ସେ ଭିଖାରିଟା ଯେମିତ ପ୍ରକୃତରେ ଭିଖାରି ନୁହେଁ ।

୨ୟ ନା । ତୋର ଖାଲି ସବୁଥିରେ ସନ୍ଦେହ, ଅବିଶ୍ୱାସ । ଚାଲ୍ ଚାଲ୍, ଦେଖୁଛୁ, ତୋ ସାଥିରେ ରହିଲେ, ମୁଁ ନିଜକୁ ନିଜେ ମୁଦ୍ଧା ଅବିଶ୍ୱାସ କରି ବସିବି । (କହୁଁ କହୁଁ ନାଗରିକ ଦୁଇଜଣ ପ୍ରସ୍ଥାନ କଲେ ।)

# ସପ୍ତମ ଦୃଶ୍ୟ

[ କୁମ୍ଭକ ଦୁର୍ଗ ମଧ୍ୟସ୍ଥ ବନ୍ଦୀଶାଳାର ଅର୍ଗଳୀବଦ୍ଧ ଦ୍ୱାରର ସମ୍ମୁଖଭାଗ । ସମୟ—ଅପରାହ୍ଣ ! ଦୁଇଜଣ ସଶସ୍ତ୍ର ସୈନିକ ବନ୍ଦୀଶାଳାର ତତ୍ତ୍ୱାବଧାନରେ ନିଯୁକ୍ତ । ସେମାନଙ୍କର ମୁଖରେ ଫୁଟି ଉଠୁଛି, ବେଦନାର ସୁସ୍ପଷ୍ଟ ଛାୟା । ନୀରବରେ ସେମାନେ ପଦଚାରଣା କରୁଥିଲେ । ବନ୍ଦୀଶାଳା ମଧ୍ୟରେ ବସି ରହିଥିଲେ, କୁମାର ଗଙ୍ଗାଧର ଆଉ ତାଙ୍କର ପୁତ୍ର ଶତ୍ରୁଞ୍ଜୟ । ବାହାରୁ ଯେ କୌଣସି ଲୋକ, ସେମାନଙ୍କୁ ସ୍ପଷ୍ଟରୂପେ ଦେଖି ପାରିବ । ]

ଗଙ୍ଗା । ମୋର ନିଜ ଲାଗି ମୁଁ ଆଦୌ ଚିନ୍ତିତ ନୁହେଁ, ପାଟଦେଈ ! ମୋର ସମସ୍ତ ପୁଞ୍ଜୀଭୂତ ଭାବନା ଆଜି କେବଳ ମୋର ପୁତ୍ରବଧୂ ମାଧବିକାଙ୍କ ଲାଗି । ରାଜଜେମା ସେ, ପୁଣି ଗର୍ଭବତୀ ।

ଶତ୍ରୁ । ସେ ଲାଗି ଆଉ ବୃଥା ଭାବନା କରି ଲାଭ କ'ଣ, ପିତା ? ମାଧବିକା ମଧ୍ୟ ରାଜା ନୀଳକଣ୍ଠଙ୍କର ଅତ୍ୟାଚାରରୁ ବାଦ୍ ପଡ଼ିବେ ନାହିଁ । ବିଶେଷତଃ, ମାଧବିକାଙ୍କର ଗର୍ଭସ୍ଥ ଶିଶୁ ପ୍ରତି ତାଙ୍କର ଆଶଙ୍କା ଥିବା ତ ସ୍ୱାଭାବିକ ।

ଗଙ୍ଗା । (ଚମକି ପଡ଼ି) ପାଟଦେଈ, ଏହା କି ସମ୍ଭବ ? ଏତେ ବଡ଼ ବୀଭତ୍ସ କଳ୍ପନା କି ନୀଳକଣ୍ଠ ମନରେ ସ୍ଥାନ ଦେଇ ପାରିବେ ?

( ଉପେନ୍ଦ୍ରଙ୍କର ପ୍ରବେଶ )

ଉପେ । କାହିଁକି ପାରିବେ ନାହିଁ, ପିତୃବ୍ୟ ? ଅତ୍ୟାଚାରୀ ନରାଧମ ପକ୍ଷରେ, ଦୁନିଆରେ ଅସମ୍ଭବ କଳ୍ପନା ବୋଲି ତ କିଛି ନାହିଁ ?

ଗଙ୍ଗା । (କାର୍ଯ୍ୟ ଦ୍ୱାର ନିକଟକୁ ଆସି) ଜ୍ୱେନାମଣି ! ତେବେ ସତେ ସତେ କି ନୀଳକଣ୍ଠ ମୋର ଏତେ ବଡ଼ ସର୍ବନାଶ ସାଧନ କରିଦେବେ ? ଗଙ୍ଗାଧରର ବଂଶ ଯେ ତାହାହେଲେ ଲୋପ ପାଇଯିବ ?

ଉପେ । ଅଶ୍ୱସ୍ତ ହେଉନ୍ତୁ, ପିତୃବ୍ୟ ! ଦେବୀ ମାଧବିକା ନିରାପଦରେ ଅଛନ୍ତି । (ସୈନିକଙ୍କୁ ଗୃହିଁ) ସୈନିକ, ମୁଁ ଅନୁରୋଧ କରୁଛି, ତୁମ୍ଭେମାନେ କିଛି ସମୟ ବାହାରେ ଅପେକ୍ଷା କର । ବନ୍ଦୀମାନଙ୍କର ଦାୟିତ୍ୱ ମୁଁ ଗ୍ରହଣ କରୁଛି । (ସୈନିକ ଦୁଇଜଣ ଶିରା ଆପତ୍ତିରେ ଉପେନ୍ଦ୍ରଙ୍କୁ ଅଭିବାଦନ କରି ବାହାରକୁ ଗଲେ ।) ପିତୃବ୍ୟ, ଆପଣଙ୍କର ସନ୍ଦେହ ଅମୂଳକ ନୁହେଁ । ଅତ୍ୟାଗୃହୀ ପିତା ଆପଣଙ୍କ ବଂଶର ଶେଷ ଚିହ୍ନ ସୁଦ୍ଧା ଲୋପ କରିବାକୁ ଦୃଢ଼ସଂକଳ୍ପ । ଏ ସୂଚନା ମୁଁ ଯଥା ସମୟରେ ପାଇ ପାରିଥିଲି । ତେଣୁ କାଲି ରାତିରେ, କେତେକ ବିଶ୍ୱସ୍ତ ଅନୁଚରଙ୍କ ସହିତ, ମୁଁ ଦେବୀ ମାଧବିକାଙ୍କୁ ଅତି ଗୋପନରେ ନାଲେଶ୍ୱ ମୃଗାଙ୍କ ସର୍ଦ୍ଦାରଙ୍କ ନିକଟକୁ ପଠାଇ ଦେଇ ସାରିଛି । ସେଠାରେ ସେ ଯେପରି ନିର୍ବିଘ୍ନରେ ଆଶ୍ରୟ ପାଇ ପାରିବେ, ମହାମନ୍ତ୍ରୀ ବୃଷଭାନୁଙ୍କ ସାହାଯ୍ୟରେ, ସେ ବନ୍ଦୋବସ୍ତ ମଧ୍ୟ କରି ଦେଇଛି । ସୁତରାଂ ଆପଣ ନିଶ୍ଚିନ୍ତ ରହନ୍ତୁ । ମାଧବିକାଙ୍କର ଆଉ କୌଣସି ଆଶଙ୍କା ନାହିଁ ।

ଗଙ୍ଗା । (ଅଶ୍ରୁନେତ୍ରରେ) ଜ୍ୱେନାମଣି—ତୁମେ ଏତେ ମହତ୍ ? ଏହି ମହତ୍ତ୍ୱର ପ୍ରତିଦାନ ଯେ ମୁଁ ଆଜି କିଛି ଦେଇ ପାରିବି ନାହିଁ, ବତ୍ସ ! କଣ ଅଛି ମୋର ! କେବଳ ବନ୍ଦୀ ଗଙ୍ଗାଧରର ସ୍ୱର୍ଗୀୟ ଆଶୀର୍ବାଦ ଗ୍ରହଣ କର, ବାବା !

ଉପେ । (କାନ୍ଧ ପକାଇ) ଲଜ୍ଜାରେ ମୋର ମସ୍ତକ ଯେ ଅନ୍ଧ ଅବନତ ହୋଇ ଯାଉଛି, ପିତୃବ୍ୟ ! ମୋତେ କ୍ଷମା କରନ୍ତୁ । ଏତେ ପାପର ଭାର ବୋଧହୁଏ ପିତା ଏକାକୀ ସହ୍ୟ କରି ପାରିବେ ନାହିଁ ।

ଗଙ୍ଗା । ମୁଁ ସମସ୍ତ ବୁଝି ପାରିଛି, ଜ୍ୱେନାମଣି ! ଆମ ଦୁଇଜଣଙ୍କର ହତ୍ୟା ମଧ୍ୟ ଅତି ନୀଳକଣ୍ଠଙ୍କର ଏକାନ୍ତ ପ୍ରୟୋଜନ ! ଦେବୋପମ ବୃଦ୍ଧ ପିତାଙ୍କର ହତ୍ୟାରେ ଯେଉଁ ରାଜତ୍ୱର ଆରମ୍ଭ ହୋଇଛି, ତାହା ଏତେ

ଅଳ୍ପ ହତ୍ୟାରେ ସନ୍ତୁଷ୍ଟ ହେବ ନାହିଁ । କିନ୍ତୁ ଏଥିଲାଗି ମୋର କୌଣସି ଆକ୍ଷେପ ନାହିଁ, ଉପେନ୍ଦ୍ର ! ଏ ଜୀବନର ଶେଷ, ଯେତେ ଶୀଘ୍ର ହୁଏ, ସେତେ ମଙ୍ଗଳ ।

ଉପେ । ଭାଇ, ଘାଟଦେଉ ! ମୋତେ କ୍ଷମା କର ! ହତଭାଗ୍ୟ କେନାମଣି ବୋଧହୁଏ ତୁମ୍ଭଙ୍କୁ ଆଉ ବଞ୍ଚାଇ ରଖି ପାରିବ ନାହିଁ । ତେଣୁ ମୁଁ ଆଜି ତୁମଠାରୁ ଚିର ଜୀବନ ଲାଗି ବିଦାୟ ନେବାକୁ ଆସିଛି । ଦୁର୍ଗର ସମସ୍ତେ ଆନନ୍ଦ ଉତ୍ସବରେ ପ୍ରମତ୍ତ । ମୋର ପ୍ରିୟ ଜନ୍ମଭୂମି ଧୁମୁସର ତ୍ୟାଗ କରିବାର ଏହ ପ୍ରକୃଷ୍ଟ ସମୟ । କେବଳ ଭ୍ରାତୃବଧୂ ମାଧବକାଙ୍କର ସମ୍ବାଦ ଠିକକ ତୁମ୍ଭଙ୍କୁ ଜଣାଇ ଦେଇ, ତୁମର ବ୍ୟଥିତ ପ୍ରାଣରେ କିଛି ମାତ୍ର ସାନ୍ତ୍ୱନା ଦେବାଲାଗି ଏଠାକୁ ଧାଇଁ ଆସିଥିଲି । ସେ କର୍ତ୍ତବ୍ୟ ତ ମୋର ଶେଷ ହୋଇଛି । ସୁତରାଂ, ତୁମେ ପ୍ରଶାନ୍ତ ମନରେ, ତୁମର ପ୍ରିୟ ସଙ୍ଗୀ କେନାମଣିକୁ ଆଜି ବିଦାୟ ଦିଅ, ଭାଇ !

ଶନ୍ତ । (କାନ୍ଦି କାନ୍ଦି) ତୁମର ଆବାଲ୍ୟ-ସଙ୍ଗୀ ଶନ୍ତ୍ରଞ୍ଜୟକୁ ଛାଡ଼ି, ତୁମେ କୁଆଡ଼େ ଯିବ, କେନାମଣି ? କେଉଁ ପ୍ରାଣରେ ମୁଁ ତୁମ୍ଭଙ୍କୁ ବିଦାୟ ଦେବି, ଭାଇ ?

ଉପେ । କିନ୍ତୁ ମୋତେ ଯେ ଯିବାକୁ ହେବ ! ପିତାମହଙ୍କର ଶୋଚନୀୟ ହତ୍ୟାପରେ, ଏ ରାଜ୍ୟର ବାୟୁମଣ୍ଡଳ ପର୍ଯ୍ୟନ୍ତ ଅତି ବିଷାକ୍ତ ହୋଇ ଉଠିଛି । ସୁତରାଂ ଏଠାରେ ରହିଲେ,ମୋର ଶ୍ୱାସରୁଦ୍ଧ ହେବାର ଉପକ୍ରମ ହେବ । ତା ପରେ, ଆଉରି ଏ କରୁଣ ଦୃଶ୍ୟ ଦେଖି, କବି ଉପେନ୍ଦ୍ର ହୁଏତ କେବେ ଉନ୍ମାଦ ହୋଇଯିବ । ମୋତେ ବିଦାୟ ଦିଅ, ଭାଇ ।

ଗଙ୍ଗା । କେନାମଣି—(ଆଉ କିଛି କହି ପାରିଲେ ନାହିଁ, ଅଶ୍ରୁର ରୁଦ୍ଧ ଆବେଗରେ ।)

ଉପେ । ଅସହାୟ ଉପେନ୍ଦ୍ରକୁ କ୍ଷମା କରନ୍ତୁ, ପିତୃବ୍ୟ ! ମୁଁ ଜାଣେ, ଏତେଗୁଡ଼ାଏ ପାପର ଭିତ୍ତିଉପରେ ଗୋଟାଏ ରାଜତ୍ୱ ତିଷ୍ଠି ପାରେ ନା । ଏହାର ଧ୍ୱଂସ ଅନିବାର୍ଯ୍ୟ । ସୁତରାଂ, ଧୁମୁସରର ସେହି ଶୋଚନୀୟ ଚିତ୍ର

ଗୌରବ ଦର୍ଶକରୂପେ, ଏଠାରେ ଆଉ ବେଶୀ କ୍ଷଣ ରହି ପାରିବା, ମୋ ପକ୍ଷରେ ସମ୍ଭବ ନୁହେଁ । ବିଦାୟ ! ( ସେହିଠାରେ ନମସ୍କାର କରି, ଧୀରେ ଧୀରେ ଯେଉଁ ଦିଗରୁ ଆସିଥିଲେ, ସେହି ଦିଗରେ ଚାଲିଗଲେ । ଗଙ୍ଗାଧର ଓ ଶତ୍ରୁଞ୍ଜୟ ବନ୍ଦୀଶାଳା ମଧ୍ୟରୁ ଅଶ୍ରୁନେତ୍ରରେ ସେହି ଦିଗକୁ ଅନାଇ ରହିଲେ । )

ଗଙ୍ଗା । ମହାନୁଭବ କବି ସମ୍ରାଟ । ଭଗବାନ ତୁମର ମଙ୍ଗଳ କରନ୍ତୁ ।

ଶତ୍ରୁ । କୋନାମଣିଙ୍କ ଯିବା ସଙ୍ଗେ ସଙ୍ଗେ, ଘୁମୁସର ଗୌରବର ଶେଷ ଦୀପ୍ତି ମଧ୍ୟ ଆଜିଠାରୁ ମଳିନ ପଡ଼ିଗଲା, ପିତା ! କି ଉଦାର ହୃଦୟ, କି ସରଳ ପ୍ରାଣ !

( ସୈନିକ ଦୁଇଜଣ ପୁଣି ନିଜ ସ୍ଥାନକୁ ଫେରି ଆସିଲେ ।)

ଗଙ୍ଗା । କୋନାମଣି ଚାଲି ଗଲେଣି, ସୈନିକ ?

ସୈନିକ । ହଁ ରାଜକୁମାର । କିନ୍ତୁ ସେ ଆମ୍ଭମାନଙ୍କଠାରୁ ଏପରି କାହିଁ କାହିଁ ବିଦାୟ ନେଇଗଲେ କାହିଁକି, ଆମେ ତ କିଛି ବୁଝି ପାରିଲୁ ନାହିଁ ?

ଗଙ୍ଗା । ତୁମେ ତାହା ବୁଝି ପାରିବ ନାହିଁ, ସୈନିକ ! ଘୁମୁସର ରାଜ୍ୟର ଦେବତା ଯେ ଚିରଦିନ ଲାଗି ଏ ରାଜ୍ୟ ତ୍ୟାଗକରି ଚାଲି ଯାଉଛନ୍ତି ।

[ କେତେକ ଅନୁଚର ଓ ଦୁଇଜଣ ଘାତକ ସହିତ, ଦନ୍ତା କପାଟ ଦିଗରୁ ପ୍ରବେଶ କଲା । ତାର ବେଶ ଭୂଷାରେ ରାଜକୀୟ ପରିବର୍ତ୍ତନ ଫୁଟି ଉଠୁଥିଲା । ]

ଦନ୍ତା । ସୈନିକ, ବନ୍ଦୀଶାଳା ଅର୍ଗଳ ମୁକ୍ତ କର । ( ଜଣେ ସୈନିକ ଦ୍ୱାର ଖୋଲି ଦେଲା ।) ଯାଅ, ଘାତକ । ପ୍ରଥମେ ପାଟଦେଈ ଶତ୍ରୁଞ୍ଜୟଙ୍କୁ ନେଇଯାଇ ନିଜର କର୍ତ୍ତବ୍ୟ ଶେଷ କର । ବାହାରି ଆସନ୍ତୁ, ପାଟଦେଈ !

[ ଏ ଆଦେଶ ଶୁଣି ଗଙ୍ଗାଧର ଓ ଶତ୍ରୁଞ୍ଜୟ ଉଭୟେ ବନ୍ଦୀଶାଳାର ବାହାରକୁ ଆସିଲେ । ଉଭୟଙ୍କର ମୁଖ ମଳିନ । ]

ଗଙ୍ଗା । ଦନ୍ତା—ପାଟଦେଈଙ୍କର ମୃତ୍ୟୁ କଣ ଅଜି ନୀଳକଣ୍ଠଙ୍କର ଏକାନ୍ତ ପ୍ରୟୋଜନ ? ସେ ଯେ ମୋର ଏକମାତ୍ର ପୁତ୍ର ?

ଦନ୍ତା । ଏ ପ୍ରଶ୍ନର କୌଣସି ଉତ୍ତର ଦେବାର ଅଧିକାର ତ ମୋର ନାହିଁ, କୁମାର ! ଦନ୍ତା ଅବଗୃହିତ ଚିତ୍ତରେ ପ୍ରଭୁର ଆଦେଶ ପାଳନ କରୁଛି ମାତ୍ର ।

ଗଙ୍ଗା । କିନ୍ତୁ କହି ପାରିବ ଦନ୍ତା, କେଉଁ ଅପରାଧ ଯୋଗୁଁ, ରାଜା ନୀଳକଣ୍ଠ ପାଟଦେଈଙ୍କର ହତ୍ୟାଲାଗି ଆଜି ଏତେଦୂର ବ୍ୟଗ୍ର ?

ଦନ୍ତା । ଅପରାଧ ? ଘୁମୁସର ଯୁବରାଜଙ୍କର ଜ୍ୟେଷ୍ଠ ପୁତ୍ରଭାବେ କୁଲାଡ଼ ଦୁର୍ଗରେ ଜନ୍ମଗ୍ରହଣ କରିବାଠା ପାଟଦେଈଙ୍କ ପକ୍ଷରେ କଣ କମ୍ ଅପରାଧ ? ଦୁଃଖ କରନ୍ତୁ ରାଜକୁମାର ଯେ, ରାଜପୁତ୍ର ହୋଇ ଜନ୍ମ ନେଲେ, ସମସ୍ତ ସମୟରେ ଏହି ପ୍ରକାର ଅଭିଶପ୍ତ ଜୀବନ ଯାପନ କରିବାକୁ ପଡ଼େ ।

ଗଙ୍ଗା । କିନ୍ତୁ ଦନ୍ତା, ମୁଁ କିମ୍ବା ମୋର ପୁତ୍ର, ସ୍ୱପ୍ନରେ ହେଲେ ସୁଦ୍ଧା କେହିତ ଏହି ସିଂହାସନ ଲାଗି କୌଣସି ଆକାଂକ୍ଷା ପୋଷଣ କରି ନଥିଲୁ ? ତେବେ ଆଜି ଏ ନୃଶଂସ ଆୟୋଜନ କାହିଁକି ? ଏ ଦେଶରେ ଜଣେ ସାଧାରଣ ପ୍ରଜା ହିସାବରେ ମଧ୍ୟ ବଞ୍ଚି ରହିବାର କୌଣସି ଅଧିକାର କି ଅବସର ନାହିଁ ? ଏତେ ବଡ଼ ପ୍ରକାଣ୍ଡ ରାଜ୍ୟରେ ଆମଲାଗି ଖଣ୍ଡେ କୁଟୀର ଆଉ ଦୁଇମୁଠା ଅନ୍ନର ବ୍ୟବସ୍ଥା କରିବାକୁ ରାଜା ନୀଳକଣ୍ଠ କଣ ଏତେ ଦୂର ଅସମର୍ଥ ? ଏତିକି ଦୟା ଯୋଗୁଁ ତାଙ୍କର ବିପୁଳ ଐଶ୍ୱର୍ଯ୍ୟ ତ ଶେଷ ହୋଇ ଯାଇ ନ ଥାନ୍ତା ?

ଦନ୍ତା । କିନ୍ତୁ ଆପଣମାନଙ୍କର ଅସ୍ତିତ୍ୱ ଯୋଗୁଁ, ରାଜା ନୀଳକଣ୍ଠଙ୍କର ନୈଶ ନିଦ୍ରାର ସୁଖସ୍ୱପ୍ନରେ ଯେ ବିରାଟ ବ୍ୟାଘାତ ଜନ୍ମିପାରେ, ଏ କଥା କିପରି ଭୁଲି ଯାଉଛନ୍ତି, କୁମାର ?

ଗଙ୍ଗା । ମୁଁ କିନ୍ତୁ ଏତେଦୂର ଭାବିପାରି ନ ଥିଲି ।

ଦନ୍ତା । ସେଟା ଆପଣଙ୍କର ଦୁର୍ଭାଗ୍ୟ, କିନ୍ତୁ ମୁଁ ନାଗର । ଯାଅ, ଘାତକ, ଅଗ୍ରସର ହୁଅ । (ଘାତକ ପାଟଦେଈଙ୍କ ପାଖକୁ ଗଲ ।)

ଶନ୍ତୁ । (ଛଳ ଛଳ ନେତ୍ରରେ) ପିତା—

ଗଙ୍ଗା । (ରୁଦ୍ଧ କଣ୍ଠରେ) ସେ ମଧୁର ସମ୍ବୋଧନ କରି ମୋତେ ଆଉ ଲଜ୍ଜା ଦଅନା, ବତ୍ସ ! ମୁଁ ଯେ ଏକାନ୍ତ ନିରୁପାୟ । ବଧିର ଶଙ୍କୁନା ! ରାଜାଦେଶ ସମ୍ମୁଖରେ ପିତାପୁତ୍ରର ସମ୍ପର୍କର ଯେ କୌଣସି ମୂଲ୍ୟ ନାହିଁ । ଯାଅ ବତ୍ସ ! ମୁଁ ମଧ୍ୟ ପରେ ପରେ ଯାଉଛି । ଭୟ କଣ ? ପରପାରରେ ପୁଣି ଆମର ପୁନର୍ମିଳନ ହେବ—ଯାଅ ! ( ମୁଖ ଢାଙ୍କିଲେ, ଓ ଖାଣ୍ଡ ପକାଇଲେ ଓ ସେହି ସମୟରେ ଘାତକ ପାଟଦେଈଙ୍କୁ ନେଇଗଲ ।)

ଗଙ୍ଗା । (ପୁଣି ଅଶ୍ରୁ ପୋଛି, ଆଖି ଆଗରେ ପୁତ୍ରକୁ ନ ଦେଖି) ଶନ୍ତୁଜୟ—ପାଟଦେଈ—( ଧାଇଁ ଯାଉଥିବା ବେଳେ, ଦନ୍ତା ବାଧା ଦେଲ ।)

ଦନ୍ତା । ଆପଣ ଯେ ବନ୍ଦୀ—ଏ କଥା ଭୁଲିଗଲେ କି କୁମାର ?

ଗଙ୍ଗା । ଠିକ୍ କଥା । ମୋର ଏ କ୍ଷଣିକ ଦୁର୍ବଳତାକୁ କ୍ଷମା କର, ଦନ୍ତା ! (ହଠାତ୍ ଦନ୍ତା ନିକଟରେ ଜାନୁପାତପୂର୍ବକ) ଘୁମୁସରର ଯୁବରାଜ ମୁଁ—ଆଜି ନତଜାନୁ ହୋଇ ତୁମଠାରେ ପ୍ରାର୍ଥନା କରୁଛି, ଦନ୍ତା ! ଶୀଘ୍ର ମୋତେ ମୁକ୍ତି ଦିଅ । ପୁତ୍ରର ସଙ୍ଗେ ସଙ୍ଗେ, ଏହି ହତଭାଗ୍ୟ ପିତାର ଜୀବନ ମଧ୍ୟ ଶେଷ କରିଦିଅ ।

(ସହସା ରାଜୋଚିତ ପୋଷାକରେ ନୀଳକଣ୍ଠଙ୍କର ପ୍ରବେଶ । )

ନୀଳ । ତାର ବନ୍ଦୋବସ୍ତ ଶୀଘ୍ର କରାଯିବ, ଗଙ୍ଗାଧର ! କିନ୍ତୁ, ତତ୍ପୂର୍ବରୁ ପାଟଦେଈଙ୍କର ଗର୍ଭବତୀ ସ୍ତ୍ରୀଙ୍କର ସନ୍ଧାନ ତୁମ୍ଭଙ୍କୁ ଦେବାକୁ ହେବ । ମାଧବକାନ୍ତ କେଉଁଠାରେ ଲୁଗୃଇ ରଖିଛି, ଶୀଘ୍ର ପ୍ରକାଶକର !

ଗଙ୍ଗା । ମୁଁ ତ ଏହାର କୌଣସି ସନ୍ଧାନ ଜାଣେ ନାହିଁ ନୀଳକଣ୍ଠ !

କାଳ । ଶୁଣ ଗଙ୍ଗାଧର ! ସିଂହାସନର ଦାବୀ ତୁମେ ସ୍ୱେଚ୍ଛାରେ ଶତ୍ରୁ ପାଇଁ ତ୍ୟାଗ କରିଛ । ସୁତରାଂ, ତୁମ୍ଭଙ୍କୁ ହତ୍ୟା କରିବାର ଉଦ୍ଦେଶ୍ୟ ମୋର ନାହିଁ । କେବଳ ମାଧବୀଙ୍କର ସନ୍ଧାନ ମୁଁ ତୁମଠାରୁ ପାଇ ପାରିଲେ, ଏହି ମୂହୂର୍ତ୍ତରେ ମୁଁ ତୁମ୍ଭଙ୍କୁ ମୁକ୍ତ କରିଦେବି ।

ଗଙ୍ଗା । କିନ୍ତୁ ମୋର ପିତୃହନ୍ତାଠାରୁ ମୁଁ ତ ଏ ପ୍ରକାର ମୁକ୍ତି ଚାହେଁ ନା, କାଳକଣ୍ଠ ! ମୁଁ ଚାହେଁ ମୃତ୍ୟୁ । ମୋତେ ସେହି ମୃତ୍ୟୁ ଶୀଘ୍ର ଦାନ କର, ରାଜା !

କାଳ । ଉତ୍ତମ ! ସେହି ମୃତ୍ୟୁ ତୁମେ ପାଇବ, କିନ୍ତୁ କୁହ, ମାଧବୀ ବର୍ତ୍ତମାନ କେଉଁଠାରେ ?

ଗଙ୍ଗା । ମୁଁ ତ ଥରେ କହିଛି, ତାଙ୍କର କୌଣସି ସନ୍ଧାନ ରଖି ପାରିବାର ସୁଯୋଗ ପର୍ଯ୍ୟନ୍ତ ମୁଁ ପାଇ ନାହିଁ ।

କାଳ । (କ୍ରୋଧେ) କିନ୍ତୁ, ମୋର ବିଶ୍ୱାସ, ତୁମେହିଁ ଏ ସନ୍ଧାନ ଜାଣ । ଆଉ ତୁମ୍ଭଙ୍କୁ ଏ ସନ୍ଧାନ ଦେବାକୁ ହେବ । ନୋଚେତ୍, ଜାଣିଛ କାଳକଣ୍ଠର ପ୍ରତିହିଂସା କେତେ ଭୀଷଣ ?

ଗଙ୍ଗା । (ବ୍ୟଙ୍ଗ ହାସ୍ୟସହ) ହତଭାଗ୍ୟ ରାଜା ! ହତ୍ୟାଠାରୁ ଆଉ ଅଧିକ ଭୀଷଣ ପ୍ରତିହିଂସା କଣ ତୁମେ କଳ୍ପନା କରିପାର ? ମୁଁ ଯେ ସେଥିପାଇଁ ପ୍ରସ୍ତୁତ ।

କାଳ । ପୁଣି ଥରେ ସାବଧାନ କରି ଦେଉଛି, ଗଙ୍ଗାଧର । ଶୀଘ୍ର ମାଧବୀଙ୍କର ସନ୍ଧାନ ଦିଅ ।

ଗଙ୍ଗା । କାଳକଣ୍ଠ ! ମୁଁ ଯଦି ପ୍ରକୃତରେ ମୋର ମୁହଁବଧୂର ସନ୍ଧାନ ଜାଣିଥାନ୍ତି, ତଥାପି ମୃତ୍ୟୁ ସେ ସମ୍ବାଦ ମୁଁ ତୁମ୍ଭଙ୍କୁ ଦିଅନ୍ତି ନାହିଁ । ଆଉ, ବର୍ତ୍ତମାନ ତ ମୁଁ ଜାଣେ ନା । ସନ୍ଧାନ ଦେବି ବା କପରି ? ମୂର୍ଖ ! ଗୋଟାଏ ପିତାର ହୃଦୟକୁ ଏ ପର୍ଯ୍ୟନ୍ତ ଛିନ୍ନି ପାରିବାର ଶକ୍ତି ଯାର ନାହିଁ, ସେ କେଉଁ ସାହସରେ ଦୁମୁସର ରାଜ୍ୟର ହୃଦୟକୁ ଛିନ୍ନି ପାରିବାର ଆଶା ପୁଣି ପୋଷଣ କରେ ?

ମାଲ । (କ୍ରୋଧେ) ଉତ୍ତମ ! ଦଳ୍ପା—ଯାଅ, ତୁମର କାର୍ଯ୍ୟ ତୁମେ ଏଥର ଶେଷ କର ! (ଇଙ୍ଗିତ ଦେଲେ ।)

ଦଳ୍ପା । ଘାତକ ! ରାଜକୁମାରଙ୍କୁ ଶୀଘ୍ର ଏଠାରୁ ନେଇ ଯାଅ । ଆଦେଶ ଅନୁସାରେ କାର୍ଯ୍ୟ କରିବ । (କହିବା ସଙ୍ଗେ ସଙ୍ଗେ, ଘାତକ ରାଜକୁମାରଙ୍କୁ ସଙ୍ଗରେ ନେଇ ଅଗ୍ରସର ହେଲା ।)

ଗଙ୍ଗା । (ଯାଉଁ ଯାଉଁ) ଟିକିଏ ଅପେକ୍ଷା କର ଘାତକ; ମାଲକଣ୍ଠ ! ତୁମର ଏହି ଆଦେଶ ଲାଗି, ମୁଁ ତୁମ୍ଭଙ୍କୁ ଶତ ଧନ୍ୟବାଦ ଦେଉଛି । ମୁଁ ଏହା ବହୁପୂର୍ବରୁ ଜାଣି ପାରିଥିଲି । ତେଣୁ ମୋର ଆଉ କୌଣସି କ୍ଷୋଭ ନାହିଁ । କେବଳ ଯିବା ପୂର୍ବରୁ, ତୁମଙ୍କୁ ମୁଁ ଆଶୀର୍ବାଦ କରି ଯାଉଛି ଯେ, ଘୁମୁସର ସିଂହାସନର ମର୍ଯ୍ୟାଦା ରକ୍ଷା କରିବାକୁ, ଶୀଘ୍ର ଯେପରି ତୁମର ସଦ୍‌ବୁଦ୍ଧି ଆସେ । ଚାଲ, ଘାତକ ! (ଘାତକ ସାଙ୍ଗରେ ଚାଲିଗଲେ । ଅନୁଚରଗଣ ମଧ୍ୟ ତାଙ୍କର ଅନୁଧାବନ କଲେ । ଦଳ୍ପା ଗଙ୍ଗାଧରଙ୍କର ଯିବା ପଥକୁ ଚାହିଁ ରହିଥିଲା ।)

ମାଲ । କଣ ଦେଖୁଚୁ, ଦଳ୍ପା ?

ଦଳ୍ପା । ମର୍ଯ୍ୟାଦାର ଏକ କରୁଣ ଅଭିବ୍ୟକ୍ତି, ମହାରାଜ !

ମାଲ । (ହସି) ଦେଖୁଛୁ, କୁମାର ଗଙ୍ଗାଧରଙ୍କ ପ୍ରତି ତୋର ଯେ, ଅସୀମ ସହାନୁଭୂତି ! !

ଦଳ୍ପା । (ଚମକି) ମୋର ସରଳ ଭାବ ପ୍ରକାଶରେ କଣ କିଛି ତ୍ରୁଟି ରହିଗଲା ମହାରାଜ ?

ମାଲ । ନା—ତୋର ଏହି ଭୟାନକ ଉପହାସଠାରୁ ମୁଁ ଉପଭୋଗ କରୁଥିଲି ଦଳ୍ପା ! (ସୈନିକଙ୍କୁ ଚାହିଁ) ତୁମ୍ଭେମାନେ ଏଠାରେ କାହିଁକି ? ଯାଅ, ଏହି ମୁହୂର୍ତ୍ତରେ ସେହି ଛିନ୍ନ ମୁଣ୍ଡ ଦୁଇଟିକୁ ଆଣି, ମୋର ସମ୍ମୁଖରେ ଉପସ୍ଥାପିତ କର ।

[ ସୈନିକ ଦ୍ୱୟଙ୍କର ଅଭିବାଦନାନ୍ତେ ପ୍ରସ୍ଥାନ ]

ଦତ୍ତା । ପୁଣି ଚନ୍ଦ୍ରାଙ୍କ ମୃଣ୍ଡ ଗୁଡ଼ାକ, ଏଠାକୁ କାହିଁକି, ମହାରାଜ ? ଏ ଯେ ବାଲ୍ଟ ସ୍ଥାର ନାମାନ୍ତର ମାତ୍ର ।

ନୀଳ । ପୁଣି ପ୍ରଶ୍ନ ? ଏ ଅଧିକାର ମୁଁ ତ ତୋତେ ଏ ପର୍ଯ୍ୟନ୍ତ ଦେଇ ନାହିଁ, ଦତ୍ତା ! ମୋର ମନେ ହୁଏ, ପ୍ରଶ୍ନ କରିବାର ଏହି ଅନାବଶ୍ୟକ ବଳାଧିତା, ରାଜା ନୀଳକଣ୍ଠଙ୍କର ସେନାପତି ପକ୍ଷରେ ଶୋଭା ପାଏ ନା ।

ଦତ୍ତା । ମୋତେ କ୍ଷମା କରିବେ, ରାଜକୁମାର !

ନୀଳ । ତୋର ପୂର୍ବପୁରୁ ରାଜକୁମାର ଯେ ବର୍ତ୍ତମାନ ଦ୍ୱାରସମୁଦ୍ରର ରାଜା, ଏକଥା ଅନ୍ତତଃ ତୋର ସର୍ବଦା ସ୍ମରଣ ରଖିବା ଉଚିତ ।

ଦତ୍ତା । କ୍ଷମା କରିବେ, ମହାରାଜ ! ଅତ୍ୟଧିକ ଭାବପ୍ରବଣତାରୁ, ମୋର ଟିକିଏ ଚିତ୍ତବିଭ୍ରମ ହୋଇ ଯାଇଥିଲା । ତାପରେ, ଏତେ ଗୁଡ଼ାଏ ଅସ୍ୱାଭାବିକ ହତ୍ୟାର ଚିହ୍ନ, ପରିପାକ କରିବାକୁ ଟିକିଏ ସମୟ ଲାଗିବ ତ ?

[ ଠିକ୍ ଏହି ସମୟରେ ବହୁମୂଲ୍ୟ ପରିଚ୍ଛଦ ବିଭୂଷିତା ରାଜମାତା ମଣ୍ଡା ଦେବୀଙ୍କର ପ୍ରବେଶ । ]

ମଣ୍ଡା । ଏଠାରେ ଏପରି ଭାବରେ, କାହାକୁ ଅପେକ୍ଷା କରୁଛ, ନୀଳକଣ୍ଠ ? (ବନ୍ଦୀଶାଳାକୁ ଚାହିଁ) ଏ କଣ ? ବନ୍ଦୀଶାଳା ଯେ ଶୂନ୍ୟ । ବନ୍ଦୀମାନେ କଣ ପଳାଇ ଯାଇଛନ୍ତି ?

ଦତ୍ତା । ହଁ ରାଣୀମା – ବନ୍ଦୀମାନେ ପଳାଇ ଯାଇଛନ୍ତି । କିନ୍ତୁ କେବଳ ଦ୍ୱାରସମୁଦ୍ର ରାଜ୍ୟରୁ ନୁହେଁ, ଏକାବେଳକେ ଏହି ଜଗତରୁ, ଚିରଦିନଲାଗି । ସୁତରାଂ, ମହାରାଜ ନୀଳକଣ୍ଠଙ୍କର ସମସ୍ତ ବିପଦର ଆଶଙ୍କା ଆଜି ଯଥାର୍ଥରେ ଦୂରୀଭୂତ ।

ମଣ୍ଡା । (ହସି) ଚିରଜୀବୀ ହୁଅ, ବତ୍ସ । ଏ ସମ୍ବାଦ ଶ୍ରବଣରେ, ମୋର ଆନନ୍ଦକୁ ଯେ ମୁଁ ଆଉ ଚାପି ରଖି ପାରୁ ନାହିଁ । କିନ୍ତୁ ଏତେ ସହଜରେ ଏ କାର୍ଯ୍ୟ ଶେଷ ହେବ ବୋଲି, ମୋର ଆଦୌ ଧାରଣା ନ ଥିଲା ।

ନୀଳ । ଏ ସବୁ କେବଳ ଆପଣଙ୍କର ଅଖଣ୍ଡ ଆଶୀର୍ବାଦର ଫଳ, ମା ! ନୋଚେତ୍ ଧୂମ୍ରସର ସିଂହାସନ ଯେ ଚିରଦିନ ଲାଗି ନୀଳକଣ୍ଠର ସ୍ୱପ୍ନର ବସ୍ତୁ ହୋଇ ରହିଯାଇ ଥାନ୍ତା ।

[ପୂର୍ବୋକ୍ତ ସୈନିକମାନଙ୍କ ମଧ୍ୟରୁ ଜଣେ ଗୋଟାଏ ବଡ଼ ରୌପ୍ୟ ଥାଳରେ, ଦୁଇଟା ରକ୍ତାକ୍ତ ମୁଣ୍ଡ ଆଣି, ନୀଳକଣ୍ଠଙ୍କର ସମ୍ମୁଖରେ ରଖିଲା ।]

ମଣ୍ଡା । (ଚମକପଡ଼ି) ଏ କଣ ? ଏ ରକ୍ତାକ୍ତ ମୁଣ୍ଡ ଦୁଇଟି କାହାର ? ଓଃ, କି ଗନ୍ଧ ବୃହ୍ମାଣୀ ?

ନୀଳ । (ଥାଳଟିକୁ ନେଇ ମଣ୍ଡାଙ୍କର ପାଦ ନିକଟରେ ରଖି) ଏଥିରେ ଭୟ କରିବାର କିଛି ନାହିଁ, ମା ! ଏ ତ ନରମୁଣ୍ଡ ନୁହେଁ ! ଏ ଯେ, ମାତୃପୂଜାର ଉଦ୍‌ବୋଧନ ଲାଗି, ଧୂମ୍ରସରର ନବୀନ ରାଜା ନୀଳକଣ୍ଠଙ୍କର ସଂଗୃହୀତ ଦୁଇ ମନ୍ଦାର ଗୁଚ୍ଛ । ରାଜ୍ୟ ପ୍ରାପ୍ତିର ପ୍ରଥମ ଦିବସରେ, ସନ୍ତାନର ଏହି ରକ୍ତପୂଜାକୁ, ଚରଣ ଯୁଗଳରେ ଗ୍ରହଣ କରନ୍ତୁ, ଜନନି !

ମଣ୍ଡା । (ହସି ହସି, ସେହି ରକ୍ତରୁ ସ୍ୱୀୟ ଅଙ୍ଗୁଳରେ ଟିକିଏ ନେଇ, ନୀଳକଣ୍ଠଙ୍କର କପାଳରେ ଲଗାଇ ଦେଇ ) ଆଉ ତା' ସଙ୍ଗେ ସଙ୍ଗେ, ବିଜୟର ଏହି ରକ୍ତତିଳକ, ଆଜିଠାରୁ ରାଜା ନୀଳକଣ୍ଠଙ୍କର ଲଲାଟରେ ମହା ଗୌରବମୟ ରାଜଟିକାରୂପେ ଶତ୍ରୁର ଗର୍ବ-ଗଞ୍ଜନ କରୁ, ଏହାହିଁ ରାଜମାତା ମଣ୍ଡାଦେବୀଙ୍କର ଆଶୀର୍ବାଦ ।

[ନୀଳକଣ୍ଠ ନତଜାନୁ ହୋଇ, ମାତାଙ୍କର ଆଶୀଷ ଗ୍ରହଣ କଲେ । ମଣ୍ଡାଦେବୀଙ୍କର ହାସ୍ୟୋତ୍‌ଫୁଲ୍ଲ ଦୃଷ୍ଟି ପଡ଼ୁଥିଲା ନୀଳକଣ୍ଠଙ୍କ ଉପରେ । ଦନ୍ତା ନିର୍ନିମେଷ ନୟନରେ ଭୂତାବିଷ୍ଟ ପରି, ଚାହିଁ ରହିଥିଲା ସେହି ନରମୁଣ୍ଡ ଦୁଇଟିକୁ ।]

—ଯବନିକା ପତନ—

## —ପଞ୍ଚମ ଅଙ୍କ—

### ପ୍ରଥମ ଦୃଶ୍ୟ

[ ଗାଲେସ୍ ସର୍ଦ୍ଦାରଙ୍କର ମନ୍ତ୍ରଣା କକ୍ଷ । ସମୟ—ପ୍ରାତଃକାଳ । ନିତାନ୍ତ ସାଜସଜ୍ଜାବିହୀନ କକ୍ଷଟି । ସଭ୍ୟତାର ଗୃହଚିହ୍ନ ଏକାବେଳକେ ନାହିଁ । ଖଣ୍ଡିଏ ସାଧାରଣ ବେଞ୍ଚାସନ ନିକଟରେ ଠିଆ ହୋଇ ରହିଥିଲେ, ନଙ୍ଗେ ସର୍ଦ୍ଦାର । ତାଙ୍କର ସମ୍ମୁଖରେ,କିଛି ଦୂରରେ ଠିଆ ହୋଇଥିଲେ, ରାଜବଧୂ ମାଧବିକା । କୋଳରେ ତାଙ୍କର ଶିଶୁପୁତ୍ର । ତାଙ୍କର ବାମପାର୍ଶ୍ୱ ପାଖରେ ଠିଆ ହୋଇଥିଲେ ଦୁଇଜଣ ସଶସ୍ତ୍ର ପାଇକ । ]

ମାଧ । ଆଉ କେତେଦିନ ଏହିପରି ଆତ୍ମଗୋପନ କରି ରହିଥିବି, ସର୍ଦ୍ଦାର ? ଏ ରାଜଶିଶୁକୁ ପାଳନ କରିବା ଯେ କ୍ରମେ ମୋର କ୍ଷମତାର ବହିର୍ଭୂତ ହୋଇ ପଡ଼ୁଛି । ଶୀଘ୍ର ଏହାର କିଛି ପ୍ରତିକାର କର, ସର୍ଦ୍ଦାର !

ସର୍ଦ୍ଦାର । ମୁଁ ତୋତେ କବାବ୍ ଦେଉଛି, ମା ! ଏହାର ପ୍ରତିକାର କରିବା ପରିବର୍ତ୍ତେ, ମୁଁ ଏପରି ଏକ ଭୀଷଣ ପ୍ରତିଶୋଧ ନେବି ଯେ,ଯାହା ରାଜା ନୀଳକଣ୍ଠ ସୁଦ୍ଧା କଳ୍ପନା କରି ନ ଥିବ । କିନ୍ତୁ ସର୍ଦ୍ଦାର ସବୁ ସହିପାରେ, କିନ୍ତୁ ବିଶ୍ୱାସଘାତକତା ତାର କାଉର କୋଷ୍ଠିରେ ନାହିଁ, ମା ! ମହାମନ୍ତ୍ରୀ ଦୃଢ଼ବାହୁ ମୋତେ ସବୁ ସମ୍ବାଦ ଜଣାଇଛି । ଓଃ ଏତେ ବଡ଼ ଅତ୍ୟାଚାର ! କେବଳ ହତ୍ୟା, ହତ୍ୟା, ହତ୍ୟା !! ! ଏ ହତ୍ୟାର ପ୍ରତିଶୋଧ ମୁଁ ନିଶ୍ଚୟ ନେବି ।

ମାଧ । ଧୂମ୍ରସର ଯୁବରାଜଙ୍କର ପୁତ୍ରବଧୂ ମୁଁ—ଆଜି ତୁମ ସମ୍ମୁଖରେ ଅନୁନୟ କରୁଛି, ସର୍ଦ୍ଦାର ! ଯେ କୌଣସି ଉପାୟରେ, ମୋର ଏ ଶିଶୁପୁତ୍ରକୁ କେବଳ ବଞ୍ଚାଇ ରଖ । ଏହି ଏତିକିହିଁ ମୋର ଭିକ୍ଷା ।

ସର୍ଦ୍ଦାର । ସେ ଲାଗି, ତୋର କୌଣସି ଚିନ୍ତା କରିବାର ଦରକାର ନାହିଁ, ମା ! ଏହି ଶିଶୁ ରାଜକୁମାରର ଜୀବନ ମୋର ଭାର, ଗାଲେଶି ମୂଠାର ସମଗ୍ର କନ୍ଧଜାତି ଉପରେ । ନୀଳକଣ୍ଠ ତ ଛାର, ଦୁନିଆର ଏପରି କାହାର ଶକ୍ତି ନାହିଁ ଯେ, ଏହି ଶିଶୁ ରାଜକୁମାରକୁ ମୋଠାରୁ ଛଡ଼ାଇ ନେଇ ଯାଇ ପାରିବ । କନ୍ଧଜାତି ବଡ଼ ଭୟାନକ ଜାତି, ମା ! ଆମ ସହିତ ମିତ୍ରତା କରି ଚଳି ପାରିଲେ,ଆମେ ଆମର ମିତ୍ର ଲାଗି ନିଜର ପ୍ରାଣ ପର୍ଯ୍ୟନ୍ତ ଦେଇଦେବୁଁ । କିନ୍ତୁ ଆମ ସଙ୍ଗରେ ଶତ୍ରୁତା କଲେ, ତାର ପରିଣାମ ବଡ଼ ଭୟଙ୍କର । ଶୁଣ୍ ମା,ଗାଲେଶି ସର୍ଦ୍ଦାରର ପ୍ରତିଜ୍ଞା—ଏହି ଶିଶୁ ରାଜକୁମାରକୁ ସେ ଯେ କୌଣସି ଉପାୟରେ ଧୂମ୍ରସର ସିଂହାସନରେ ବସାଇବ ।

ପାଇକ । (ଧୂଇ ଜଣଯାକ ସମସ୍ୱରରେ) ଆମ୍ଭମାନଙ୍କର ମଧ ସେହି ମତ, ସର୍ଦ୍ଦାର ! ନୂତନ ରାଜାଙ୍କର ଅତ୍ୟାଚାରରେ, ସମଗ୍ର ଧୂମ୍ରସର ଆଜି ଜର୍ଜରିତ । ସମସ୍ତେ କେବଳ ଗୋଟାଏ ବିରାଟ ବିଦ୍ରୋହ କରିବାର ସୁଯୋଗ ଅପେକ୍ଷା କରୁଛନ୍ତି । ସର୍ଦ୍ଦାର ! ତୁମେ ଆମର ସହାୟ ହୁଅ ।

ସର୍ଦ୍ଦାର । ସମସ୍ତ ଉପାୟ ମୁଁ ଠିକ୍ କରି ସାରିଛି, ପାଇକ ! ମୁଁ ଖାଲି ଅପେକ୍ଷା କରିଛି,. ବୁଗୁଡ଼ା ଆଉ ଜଗନ୍ନାଥପ୍ରସାଦ ମୂଠାର ସର୍ଦ୍ଦାରମାନଙ୍କ ସେନା ସାହାଯ୍ୟ । ମୋର ପୂର୍ଣ୍ଣ ବିଶ୍ୱାସ, ତାଙ୍କର ପୁତ୍ରବଧୂର ଏ ଦୁର୍ଦ୍ଦଶାରେ, ସେମାନେ ନିଶ୍ଚୟ ଅଗଭର ହୋଇ ବାହାରି ପଡ଼ିବେ । ସୁତରାଂ, ମୋର ଦୂତ ଫେରି ଆସିବା ପର୍ଯ୍ୟନ୍ତ, ଯାହା ବିଳମ୍ବ ।

ମାଧ । ମୁଁ ବେଶୀ କିଛି ଚାହେଁନା, ସର୍ଦ୍ଦାର ! ତୁମେ କେବଳ ଏ ଶିଶୁର ଦାୟିତ୍ୱ ଗ୍ରହଣ କରି, ମୋତେ ଏକ ସହସ୍ର ମାତ୍ର ପାଇକ ସାହାଯ୍ୟ ଦିଅ । ମୁଁ ନିଜେ ସେହି ପାଇକମାନଙ୍କୁ ପରିଚାଳନା କରି, ଥରେ ଦେଖିବାକୁ ଚାହେଁ ଯେ, ରାଜା ନୀଳକଣ୍ଠର ବାହୁରେ କେତେ ଶକ୍ତି । ତା ପରେ, ମୋର ସ୍ୱାମୀହତ୍ୟାର ପ୍ରତିଶୋଧ, ମୁଁ ନିଜ ହାତରେ ଗ୍ରହଣ କରି ନେଇ ପାରିବି ।

ସର୍ଦ୍ଦାର । ତୋର ଇଚ୍ଛା ଅନୁସାରେ କନ୍ଧସର୍ଦ୍ଦାର ସବୁ ବନ୍ଦୋବସ୍ତ କରି ଦେଇ ପାରିବ, ମା ! ତୁ ଯେ ମୋର କନ୍ଧଜାତିର ମା । ବଡ଼ ଅସମୟରେ ପଡ଼ି, ତୁ ଆଜି ମୋର ଶରଣ ପଶିଛୁ । ଏ କଥା ତ ଗାଲେସି ସର୍ଦ୍ଦାର ଭୁଲି ପାରିବ ନାହିଁ । ଆମେ ବଣୁଆଲୋକ ସତ । କିନ୍ତୁ ମଣିଷର ସରଳ ହୃଦୟକୁ ଆମେ ଆମର ପ୍ରାଣଠାରୁ ଅଧିକ ଭଲ ପାଉଁ, ମା ! ଆମ ଆଖି ଆଗରେ, କେବଳ ଶଇତାନ ଓ ବେଇମାନ କରି ନୀଳକଣ୍ଠ ଆମ ରାଜାର ସିଂହାସନ ଉପରେ ମାଡ଼ି ବସିବ, ଏହା କଦାପି ଆମେ କରିବାକୁ ଦେବୁ ନାହିଁ । ଅନ୍ତତଃ ଆମର ଗୋଟାଏ ପିଲା ହାତରେ ତୀରଧନୁ ଥିବା ପର୍ଯ୍ୟନ୍ତ, ଆମେ ଏହାର କଠୋର ଜବାବ୍ ଦେବୁଁ ।

ମାଧ । ମୁଁ କେବଳ ସେତିକି ମାତ୍ର ଚାହେଁ, ସର୍ଦ୍ଦାର ! ତୁମର ସମବେତ କନ୍ଧ ଜନତା ଓ ଧୂମୁସର ରାଜ୍ୟର ସାଧାରଣ ପ୍ରଜା ଆଗରେ, ଥରେ ମାତ୍ର ମୁଁ ଏହି ଅସହାୟ ଶିଶୁ ରାଜକୁମାରକୁ ଦେଖାଇ, ମୋର ବିନୀତ ନିବେଦନ ସମସ୍ତ ଜଣାଇ ଦେବି । ତା ପରେ, ସେମାନେହିଁ ଠିକ୍ କରିବେ, କିଣ ସେମାନେ ଚାହାନ୍ତି,—ପରସ୍ୱାପହାରୀ ଅତ୍ୟାଚାରୀ ନୀଳକଣ୍ଠଙ୍କର ରାଜତ୍ୱ, ନା—ଧୂମୁସରର ଯୁବରାଜଙ୍କ ଏହି ଶିଶୁ ପୌତ୍ରର ଜୀବନ ।

ସର୍ଦ୍ଦାର । ତୋର ଏହି ଇଚ୍ଛାକୁ କନ୍ଧସର୍ଦ୍ଦାର ତାର ଦେବତାର ହୁକୁମ୍ ପରି ପାଳନ କରିବ, ମା ! ଏହି ଜବାବ୍ ମୁଁ ତୋତେ ଦେଉଛି । ଖୁବ୍ ନିକଟରେ, ଏ ରାଜ୍ୟର ସମସ୍ତ ପ୍ରଜାଙ୍କୁ ଠୁଳ କରାଇ, ଏପରି ଏକ ବିଦ୍ରୋହର ନିଆଁ ଜଳାଇ ଦେବ, ଯାହାର ତାତିରେ ନୀଳକଣ୍ଠ ଏ ରାଜ୍ୟର ସିଂହାସନ ଛାଡ଼ି ପଳାଇଯିବାକୁ ସୁଦ୍ଧା ବାଟ ପାଇବ ନାହିଁ ।

ପାଇକ । ଠିକ୍ କହୁଛ, ସର୍ଦ୍ଦାର ! ରାଜ୍ୟର ପ୍ରଜାମେଳି ବିରୁଦ୍ଧରେ ଠିଆହୋଇ ରହିବାକୁ ପୃଥିବୀର କୌଣସି ରାଜା ଏ ପର୍ଯ୍ୟନ୍ତ ସାହସ କରି ନାହାନ୍ତି । ଆଉ, ନୀଳକଣ୍ଠ ତ ଛାର ।

[ଜଣୈକ କନ୍ଧ ସୈନିକର ପ୍ରବେଶ ଓ ଅଭିବାଦନ ।]

ସର୍ଦ୍ଦାର । କି ଖବର, ସୈନିକ ?

ସୈନିକ । ସର୍ଦ୍ଦାର, କାଲି ସକାଳେ ବୁଗୁଡ଼ା ଓ ଜଗନ୍ନାଥପ୍ରସାଦ ମୁଠାର ସର୍ଦ୍ଦାରମାନେ ଏଠାରେ ଆସି ପହଞ୍ଚିବେ । ତା ପରେ, ତୋ ସହିତ ପରାମର୍ଶ କରି, ଯାହା ଠିକ୍ କରାଯିବ, ତାହା ସେମାନେ କରିବାକୁ ରାଜି । ଏହି ଖବର ସେମାନେ ମୋ ହାତରେ ପଠାଇଛନ୍ତି ।

ସର୍ଦ୍ଦାର । (ଆନନ୍ଦରେ) ଶୁଣିଲୁ, ମା ? ସୁତରାଂ, ତୋର ଏହି ବଣୁଆ ପୁଅଟା ଚୁପ୍ ହୋଇ ବସିରହିଛି ବୋଲି କଦାପି ଭାବନ୍ତୁ ନାହିଁ । ଆମର ରକ୍ତ ଭାରି ଗରମ, ମା ! ଥରେ ତାତିଲେ, ତାହା ସହଜରେ ଥଣ୍ଡା ହୁଏ ନା । ଯାଅ ମା, ବର୍ତ୍ତମାନ ତୋର ଗିରିଦୁର୍ଗକୁ ଫେରି ଯା । ମୁଁ ସମସ୍ତ ବନ୍ଦୋବସ୍ତ କରି ସାରି, ପୁଣି ତୋ ନିକଟକୁ ଖବର ଦେବି । (ପାଇକଙ୍କୁ ଚାହିଁ) ଦେଖ, ପାଇକ ! ଖୁବ୍ ହୁସିଆରରେ ମା'କୁ ମୋର, ତାର ଗୁପ୍ତ ଗିରିଦୁର୍ଗରେ ନେଇ ପହଞ୍ଚାଇବ । ମୋର ଶିଶୁ ଯୁବରାଜଙ୍କ ଭିତର ଯେପରି କୌଣସି କଷ୍ଟ ନ ହୁଏ । ସାବଧାନ !

ପାଇକ । ସେ ବିଷୟରେ ତୁମେ ନିଶ୍ଚିନ୍ତ ରହିପାର, ସର୍ଦ୍ଦାର ! ନିଜର ରକ୍ତ ବିନିମୟରେ ଆମେ ଆମର ରାଜକୁମାରଙ୍କର ଜୀବନ ରକ୍ଷା କରିବୁ । ମହାମନ୍ତ୍ରୀ ବୃଷଭାନୁଙ୍କର ବିଶ୍ୱସ୍ତ ଦେହରକ୍ଷୀ ଆମ୍ଭେମାନେ । ରାଜବଧୂଙ୍କୁ କୁଲାଡ଼ ଦୁର୍ଗରୁ, ନୀଳକଣ୍ଠଙ୍କ କବଳରୁ ଉଦ୍ଧାର କରି ଆଣିବା ପରେ, ତାଙ୍କର ମର୍ଯ୍ୟାଦା ରକ୍ଷା କରିବାର ଦାୟିତ୍ୱ ଯେ ଆମର, ଏ କଥା ଆମେ ଭୁଲି ପାରିବୁ ନାହିଁ, ସର୍ଦ୍ଦାର !

ସର୍ଦ୍ଦାର । ମୁଁ ସେ କଥା ଜାଣେ, ପାଇକ ! ତଥାପି, ଏହି ଗୁପ୍ତ ଗିରିଦୁର୍ଗର ସନ୍ଧାନ କେହି ଯେପରି ଜାଣି ନ ପାରନ୍ତି, ସେଥିପ୍ରତି ହୁସିଆର ଥିବ । ଯାଅ ମା ! ତୋର ପଛେ ପଛେ, ମୋର କନ୍ଧ ସୈନିକମାନଙ୍କୁ ମଧ୍ୟ ମୁଁ ପଠାଉଛି । ସେମାନେ ଗିରିଦୁର୍ଗର ଚାରିପାଖେ ରୀତିମତ କଡ଼ାପହରା ଦେବେ ।

[ ମାଧବିକା ଶିଶୁକୁ ବସ୍ତ୍ରାବୃତ କରି କୋଳରେ ନେଲେ, ଅନ୍ଧ ସନ୍ତର୍ପଣରେ ପାଇକମାନଙ୍କ ସହିତ ପ୍ରସ୍ଥାନ କଲେ । ତାଙ୍କ ଯିବା ପରେ, କନ୍ଧ ସର୍ଦ୍ଦାର ବିପରୀତ ଦଗରେ ପ୍ରସ୍ଥାନ କଲେ । ]

# ଦ୍ୱିତୀୟ ଦୃଶ୍ୟ

[ ଧଡ଼କୋଟ ସାମନ୍ତ ରାଜାଙ୍କର ମନ୍ତ୍ରଣା କକ୍ଷ । ସମୟ—ଅପରାହ୍ଣ । ତିନୋଟି ସୁସଜ୍ଜିତ ଆସନ ଉପରେ, ପରସ୍ପର ମୁଖାମୁଖୀ ହୋଇ ବସି ରହିଥିଲେ,—ଧଡ଼କୋଟ ରାଜା ରାମଚନ୍ଦ୍ର, ଘନଭଞ୍ଜ ଓ ଗୋବିନ୍ଦ ଭଞ୍ଜ । ସେମାନଙ୍କ ସମ୍ମୁଖରେ, ଧଡ଼କୋଟ ରାଜ୍ୟର ଗୁପ୍ତଚର, ଏକ ପାର୍ଶ୍ୱରେ ଠିଆ ହୋଇ ରହିଥିଲେ । କୁମାର ଘନଭଞ୍ଜ ଅତି ଉତ୍ତେଜିତ ହୋଇ ପଡ଼ିଥିଲା ପରି ଦେଖା ଯାଉଥିଲେ । ସେମାନଙ୍କର ପରିଚ୍ଛଦ ସାଧାରଣ ରାଜୋଚିତ ଥିଲା ।]

ଘନ । ଗୁପ୍ତଚର ମୁଖରୁ ସମସ୍ତ ବିବରଣୀ ତ ଶୁଣି ପାରିଲେ, ରାଜା ସାହେବ ! ବର୍ତ୍ତମାନ ଭାବି ଦେଖନ୍ତୁ, ବର୍ବର ନୀଳକଣ୍ଠର ଅତ୍ୟାଚାର, କେତେ ଦୂରକୁ ଅଗ୍ରସର ହୋଇ ପାରିଛି । ବିନା ଦୋଷରେ, କୁମାର ଗଙ୍ଗାଧର ଆଉ ତାଙ୍କର ପୁତ୍ରଙ୍କର ଏପରି ନିର୍ମମ ହତ୍ୟା, ଆପଣ କେବେ କଳ୍ପନା କରି ପାରିବେ

ରାମ । ଧୈର୍ଯ୍ୟଧର, କୁମାର ! ଆଜି ମୋର ସମସ୍ତ ସନ୍ଦେହ ଦୂର ହୋଇଛି । ଏହି ଅମାନୁଷିକ ଅତ୍ୟାଚାରର ଉପଯୁକ୍ତ ପ୍ରତିଶୋଧ ନେବାକୁ ଧଡ଼କୋଟର ସାମନ୍ତରାଜା ତୁମ୍ଭଙ୍କୁ ଯଥେଷ୍ଟ ସାହାଯ୍ୟ କରିବ, ଏ ପ୍ରତିଶ୍ରୁତି ମୁଁ ତୁମ୍ଭଙ୍କୁ ଦେଉଛି । ଧୁମୁସରର ପୁଣ୍ୟପୂତ ସିଂହାସନରେ ଏପରି ଗୋଟାଏ ବର୍ବର ପଶୁର ରାଜତ୍ୱକୁ, ମୁଁ ଆଉ ଆଦୌ ଅନୁମୋଦନ କରି ପାରେ ନା । କଣ କହୁଛନ୍ତି, ସଖା ?

ଗୋବିନ୍ଦ । ( ରୁଦ୍ଧ କଣ୍ଠରେ ) କୌଣସି କଥା କହିବାର ଶକ୍ତି ଯେ ମୋର ଆଉ ନାହିଁ, ରାମଚନ୍ଦ୍ର । ପୁଣ୍ୟଶ୍ଳୋକ ରାଜା ଧନଞ୍ଜୟଙ୍କର ଏପରି ଶୋଚନୀୟ ହତ୍ୟା ଯେ ତାଙ୍କର ପ୍ରିୟତମା ରାଣୀଙ୍କ ଦ୍ୱାରା ସମ୍ଭବ ହୋଇ ପାରେ, ଏହା ତ ମୁଁ ଧାରଣା କରିପାରୁ ନାହିଁ ! ସୁତରାଂ, କି ମତାମତ ଦେବି ।

ଘର୍ନ । ବର୍ତ୍ତମାନ ତ ବୃଥା ଅନୁଶୋଚନାର ସମୟ ନୁହେଁ, ପିତା ! ଏ ଅନ୍ୟାୟର କଠୋର ପ୍ରତିକାର କରିବାକୁ ହେବ । ରାଜାସାହେବ ! ମୋର ଏକାନ୍ତ ଅନୁରୋଧ, ମୋତେ କେବଳ ଆପଣଙ୍କର ସମସ୍ତ ସୈନ୍ୟ ବାହିନୀର ସାହାଯ୍ୟ ଦିଅନ୍ତୁ । ସେମାନଙ୍କ ସହିତ, ମୁଁ କାଲି ପ୍ରତ୍ୟୁଷରେ ଧରାକୋଟ ତ୍ୟାଗ କରିବି । ତା ପର ବୁଗୁଡ଼ା ଓ ଜଗନ୍ନାଥପ୍ରସାଦଠାରେ ସେଠାକାର ସର୍ଦ୍ଦାରମାନଙ୍କୁ ଓ ତାଙ୍କର ସୈନ୍ୟବାହିନୀକୁ ଏକତ୍ରିତ କରି ଗାଳେଖି ଅଭିମୁଖେ ଯାତ୍ରା କରିବି ।

ରାମ । ତାର ପର ?

ଘନ । ସେହିଠାରେ ଘୁମୁସର ରାଜ୍ୟର ସମବେତ ପ୍ରଜାମଣ୍ଡଳୀ ସମ୍ମୁଖରେ, ସେମାନଙ୍କର ଅଭିମତ ନେଇ, ପାଟଦେଉଙ୍କର ଶିଶୁପୁତ୍ରଙ୍କୁ, ରାଜ୍ୟର ରାଜାବୋଲି ଘୋଷଣା କରିବି । ଆଉ, ସେହିଠାରୁ ଅସ୍ମମାନଙ୍କର ସମ୍ମିଳିତ ଶକ୍ତି ନେଇ, ଦୁର୍ବୃତ୍ତ ନୀଳକଣ୍ଠଙ୍କ ବିରୁଦ୍ଧରେ ବିଦ୍ରୋହର ପରିଚାଳନା କରି, କୁଳାଡ଼ ଦୁର୍ଗ ଅବରୋଧ କରିବି । ମୁଁ କେବଳ ଥରେ ପରୀକ୍ଷା କରିବି ଯେ, କେଉଁ ଶୌର୍ଯ୍ୟବଳରେ ନୀଳକଣ୍ଠର ଅନ୍ୟାୟ ଓ ଅତ୍ୟାଚାର ଆଜି ତାର ସମସ୍ତ ସୀମା ଲଙ୍ଘନ କରି ଯାଉଛି ।

ରାମ । ତୁମ୍ଭେ କଣ ସେହି ଶୌର୍ଯ୍ୟର ପ୍ରତିରୋଧ କରି ପାରିବ ?

ଘନ । ପାରେଁ, ନ ପାରେଁ, ସେ ସ୍ୱତନ୍ତ୍ର କଥା । କିନ୍ତୁ ଏହି ଅଭିଯାନ ପଛରେ,ମୋର ସମସ୍ତ ଶକ୍ତି ପ୍ରୟୋଗ କରିବି । ମୋର ବିଶ୍ୱାସ,ଅନ୍ୟାୟର ବିରୁଦ୍ଧରେ ମୋର ଏହି ଅଭିଯାନକୁ,ଘୁମୁସରର ପ୍ରତ୍ୟେକ ପ୍ରଜା ଅନ୍ତରରୁ ସମର୍ଥନ ଜଣାଇବେ ।

ଗୁପ୍ତ । ମୁଁ ମଧ୍ୟ ଦେଖି ପାରୁଛି ଯେ, କୁଳାଡ଼ ଗଡ଼ର ସମସ୍ତ ଅଧିବାସୀ ରାଜା ନୀଳକଣ୍ଠଙ୍କ ବ୍ୟବହାରରେ ଅତ୍ୟନ୍ତ ଉତ୍ତ୍ୟକ୍ତ ହୋଇ ପଡ଼ିଛନ୍ତି । ଏପରିକି, ନୀଳକଣ୍ଠଙ୍କର ସିଂହାସନ ଲାଭ ଉପଲକ୍ଷରେ ଯେଉଁ ଉତ୍ସବର ଆୟୋଜନ ହୋଇଥିଲା, ଗଡ଼ର କୌଣସି ପ୍ରଜା ସେ ଉତ୍ସବରେ ଯୋଗ ଦେଇ ନାହାନ୍ତି ।

ଘନ । ଶୁଣିଲେ, ରାଜାସାହେବ ? ଏହିତ ଘୁମୁସର ପ୍ରଜାର ମନୋଭାବ ? ଏଥିରୁ ଆପଣ କଣ ପ୍ରତ୍ୟାଶା କରୁଛନ୍ତି ? ପିତା ! ଏ ସମୟରେ ଆପଣଙ୍କର ଏପରି ନୀରବ ନିଶ୍ଚେଷ୍ଟ ରହିବାଟା କି ଉଚିତ ? ଆସନ୍ତୁ, ଆପଣ ନିଜେ ଏହି ଅଭିଯାନର ନେତୃତ୍ୱ ଗ୍ରହଣ କରି, ଘୁମୁସର ରାଜ୍ୟକୁ ଏହି ଦୁର୍ଗତିର ପ୍ଲାବନରୁ ରକ୍ଷା କରନ୍ତୁ ।

ଗୋବିନ୍ଦ । ଅନର୍ଥକ ମୋତେ ଆଉ ଏ ଅଶାନ୍ତ ମଧ୍ୟକୁ ଟାଣିନେଉଛ କାହିଁକି, କୁମାର ? ମୁଁ ତ ଘୁମୁସର ସହିତ ସମସ୍ତ ସମ୍ପର୍କ ତ୍ୟାଗ କରି ଆସିଛି । ଆଉ କାହିଁକି ? ମୋର ସ୍ନେହମୟ ଜ୍ୟେଷ୍ଠଭ୍ରାତା ଧନଞ୍ଜୟଙ୍କୁ ମୁଁ ଯେ ଧ୍ୱଂସ ମୁଖରୁ ରକ୍ଷା କରିପାରିଲି ନାହିଁ, ଏ ଦୁଃଖ ତ ମୁଁ ଜୀବନରେ ଭୁଲିପାରିବି ନାହିଁ । ସୁତରାଂ, ଆଜି ପୁଣି କେଉଁ ମୁଖରେ ଧନଞ୍ଜୟଶୂନ୍ୟ ଘୁମୁସର ମଧ୍ୟରେ ମୁଁ ପ୍ରବେଶ କରିବି ! ! ମୋତେ କ୍ଷମା କର ବତ୍ସ ! ଗୋବିନ୍ଦ ଭଞ୍ଜ ତାର ଶେଷ ଜୀବନକୁ ରାଜା ରାମଚନ୍ଦ୍ରଙ୍କର ସହାୟ ଆତିଥ୍ୟର ବାହୁଚ୍ଛାୟାରେ କଟାଇ ଦେବାକୁ ମନସ୍ଥ କରିଛି । ସୁତରାଂ, ବିପ୍ଳବର ଏହି ନୂତନ ଘୂର୍ଣ୍ଣିଝଞ୍ଜା ମଧ୍ୟରେ, ପୁଣି ଥରେ ଉତ୍କ୍ଷିପ୍ତ ଭାବରେ ଘୁରି ବୁଲିବାକୁ ଆଜି ଆଉ ମୋର ସାହସ ନାହିଁ କି ସାମର୍ଥ୍ୟ ନାହିଁ ।

ରାମ । ତା ହେଲେ, ଆପଣ କଣ ଏହି ଅଭିଯାନକୁ ସମର୍ଥନ କରୁ ନାହାନ୍ତି ?

ଗୋବିନ୍ଦ । ମୋତେ ଭୁଲ୍ ବୁଝ ନାହିଁ, ରାମଚନ୍ଦ୍ର । ଜଗତର ଯେ କୌଣସି ଅନ୍ୟାୟ୍ ବିରୁଦ୍ଧରେ, ଯେ କୌଣସି ବିଦ୍ରୋହକୁ ମୁଁ ଅନ୍ତରର ସହିତ ଅନୁମୋଦନ କରିବି । କିନ୍ତୁ ଆଜିର ଏହି ଭଙ୍ଗା ମନଟାକୁ ନେଇ, କୌଣସି ଗୁରୁତର କାର୍ଯ୍ୟରେ ମୋର ପ୍ରତ୍ୟକ୍ଷ ସହଯୋଗିତା ଯେ ମୁଁ ଆଉ ଦେଇ ପାରିବି ନାହିଁ, ଏ କଥା ତ ଭୁଲିଗଲେ ଚଳିବ ନାହିଁ । ମାନସିକ ଅଥର୍ବତା ନିକଟରେ ଶାରୀରିକ ଶକ୍ତିର ମୂଲ୍ୟ ଯେ କିଛି ନୁହେଁ । ବିଶ୍ୱାସ କର ମୋତେ, ଗୋବିନ୍ଦ ଭଞ୍ଜ ଆଜି ଗୋଟାଏ ଶିଶୁଠାରୁ ମଧ୍ୟ ଦୁର୍ବଳ ।

ଘନ । କିନ୍ତୁ ମନେ ରଖିବେ, ଘୁମୁସର ରାଜ୍ୟର ଏହି ବିପଦ ସମୟରେ, ଆପଣଙ୍କର ଏହି ନିଶ୍ଚେଷ୍ଟତାକୁ, ଘୁମୁସରର ପ୍ରଜା ସାଧାରଣ କ୍ଷମା କରିପାରିବେ ନାହିଁ ।

ଗୋବିନ୍ଦ । ସେ ମୋର ଦୁର୍ଭାଗ୍ୟ, କୁମାର । କଣ କରିବି, ନିତାନ୍ତ ନାଚାର ମୁଁ ଆଜି ! କିନ୍ତୁ ମୁଁ ସର୍ବାନ୍ତଃକରଣରେ ଆଶୀର୍ବାଦ କରୁଛି, ଯେପରି ତୁମର ଏହି ଅଭିଯାନ ସର୍ବତୋଭାବେ ସଫଳ ହେଉ । ଘୁମୁସର ସିଂହାସନ ଅଚିରେ ନୀଳକଣ୍ଠଙ୍କର ବିଷାକ୍ତ କବଳରୁ ମୁକ୍ତ ହେଉ ।

ଘନ । (ନତଜାନୁ ହୋଇ ଗୋବିନ୍ଦଙ୍କ ଚରଣ ସ୍ପର୍ଶ କରି) ଆପଣଙ୍କର ଏହି ଏତିକି ମାତ୍ର ଶୁଭାଶୀର୍ବାଦକୁ ମୁଁ ଏପର୍ଯ୍ୟନ୍ତ ଅପେକ୍ଷା କରିଥିଲି, ପିତା ! ସୁତରାଂ ଆଜି ମୋର ଆଉ ଭୟ ନାହିଁ । ଏ ଅଭିଯାନରେ ମୁଁ ନିଶ୍ଚୟ ସଫଳକାମ ହେବି । ଆପଣଙ୍କର ଏହି ଆଶୀର୍ବାଣୀହିଁ ମୋର ଅକ୍ଷୟ କବଚ । ଚାଲନ୍ତୁ ରାଜାସାହେବ ! ଏଥର କୁଷ୍ମମନରେ ଧନ୍ଦକୋଟ ସୈନ୍ୟବାହିନୀର ଅଧିନାୟକତ୍ୱ ମୋ ଉପରେ ଅର୍ପଣ କରିବେ ।

ରାମ । (ଉଠି) ଆସନ୍ତୁ ସଖା । ଦେଖୁଛି,ଘୁମୁସରର ମଙ୍ଗଳ ଲାଗି କୁମାର ଆଜି ଏକାବେଳକେ ଉନ୍ମାଦ । ଆଉ ମୋର ବିଶ୍ୱାସ, ଏ ଉନ୍ମତ୍ତତା ନିକଟରେ ବର୍ବର ନୀଳକଣ୍ଠଙ୍କର ପରାଜୟ ଅବଶ୍ୟମ୍ଭାବୀ । (ଗୋବିନ୍ଦ, ଘନ ଓ ଗୁପ୍ତଚରଙ୍କ ସହିତ ପ୍ରସ୍ଥାନ ।)

---

## ତୃତୀୟ ଦୃଶ୍ୟ

[ ତୃତୀୟ ଅଙ୍କ ଚତୁର୍ଥ ଦୃଶ୍ୟ ବର୍ଣ୍ଣିତ ନୟାଗଡ଼ ମାଳସାହିର ଉପେନ୍ଦ୍ରଙ୍କର କୁଟୀର । ସମୟ ପୂର୍ବାହ୍ନ । ଖଣ୍ଡିଏ ମୃଗଚର୍ମ ଉପରେ କବି ଉପେନ୍ଦ୍ର ଗମ୍ଭୀରଭାବେ ବସି ରହିଥିଲେ । ପାର୍ଶ୍ୱରେ ତାଙ୍କର ତାଳପତ୍ର ପୋଥି ଓ ଲେଖନୀ । ତାଙ୍କର ନିକଟକୁ ଲାଗି, ଅନ୍ୟ ଗୋଟାଏ ଆସନରେ ବସି ରହିଥିଲେ ନୟାଗଡ଼ ରାଜା ପୁରୁଷୋତ୍ତମ ମାନ୍ଧାତା ଓ ଉତ୍କଳ ସମ୍ରାଟ ଗଜପତିଙ୍କର ଦୂତ । କୁଟୀରର ଦ୍ୱାରଟି ଭିତରୁ ବନ୍ଦଥିଲା । ]

ଦୂତ । ତାହେଲେ ଗଜପତିଙ୍କର ସସ୍ନେହ ଅନୁରୋଧକୁ ରକ୍ଷା କରିବାକୁ ଆପଣ ଏକାନ୍ତ ଅସମର୍ଥ, ଏହି ସମ୍ବାଦ କି ମୁଁ ବହନ କରିନେବି, କବି ?

ଉପେ । ଏହା ବ୍ୟତୀତ ମୋର ଅନ୍ୟ କିଛି ତ କହିବାକୁ ନାହିଁ, ଦୂତ ? ମୁଁ ଯେ କାଲି ପ୍ରତ୍ୟୁଷରୁ ଅଯୋଧ୍ୟା ଯାତ୍ରା କରିବାର ସମସ୍ତ ବନ୍ଦୋବସ୍ତ କରି ସାରିଛି । ମୁଁ ଜାଣେନା, ମୋର ଗୁରୁଦେବ ଶ୍ରୀ ରଘୁନାଥଙ୍କର ଜନ୍ମସ୍ଥାନ ଦେଖିବାକୁ ମୋରି ହଠାତ୍ ଏତେ ବ୍ୟାକୁଳତା ବଢ଼ି ଉଠିଲା କାହିଁକି । ଅବଶ୍ୟ,ମୋର ଏ ବ୍ୟାକୁଳତାକୁ ମୁଁ ଦମନ କରି ନ ପାରିବା ଯୋଗୁଁ ଦୁଃଖିତ ।

ପୁରୁ । କବି ଚୂଡ଼ାମଣି ! ମୋର ମନେ ହୁଏ, ଗଜପତିଙ୍କର ଏହି ସାଦର ନିମନ୍ତ୍ରଣକୁ ଏପରି ଭାବରେ ପ୍ରତ୍ୟାଖ୍ୟାନ କରିବାଟା ନିତାନ୍ତ ଅଶୋଭନୀୟ । ତଦ୍ୱାରା ତୁମେ ହୁଏତ ତାଙ୍କର ଅସନ୍ତୋଷଭାଜନ ହୋଇ ପଡ଼ିବ ।

ଉପେ । କଳିଙ୍ଗ ସାମ୍ରାଜ୍ୟର ଗଜପତି ସମ୍ରାଟଙ୍କୁ ଉପେନ୍ଦ୍ର ସବୁ ସମୟରେ ଯଥେଷ୍ଟ ସମ୍ମାନ ଦାନ କରି ଆସିଛି । କିନ୍ତୁ ତାହା ବୋଲି, ତାଙ୍କର ସନ୍ତୋଷ ବିଧାନ ଲଗି ମୋର ଯେ, କୌଣସି ନୈତିକ ଦାୟିତ୍ୱ ଥାଇପାରେ,ଏ ଧାରଣା ମୋର ନାହିଁ । ସୁତରାଂ,ତାଙ୍କର ଅସନ୍ତୋଷଭାଜନ ହେବା ଭୟରେ ମୋର ଅଯୋଧ୍ୟା ଯାତ୍ରାର ସଙ୍କଳ୍ପରୁ ମୁଁ ବିରତ ହେବି, ଏପରି ଆଶା ଆପଣଙ୍କର ନ କରିବା ଉଚିତ । ଆଜି ତାପରି,କବି ଉପେନ୍ଦ୍ର ରାଜ ସଂସର୍ଗକୁ ଚିରଦିନ ଘୃଣାଚକ୍ଷୁରେ ଦେଖି ଆସିଛି । ଆଜି ତାହାର ବ୍ୟତିକ୍ରମ ହେବା ଅସମ୍ଭବ ।

ପୁରୁ । କବୀନ୍ଦ୍ର ! ଗଜପତିଙ୍କର ନିମନ୍ତ୍ରଣ ଯେ କେବଳ ତୁମର ପ୍ରତିଭାକୁ ସମ୍ମାନ ଜଣାଇବା ଲାଗି ଉଦ୍ଦିଷ୍ଟ ।

ଉପେ । ମୁଁ ତାହା ଜାଣେ ମାନ୍ଧାତା ! କିନ୍ତୁ ମୋର ମାନସିକ ଅବସ୍ଥା ଆଜି ଅତି ଶୋଚନୀୟ । କବିଶେଖର ପିତାମହ ଧନଞ୍ଜୟଙ୍କ ହତ୍ୟା ପରେ ଦୁମୁସର ରଙ୍ଗମଞ୍ଚରେ ଯେଉଁ ବୀଭତ୍ସ ଦୃଶ୍ୟର ଅଭିନୟ ସବୁ ଦେଖି ଆସିଲି, ସେଥିରେ ମୁଁ ଯେ ଏ ପର୍ଯ୍ୟନ୍ତ କିପରି ଉନ୍ମାଦ ନ ହୋଇଛି, ତାହାହିଁ ଭାବୁଛି । ସୁତରାଂ, ମୋର ଏହି ମାନସିକ ବିପର୍ଯ୍ୟୟରେ, ଗଜପତିଙ୍କର ଆତିଥ୍ୟ ଗ୍ରହଣ କରିବାକୁ ମୁଁ ଆଜି ଏକାନ୍ତ ଅସମର୍ଥ ।

ପୁରୁ । ମୁଁ ଜାଣେ, ଚିରଦିନ ତୁମେ ତୁମର ଖିଆଲର ନିର୍ଦ୍ଦେଶରେ ଚାଳିତ । କେବେ କାହାର କୌଣସି ଅନୁରୋଧ ପ୍ରତି ତୁମେ ମର୍ଯ୍ୟାଦା ଦେଖାଇବାକୁ ଅନଭ୍ୟସ୍ତ । କିନ୍ତୁ ତଥାପି,ମୋର ଅନୁରୋଧ, ଗଜପତିଙ୍କର ଏହି ଅଯାଚିତ ସ୍ନେହର ଅବମାନନା କର ନାହିଁ ।

ଉପେ । ମୋର ମନେ ହୁଏ ମାନ୍ଧାତା ! ଆପଣଙ୍କର ଏହି ଅନୁରୋଧ, ମୋର ନିରୀହ କବିଆତ୍ମା ଉପରେ ଗୋଟାଏ ଗୁରୁତର ଅତ୍ୟାଚାର । ସେଥିଲାଗି ମୁଁ ବଡ଼ ଦୁଃଖିତ । ହୁଏତ ଆପଣ ମୋର ଅବସ୍ଥାକୁ ସମ୍ୟକ୍ ଉପଲବ୍ଧି କରିପାରୁ ନାହାନ୍ତି । ଦୂତ । ତୁମେ ଫେରିଯାଅ । ଗଜପତି ସମ୍ରାଟଙ୍କୁ ମୋର ସହସ୍ର ବିନୀତ ନମସ୍କାର ଜଣାଇ କହିବ ଯେ, ଉପେନ୍ଦ୍ର ତାଙ୍କର ସାଦର ନିମନ୍ତ୍ରଣକୁ ଅବନତ ମସ୍ତକରେ ଗ୍ରହଣ କରିଛି । କିନ୍ତୁ

କେତେକ ଅନିବାର୍ଯ୍ୟ କାରଣ ଯୋଗୁଁ ସେ ବର୍ତ୍ତମାନ ଗଜପତିଙ୍କର ଦରବାରରେ ଉପସ୍ଥିତ ହୋଇ ପାରିବ ନାହିଁ। ବିଶେଷତଃ ଅଯୋଧ୍ୟା ଯାତ୍ରାଲାଗି ସେ ବର୍ତ୍ତମାନ ବ୍ୟାକୁଳ ଓ କାଲି ପ୍ରଭାତରୁ ସେ ନୟାଗଡ଼ ତ୍ୟାଗ କରିବ। ଆଶା କରେଁ, ଦୂତଭାବେ, ଏହି ସମ୍ବାଦ ବହନ କରି ନେବାକୁ, ବର୍ତ୍ତମାନ ତୁମର ଆଉ କୌଣସି ଆପତ୍ତି ନ ଥିବ।

ଦୂତ। ସମ୍ବାଦ ବହନ କରିନେବାହିଁ ତ ଦୂତର କାର୍ଯ୍ୟ, କବିବର! କିନ୍ତୁ ସେ ସମ୍ବାଦ ସମ୍ରାଟଙ୍କର ପ୍ରିୟ ହେବ କି ଅପ୍ରିୟ ହେବ, ସେ ଦାୟିତ୍ୱ ତ ମୋର ନୁହେଁ। ସେ ଦାୟିତ୍ୱ ଆପଣଙ୍କର।

ଉପେ। ସେ ଦାୟିତ୍ୱ ମୁଁ ସ୍ୱଚ୍ଛନ୍ଦରେ ଗ୍ରହଣ କରୁଛି, ଦୂତ! ସୁତରାଂ ତୁମେ ନିଶ୍ଚିନ୍ତ ରହିପାର।

ପୂରୁ। କେମାମଣି! ଖୁବ ସମ୍ଭବ କୌଣସି ନୂତନ କାବ୍ୟ ରଚନାରେ ବ୍ୟସ୍ତଥିବା ଯୋଗୁଁ, ତୁମେ ବୋଧହୁଏ ଆଜିର ଏହି ନିମନ୍ତ୍ରଣ ରକ୍ଷା କରିବାକୁ ଏତେ ଅନିଚ୍ଛୁକ।

ଉପେ। ଏ ଧାରଣା ଜାତ ହେବାର କୌଣସି ପ୍ରତ୍ୟକ୍ଷ ପ୍ରମାଣ କି ଆପଣ ପାଇଛନ୍ତି, ମାଉସା?

ପୂରୁ। ତୁମର ନିକଟରେ ଥିବା ସେହି ପୋଥି ଓ ଲେଖନୀରୁ ମୁଁ ଏହା ଅନୁମାନ କରୁଛି ମାତ୍ର।

ଉପେ। ଓ—ଏହି ପୋଥି କଥା କହୁଛନ୍ତି? ଏହା ସହିତ ନିମନ୍ତ୍ରଣ ରକ୍ଷା ନ କରିବାର କୌଣସି ସମ୍ପର୍କ ନାହିଁ। ଏହାତ କୌଣସି ନୂତନ କାବ୍ୟ ନୁହେଁ। ଏହା ଏକ ଅଭିଧାନ ବିଶେଷ। ମୋର କାବ୍ୟ କବିତା ରଚନାରେ ଯେଉଁ ସବୁ ଶବ୍ଦକୁ ମୁଁ ଭିନ୍ନ ଭିନ୍ନ ଅର୍ଥରେ ବ୍ୟବହାର କରି ପାରିଛି, ତାର ଏକ ବିସ୍ତୃତ ଟିପ୍ପଣୀ କେବଳ ଅଭିଧାନ ଆକାରରେ ବଙ୍ଗଳା ଶ୍ରୀ ଛନ୍ଦରେ ରଚନା କରିଛି। କ ଠାରୁ କ୍ଷ ପର୍ଯ୍ୟନ୍ତ ପ୍ରାନ୍ତରେ ଥିବା ସାର ସାର ଶବ୍ଦ ସବୁ ବାଛି, ତାର ଭିନ୍ନାର୍ଥ ଜଣାଇଦେବା ମୋର ଉଦ୍ଦେଶ୍ୟ। ଆପଣ ଏହାକୁ ସ୍ୱଚ୍ଛନ୍ଦରେ ଉପେନ୍ଦ୍ରର କାବ୍ୟ ପ୍ରବେଶିକା

ଅଭିଧାନ ବୋଲି ଗ୍ରହଣ କରି ପାରନ୍ତି । ସୁତରାଂ, ଏହି ରଚନାର ନାମ ରଖିଛି—ଗୀତାଭିଧାନ ।

ପୁରୁ । ସତେ; ଅନ୍ତର୍ଯାମି ! ଏ ପୁଣି ଏକ ଅଦ୍ଭୁତ ରଚନା । ମୁଁ ଯେ ଏହାକୁ ଧାରଣା କରିପାରୁ ନାହିଁ, କବି ! ଏହାର ଆରମ୍ଭ କିପରି କରିଛ ?

ଉପେ । ଶୁଣନ୍ତୁ—(ପୋଥି ଖୋଲି ପଢ଼ିଲେ ।)

ଗୀତ ଅଭିଧାନ ହୋଇ ସାବଧାନ ଶୁଣ ସୁଜନେ ସନ୍ତୋଷେ,
ଅମର ନି କାଣ୍ଡ ଯାଦବ ଶାଶ୍ୱତ ମେଦନୀ ବିଶ୍ୱ ପ୍ରକାଶେ ॥
ପ୍ରଚୁର ଶବଦ ଯେତେ ତା'କହିବା, ଛାଡ଼ି ଅପ୍ରଚୁର ମାନ,
ବୁଝାଇଲେ ମୂର୍ଖେ ବୁଝିବେ ଅକ୍ଲେଶେ, ସୁଭିବେ କୋବିଦ ଜନ ॥
କ ଠାରୁ କ୍ଷ ଯାଏ ପ୍ରାନ୍ତାକ୍ଷର ଘେନି ବର୍ଗ ବର୍ଗ ଏ ହୋଇବ,
ଏକା ଶବଦକୁ ନାନାର୍ଥେ ବୁଝାଇ କବିଙ୍କି ପ୍ରମୋଦ ଦେବ ॥

ପୁରୁ । ଗୋଟାଏ ଯୋଡ଼ାଏ ଶବ୍ଦର ବ୍ୟବହାର ନ ଶୁଣିଲାଯାଏଁ, ମୁଁ ଯେ ଧୈର୍ଯ୍ୟ ଧରି ରହିପାରୁ ନାହିଁ, କବି !

ଉପେ । ଅଚ୍ଛା—ପ୍ରାନ୍ତରେ "କ" ଥାଇ ଗୋଟିଏ ଶବ୍ଦର ବହ୍ୱର୍ଥ ଶୁଣନ୍ତୁ । (ପୋଥି ଦେଖି)

କନକ ସୁବର୍ଣ୍ଣ କନକ ଚମ୍ପା ଯେ କନକ ନାଗକେଶର,
କନକ ପୁଂନାଗ କନକ ସୁନାମ ପୁଣି କନକ ଧୂସ୍ତୁର ॥

ପ୍ରାନ୍ତରେ "ର" ଥାଇ ଆଉ ଗୋଟିଏ ଶବ୍ଦର ବହ୍ୱର୍ଥ ଶୁଣନ୍ତୁ । (ପୋଥି ଦେଖି)

ହରି ଚନ୍ଦ୍ର ସୂର୍ଯ୍ୟ ପବନ ମଦନା ବିଷ୍ଣୁ କିରଣ କେଶରୀ,
ଯମ ମର୍କଟ ମଣ୍ଡୁକ ଶୁକ ଅହି ଏ ପୁଣି ବୋଲନ୍ତି ହରି ॥

ପୁରୁ । ଅଚ୍ଛା କବି—ସାରଙ୍ଗ ଶବ୍ଦର ବହ୍ୱର୍ଥ ଏଥିରେ ଅଛି ?

ଉପେ । ନିଶ୍ଚୟ, ଗାନ୍ତ ପର୍ଯ୍ୟାୟରେ ଅଛି । ଶୁଣନ୍ତୁ ! (ପୋଥି ଦେଖି)

ପଦ୍ମ ମୃଗ ଶଙ୍ଖ ରଜନୀ ଚନ୍ଦ୍ରମା ଧନୁ ସୁବର୍ଣ୍ଣ ଚାତକ,
ହଂସ ମଳୟଜ ଘେନିଣି ସାରଙ୍ଗ ନାମ ବହନ୍ତି ଏତେକ ॥

ପୁରୁ । ବାସ୍ତବିକ ହେମାମଣି ! ଆଜି ମୋର ଗର୍ବ କରିବାର କଥା ଯେ, ମୋର କ୍ଷୁଦ୍ର ନୟାଗଡ଼ ରାଜ୍ୟ କବିଶ୍ରେଷ୍ଠ ଉପେନ୍ଦ୍ରଙ୍କର ଅଲୌକିକ ପ୍ରତିଭାର ବିକାଶସ୍ଥଳୀ ରୂପେ, ଏ ଦେଶର ଇତିହାସରେ ଗୋଟାଏ ଗୌରବମୟ ସ୍ଥାନ ଅଧିକାର କରି ପାରିଛି । କିନ୍ତୁ ପୁଣି ଯେତେବେଳେ ଭାବେଁ ଯେ, ଘୁମୁସରର ଏହି ଅମୂଲ୍ୟ ସମ୍ପତ୍ତିକୁ ଚିରଦିନ ଲାଗି ନୟାଗଡ଼ ରାଜ୍ୟରେ ବାନ୍ଧି ରଖିବାର ସାମର୍ଥ୍ୟ ମୋର ନାହିଁ, ସେତେବେଳେ ଗୋଟାଏ ଅବସାଦ ଆସି ମୋର ପ୍ରାଣଟାକୁ ଏକାବେଳକେ ବିକଳ କରି ପକାଏ । ପୁଣି ଆଜି, ତୁମର ଅଯୋଧ୍ୟା ଯାତ୍ରାର ସଂକଳ୍ପ ଶୁଣି ମୋର ଆଶଙ୍କା ହେଉଛି ଯେ, ହୁଏତ ଚିରଦିନ ଲାଗି ତୁମେ ତୁମର ପ୍ରିୟ ନୟାଗଡ଼କୁ ଛାଡ଼ି ଚାଲି ଯାଉଛ । ସତ୍ୟକହ ଉପେନ୍ଦ୍ର !—ଅଯୋଧ୍ୟାରେ ଥାଇ, ତୁମେ କଣ ଏ ଦେଶର ସ୍ମୃତିକୁ ଚିରଦିନ ଲାଗି ଭୁଲିପାରିବ ?

ଉପେ । (ଅଳ୍ପ ହସି) ବୃଥା ସନ୍ଦେହରେ ଏତେ ବିଚଳିତ ହେଉଛନ୍ତି କାହିଁକି, ମାନ୍ଧାତା ? ମୋର ଗୁରୁଦେବ ରଘୁନାଥଙ୍କର ଜନ୍ମସ୍ଥାନକୁ ଥରେ ମାତ୍ର ଦର୍ଶନ କରିବା ଲାଗି, ମୋର ଏହି ଅଯୋଧ୍ୟା ଯାତ୍ରାର ଆୟୋଜନ କିନା ? ନୋଚେତ୍ ମୋର ଗରୀୟସୀ ଜନ୍ମଭୂମିକୁ ଚିରଦିନ ଲାଗି ତ୍ୟାଗ କରି ଯିବାର କଳ୍ପନା ତ ମୋର ନାହିଁ । ଯେଉଁ କଳିଙ୍ଗ ଦେଶର ମୃତ୍ତିକା ଉପରେ ଉପେନ୍ଦ୍ରର ଏହି ସାମାନ୍ୟ କଳେବର, ସୂର୍ଯ୍ୟ କିରଣକୁ ଦର୍ଶନ କରିବାର ପ୍ରଥମ ସୁଯୋଗ ପାଇଥିଲା, ଯେଉଁ ଦେଶର ପୁଣ୍ୟ-ଧୂଳିକଣା ବ୍ୟତୀତ, ଦୁନିଆର ଅନ୍ୟ କୌଣସି ସ୍ଥାନରେ, ତାର ବିଲୟ ଯେ ଅସମ୍ଭବ । ତାପରେ, ଏହି ମାଳସାଧ୍ୱୀ ଯେ ମୋର ସଂସାର ବନ୍ଧନମୁକ୍ତ କଳାଜୀବନର ସର୍ବସ୍ୱ ।

ପୁରୁ । (ସୋତ୍ସାହେ) ବାସ୍ତବିକ ନୟାଗଡ଼ର କି ଏତେବଡ଼ ସୌଭାଗ୍ୟ ହେବ ଯେ, ତୁମଭଳି ଗୋଟାଏ କୌସ୍ତୁଭମଣିକୁ ସେ ତାର ବକ୍ଷରେ ଚିରଦିନ ଲାଗି ଧାରଣ କରି ରଖି ପାରିବ ?

ଉପେ । ମୋର ଅନୁରୋଧ, ମାନ୍ଧାତା ! ମୁଁ ଅଯୋଧ୍ୟାରୁ ଫେରିଆସି ଯେପରି ଓଡ଼ଗାଁ ରଘୁନାଥଙ୍କର ନୂତନ ମନ୍ଦିର ପ୍ରତିଷ୍ଠା କାର୍ଯ୍ୟରେ ଯୋଗ ଦେଇ ପାରିବି, ତାର ଉପଯୁକ୍ତ ବ୍ୟବସ୍ଥା କରିବେ ।

ପୁରୁ । ତୁମର ଏହି ଅନୁରୋଧକୁ ମୁଁ ମୋର ସମସ୍ତ ସାମର୍ଥ୍ୟ ଦେଇ ପାଳନ କରିବି, ଜେନାମଣି ! ଏ ଯେ ମୋ ଦେଶର କବି ସମ୍ରାଟଙ୍କର ଆଦେଶ !

ଦୂତ । ମୋତେ ବର୍ତ୍ତମାନ ବିଦାୟ ଦିଅନ୍ତୁ କବି ! ମୋର କର୍ତ୍ତବ୍ୟ ତ ଶେଷ ହୋଇଛି । ବୃଥାରେ ଆଉ ନୟାଗଡ଼ରେ ବସି ରହିବି କାହିଁକି ? ହୁଏତ, ତେଣେ ସମ୍ରାଟ, ମୋଠାରୁ ସମ୍ବାଦ ଜାଣିବା ଲାଗି, ବ୍ୟଗ୍ର ହୋଇ ଅପେକ୍ଷା କରି ବସି ରହିଥିବେ ।

ପୁରୁ । ଠିକ୍ କହୁଛ ଦୂତ ! ଆଉ ବିଳମ୍ବର ପ୍ରୟୋଜନ ନାହିଁ । ଶୀଘ୍ର ତୁମ୍ଭଙ୍କୁ ବିଦାୟ ଦେବାର ବନ୍ଦୋବସ୍ତ ମୁଁ କରିଦେବି, ଚାଲ ।

[ ଉଠି ଠିଆ ହେଲେ । ଉପେନ୍ଦ୍ର ମଧ୍ୟ ଠିଆ ହେଲେ । ଦୁହେଁ ପରସ୍ପରକୁ ଆଲିଙ୍ଗନ କଲେ । ଦୂତ ଉପେନ୍ଦ୍ରଙ୍କୁ ନମସ୍କାର କରି ସାରି, ପୁରୁଷୋତ୍ତମଙ୍କ ପଛେ ପଛେ କୁଟୀର ସନ୍ମୁଖସ୍ଥ ରାସ୍ତା ପାର ହୋଇ ଚାଲିଗଲେ । ଉପେନ୍ଦ୍ର କିଛିକ୍ଷଣ ସେମାନଙ୍କ ଯିବା-ପଥକୁ ଚାହିଁ ରହିଲେ ଓ ପରେ ପୋଥି ନେଇ ଲେଖନୀ ହସ୍ତରେ, ତହିଁରେ ମନୋନିବେଶ କଲେ । ଏହି ସମୟରେ କୁଟୀର ମଧ୍ୟରୁ ଦ୍ୱାର ଖୋଲି ମାଲୁଣୀ ହାସ୍ୟବତୀ, ଗୋଟିଏ ଫୁଲମାଳ ହାତରେ ଆସି ସେଠାରେ ପ୍ରବେଶ କଲେ । ]

ଉପେ । ହାସ୍ୟବତୀ—ଏ କଣ ? ହାତରେ ଫୁଲମାଳ ଯେ ?

ହାସ୍ୟ । କବି ସମ୍ରାଟଙ୍କର ଚରଣ ପୂଜା ଲାଗି ମାଲୁଣୀର ସାମାନ୍ୟ ଅର୍ଘ୍ୟ ।

ଉପେ । ବିଦୁଷୀ ତୁମେ । ଦେବତା ବାଞ୍ଛିତ ସାମଗ୍ରୀକୁ, ସାମାନ୍ୟ ମନୁଷ୍ୟଟାଏ ମୁଁ, ମୋ ଲାଗି କାହିଁକି ? ଫେରିଦିଅ ! ମୋର ରଘୁନାଥଙ୍କର ଚରଣରେ ଏହାର ସଦ୍‌ବ୍ୟବହାର ମୁଁ କରିବି ।

ହାସ୍ୟ । ତେବେ କଣ ମୋର ଏହି ସାମାନ୍ୟ ଅଭିନନ୍ଦନ ଦେଶର ଶ୍ରେଷ୍ଠ କବିଙ୍କର ଗ୍ରହଣଯୋଗ୍ୟ ହୋଇ ପାରିବ ନାହିଁ ?

ଉପେ । ତୁମର ଅଭିନନ୍ଦନ ଯେ ମୋର ସର୍ବାଗ୍ରେ ଗ୍ରହଣୀୟ, ହାସ୍ୟ ! କିନ୍ତୁ ତାହା ଏହି ଫୁଲମାଳରେ ନୁହେଁ । ମୋର କାବ୍ୟ ସଙ୍ଗୀତ ତୁମର କମନୀୟ କଣ୍ଠରୁ ଶୁଣିବାରେ, ଯେଉଁ ଆନନ୍ଦ ମୁଁ ଉପଲବ୍ଧି କରେ, ସେ ଆନନ୍ଦ ମୁଁ କଦାପି ଏହି ଫୁଲମାଳରୁ ପାଇ ପାରିବ ନାହିଁ, ମାଲୁଣି ! ସୁତରାଂ, ତୁମ ପାଖରୁ ମୁଁ ସେହି ସ୍ୱରଝଙ୍କାରର ଅଭିନନ୍ଦନ ପାଇବାକୁ ସର୍ବଦା ଲାଳାୟିତ । ମୋର ସେହିପରି ଅଭିନନ୍ଦନ କରିପାରିବ ବର୍ତ୍ତିମାନ ?

ହାସ୍ୟ । ଆପଣଙ୍କର ରଚନାକୁ ଗାଇ ପାରିବାରେ ହିଁ ଯେ ମୋର କଣ୍ଠର ଚରମ ସାର୍ଥକତା । ଶୁଣନ୍ତୁ, ଆପଣଙ୍କର କୋଟି ବ୍ରହ୍ମାଣ୍ଡ ସୁନ୍ଦରୀର ରୂପ ବର୍ଣ୍ଣନା —(ଗାଇଲେ)

ଅପାର ସଘନ ଜାଲ ହୋଇ ଉଦୟ,
ଅଟିଭ ପରିବଳରୁ ଧବଳ ମୟ ॥
ସ୍ତନତଟିଁ ସ୍ଫୁଟ କଳକଣ୍ଠ ସନ୍ତ,
ଅଚିର ପ୍ରଭାହିଁ ତାର ଦଶନ ଦଶଣ ॥
ଫେ ଅଛି ନକରି ହସି ଚାହିଁ ମୋହିଲ,
ନନ୍ଦୀବଣ ସଲିଳେ ଅଞ୍ଜନ ହୋଇଲ ॥

ହାସ୍ୟ । (ଗୀତ ହଠାତ୍ ବନ୍ଦ କରି) ଆଚ୍ଛା । କବି ! ଏହି ଛନ୍ଦଟିର ଛଅଗୋଟି ରାଗିଣୀ ବାନ୍ଧି ଲେଖା ହୋଇଛି, ତାହା ତ ମୁଁ ବୁଝିପାରିଲି ନାହିଁ ? ଚକ୍ରାଦେଶାକ୍ଷ, କାଫୀକାମୋଦୀ, ମାଳବଗୌଡ଼, ଏ ରାଗିଣୀ ଛଅଗୋଟିଯାକ କଣ ଏ ଛନ୍ଦଟିରେ ପ୍ରୟୋଗ କରାଯାଇ ପାରେ ?

ଉପେ । (ହସି) ନା—ହାସ୍ୟବତି ! ଏହି ଗୋଟିଏ ଛନ୍ଦ ମଧ୍ୟରେ ଛଅଗୋଟି ଭିନ୍ନ ଛନ୍ଦର ସୃଷ୍ଟି ହୋଇଛି । ତେଣୁ ଛଅଗୋଟି ଭିନ୍ନ ରାଗିଣୀ ସେହି ଛଅଗୋଟି ଛନ୍ଦଲାଗି ଦିଆ ଯାଇଛି ।

ହାସ୍ୟ । ମୋତେ ବୋଧହୁଏ ପରିହାସ କରୁଛନ୍ତି ? ନୋହିଲେ ଏ ଗୋଟିଏ ଛନ୍ଦ ମଧ୍ୟରେ ଛଅଗୋଟି ଛନ୍ଦ ରହିଲା କେଉଁଠାରେ ? ମୁଁ ତ ଦେଖି ପାରୁ ନାହିଁ ?

ଉପେ । ପରିହାସ ନୁହେଁ, ମାଲୁଣି ! ତୁମେ ଯାହା ଆବୃତ୍ତି କଲ, ତାହା ଚନ୍ଦ୍ରାଦେଶାକ୍ଷ ରାଗିଣୀ ଓ ତାହା ବର୍ଷାକାଳକୁ ଲକ୍ଷ୍ୟକରି ରଚିତ । ସେହି ପଦର ପ୍ରତ୍ୟେକରୁ ପ୍ରଥମ ଅକ୍ଷରଟିକୁ ବାଦ୍ ଦେଲେ, ତାହା ଶୀତ କାଳର ବର୍ଣ୍ଣନା ହୋଇଯିବ ଓ ତାର ରାଗିଣୀ ହେବ କାଫିକାମୋଦୀ । ପୁଣି ସେହି ପଦରୁ, ଆଉ ଗୋଟିଏ ଗୋଟିଏ ଅକ୍ଷର ବାଦ୍ ଦେଲେ, ତାହା ଗ୍ରୀଷ୍ମକାଳର ବର୍ଣ୍ଣନା ହୋଇଯିବ ଓ ତାର ରାଗିଣୀ ହେବ ମାଳବଗୌଡ଼ । ଏହିପରି ସେହି ଗୋଟିଏ ଛନ୍ଦ ମଧ୍ୟରେ ତିନୋଟି ଛନ୍ଦ ଲୁକ୍କାୟିତ ଭାବେ ରହିଛି । ତେଣୁ ତିନୋଟି ରାଗିଣୀର ନାମ ଦିଆଯାଇଛି ।

ହାରି । (ଆଶ୍ଚର୍ଯ୍ୟେ) ସମସ୍ତ ଛନ୍ଦଟା କଣ ଏହି ଭାବରେ ରଚିତ ?

ଉପେ । ହଁ, ସମଗ୍ର ଛାନ୍ଦଟି ଏହିପରି ! ତେଣୁ ସେହି ଛାନ୍ଦ ଶେଷରେ ଲେଖିଛି— ବାଖ୍ୟାତ ରସରେ ଭଞ୍ଜି ଲୁପ୍ତ ବର୍ଣ୍ଣର
ସୁମନରେ ମୋଦେ ଛନ୍ଦଛନ୍ଦ ବନ୍ଧୁର ॥

ହାରି । ଅଦ୍ଭୁତ ରଚନା ! ଏ ପ୍ରତିଭାକୁ କଳନା କରିବାର ଶକ୍ତି ହାରିବତୀର କୁଆଡ଼ୁ ଆସିବ, କବି ସମ୍ରାଟ ? ଏ ଯେ ଅଭିନବ, ଅପରୂପ, ଅଭୂତପୂର୍ବ !!! ଏ ପ୍ରତିଭା ଯେ ସମଗ୍ର ବିଶ୍ୱସାହିତ୍ୟର ନମସ୍ୟ । ଏଥିଲାଗି, ଦୀନା ମାଲୁଣୀର ନମସ୍କାର ଗ୍ରହଣ କରନ୍ତୁ, କବି !

[ ଶିରଲଗାଇ ପ୍ରଣିପାତ କଲେ ଓ ଉପେନ୍ଦ୍ର ହାତ ଉଠାଇ ଆଶୀର୍ବାଦ କରୁଥିଲେ । ]

---

# ଚତୁର୍ଥ ଦୃଶ୍ୟ

[କୁଙ୍ଗଡ ଦୁର୍ଗର ପ୍ରମୋଦ ଭବନ । ବିଳାସର ପରିପୂର୍ଣ୍ଣ ଉପକରଣରେ ସୁସଜ୍ଜିତ । ପୁଷ୍ପବଳଭୂତ ଗୋଟିଏ ଦୋଳ ଉପରେ ଅଧ ଚୁଷ୍ଟମନରେ ବସି ରହିଥିଲେ ରାଜା ନୀଳକଣ୍ଠ । ସମୟ—ରାତିର ପ୍ରଥମ ପ୍ରହର । ଦୁଇଜଣ ପରିଚାରିକା ଦୋଳଟିକୁ ଧୀର ଭାବରେ ଝୁଲାଉଥିଲେ । ସମ୍ମୁଖରେ ରାଜନର୍ତ୍ତକୀ ମଞ୍ଜରିକା ନୃତ୍ୟଗୀତଦ୍ୱାରା ରାଜାଙ୍କର ସନ୍ତୋଷ ବିଧାନ କରୁଛନ୍ତି । ମଞ୍ଜରୀକାଙ୍କର ବେଶ ଅତି ଲୋଭନୀୟ ହୋଇଛି । ମଧ୍ୟେ ମଧ୍ୟେ ନୃତ୍ୟଛନ୍ଦରେ ନର୍ତ୍ତକୀ ରାଜାଙ୍କର ଅତି ନିକଟକୁ ଚାଲିଯାଇ ତାଙ୍କର ହସ୍ତ ଚୁମ୍ବନ କରୁଥିଲେ । ]

ମଞ୍ଜୁ । (ଗୀତ) ମନା କଲି ସଖି ତୋତେ, ହେ ସଙ୍ଗାତ,
ନ ଅନାଅ ସୁନା ବଉନା ବୋଲନ୍ତେ
ଘୃଣା କଲୁ ସବୁ ମୋତେ ॥

ପରମାଦ ମଞ୍ଜି ମୋତେ ଦେଇ ଗୁଞ୍ଜି
ଖଞ୍ଜିଲୁ ତୁ ଅଣା ଫଳେ,
ଚକ୍ଷୁଇଷଣୀ ନ ଅଙ୍କୁରିଲା ଯେଣି
କାମ୍ପା ତାଙ୍କ ମୁଖ ତଳେ ।
ଏ ଗୋପ କଟକ ଟିକାକେ ପାଟକ
ଜାଣିକି ଅଟକ ଥାଇ,
ହଜାଇଲୁ ମତ ମଜାଇଲୁ ପ୍ରୀତ
ଦେଇ ଉପଇନ୍ଦ୍ର କହି ॥

ଗଜ। (ନୃତ୍ୟାନ୍ତେ) ଅଚ୍ଛା ମଞ୍ଜରୀକା ! କୁମାର ଉପେନ୍ଦ୍ରଙ୍କର ସଙ୍ଗୀତ ସବୁ ଗାନ କରିବାରେ ତୁମେ କଣ ବାସ୍ତବିକ ଏତେ ଆନନ୍ଦ ଉପଲବ୍ଧି କର ?

ମଞ୍ଜୁ। କେବଳ ଆନନ୍ଦ ନୁହେଁ, ମହାରାଜ ! ଘୁମୁସର ନର୍ତ୍ତକୀ ତାର ଦେଶର କବିଶ୍ରେଷ୍ଠଙ୍କର ସଙ୍ଗୀତ ଗାଇବାରେ ଯଥେଷ୍ଟ ଗର୍ବ ମଧ୍ୟ ଅନୁଭବ କରେ। କାରଣ ନିଜ ଦେଶର ଗୋଟାଏ ମୂଲ୍ୟବାନ ରତ୍ନକୁ ଆଦର କରିପାରିବାରେ ଯେ ଯଥାର୍ଥ ଗୌରବ।

ଗଜ। କିନ୍ତୁ ତାହା ବୋଲି, ପ୍ରମୋଦ କକ୍ଷରେ। ଚିନ୍ତାମଣିଙ୍କର ପିତା ମୁଁ—ମୋ ସମ୍ମୁଖରେ ସର୍ବଦା ତାଙ୍କର ସଙ୍ଗୀତ ବ୍ୟତୀତ, ଅନ୍ୟ ସଙ୍ଗୀତ କି ତୁମେ ଗାଇ ପାରନା, ନର୍ତ୍ତକି ?

ମଞ୍ଜୁ। (ହସି) ପାରିବି ନାହିଁ କାହିଁକି ? କିନ୍ତୁ ମୋର ମନେ ହୁଏ, ଗଙ୍ଗାର ପୂତ ବାରିଧାରକୁ ନେଇ ଗଙ୍ଗାଙ୍କୁ ପୂଜା କରିବାରେ ଅଧିକ ମାହାତ୍ମ୍ୟ ଅଛି, ମଣିମା।

ଗଜ। ମଞ୍ଜରୀକା, ତୁମେ ଚତୁରୀ ! ସୁତରାଂ ତୁମ ସହିତ ଯୁକ୍ତିକରି ତୁମ୍ଭଙ୍କୁ ପରାସ୍ତ କରିବା ଅସମ୍ଭବ। କିନ୍ତୁ ନର୍ତ୍ତକି ! ଜାଣକି, ଆଜି ମୋର କେତେ ବଡ଼ ଦୁଃଖ ? ମୋର ସନ୍ତାନ,—ଯାହାର କବି ପ୍ରତିଭାର ପ୍ରଶଂସାରେ ତୁମେ ଶତମୁଖୀ,—ସେହି କୁମାର ଉପେନ୍ଦ୍ର, ମୋର ରାଜତ୍ୱକୁ ଅନୁମୋଦନ ନ କରି,ମୋର ପ୍ରକାଶ୍ୟ ଶତ୍ରୁ ରୂପେ ଚିରଦିନ ଲାଗି ଘୁମୁସର ତ୍ୟାଗ କରି ଚାଲିଗଲା। ମୋର ଗୁଣୀ ପୁତ୍ରର ଏହି ଉପେକ୍ଷା,ଏହି ଅବଜ୍ଞା, ପିତାର ପ୍ରାଣରେ କି କଠିନ ଆଘାତ ଦିଏ,ମଞ୍ଜରୀକା ? ତେଣୁ ଚିନ୍ତାମଣିଙ୍କର ସଙ୍ଗୀତ କି କାବ୍ୟ କବିତା ଶୁଣିବାକୁ ମୁଁ ଆଜି ସହ୍ୟ କରିପାରୁ ନାହିଁ।

ମଞ୍ଜୁ। କ୍ଷମା କରିବେ ମହାରାଜ। କୁମାର ଉପେନ୍ଦ୍ର, ବୋଧହୁଏ କ୍ଷଣିକ ଉତ୍ତେଜନାରେ ମଣିମାଙ୍କର ଏହି ରାଜନୈତିକ ବିଚକ୍ଷଣତାକୁ ସମର୍ଥନ କରିପାରି ନାହାନ୍ତି। କିଛି ଦିନ ପରେ, ହୁଏତ ନିଜର ଭ୍ରମ ବୁଝିପାରି ପୁଣି କୁଳାଡ଼ ଦୁର୍ଗକୁ ଫେରି ଆସିବେ।

ଶାଳ । ଅସମ୍ଭବ ! ଜେନାମଣିଙ୍କର ଚରିତ୍ର ତୁମେ ବୋଧହୁଏ ଜାଣନା, ନର୍ତ୍ତକି ! କିନ୍ତୁ ମୁଁ ତାଙ୍କର ପିତା, ସୁତରାଂ ମୁଁ ତାଙ୍କୁ ଭଲକରି ଜାଣେ । ତାଙ୍କର କଥା ଓ କାର୍ଯ୍ୟ ମଧ୍ୟରେ କୌଣସି ବ୍ୟବଧାନ ନ ଥାଏ । କଳ୍ପନାର ରଙ୍ଗୀନ ରାଜ୍ୟରେ ବିଚରଣ କରି ସୁଦ୍ଧା, ବାସ୍ତବତା ପ୍ରତି ସେ ସର୍ବଦା ସଚେତନ । ଜୀବନରେ ଯାହା ଥରେ ସେ ଉଚିତ ବୋଲି ଭାବିଥାନ୍ତି, ତାହା ବିରୁଦ୍ଧରେ କୌଣସି ଯୁକ୍ତିକୁ ସେ ଗ୍ରହଣ କରିବାକୁ ଏକାବେଳକେ ନାରାଜ ।

ମଞ୍ଜି । ତା ହେଲେ ତ ଏ ଗୋଟାଏ ବିଷମ ସମସ୍ୟା, ମଣିମା ?

[ ସହସା ସେନାପତି ବେଶରେ ଦନ୍ତା ଦମ୍ଭାର ପ୍ରବେଶ ]

ଦନ୍ତା । କିନ୍ତୁ ସମସ୍ୟାର ଏତ ଆରମ୍ଭ ମାତ୍ର । ଏଣିକି କ୍ରମେ କ୍ରମେ ଧାରାବାହିକ ବିଷମ ସମସ୍ୟାର ଆବର୍ତ୍ତ ଯେପରି ଅପ୍ରତିହତ ବେଗରେ ଆରମ୍ଭ ହେଲାଣି, ସେଥିରେ ତାର ଗତିପଥ ରୁଦ୍ଧ କରିବା ଯେ ଅସମ୍ଭବ ହୋଇ ଉଠୁଛି, ମହାରାଜ !

ଶାଳ । କି ସମ୍ବାଦ ଦନ୍ତା ? ତୁ ପୁଣି କି ସମସ୍ୟାର ଆବର୍ତ୍ତରେ ହଠାତ୍ ଏତେ ବ୍ୟତିବ୍ୟସ୍ତ ହୋଇ ଉଠିଲୁ ?

ଦନ୍ତା । ମୋର ନିଜ ଲାଗି ବ୍ୟସ୍ତ ହେବାର କୌଣସି କାରଣ ନାହିଁ, ମହାରାଜ ! କିନ୍ତୁ ତୁମର ସିଂହାସନ ଲାଗି ଅନେକ କିଛି ଭାବିବାର ପ୍ରୟୋଜନ ବର୍ତ୍ତମାନ ବୋଧ ହେଉଛି ।

ଶାଳ । ତାର ମାନେ ?

ମଞ୍ଜି । ତୁମର କଥାଗୁଡ଼ିକ ଟିକିଏ ସହଜ ସରଳ ଭାବରେ ପ୍ରକାଶ କରିବାକୁ, ଏତେ କୁଣ୍ଠା କାହିଁକି, ଦନ୍ତା ?

ଦନ୍ତା । (ବିରକ୍ତ ହୋଇ) ଦନ୍ତା ଦମ୍ଭା ବର୍ତ୍ତମାନ ରାଜ୍ୟର ନବୀନ ସେନାପତି । ସୁତରାଂ, ତାର କଥା ଉପରେ ଟିପ୍ପଣୀ କରିବାକୁ ତୁମର କୌଣସି ଅଧିକାର ନାହିଁ, ରାଜନର୍ତ୍ତକି ! ଆଶା କରେଁ, ମହାରାଜ ମୋତେ ଏ କ୍ଷେତ୍ରରେ ସମର୍ଥନ କରିବେ ।

ଶାଳ । (ଇଙ୍ଗିତ କରିବାରୁ ରାଜନର୍ତ୍ତକୀ ଓ ପରିଚାରିକା ଦୁଇଜଣ ନମସ୍କାର କରି ପ୍ରସ୍ଥାନ କଲେ ।) ବ୍ୟାପାର କଣ ଦନ୍ତୀ ? ତୁ ଯେ ନିତାନ୍ତ ଉତ୍ତେଜିତ ହୋଇ ପଡ଼ିଛୁ ?

ଦନ୍ତୀ । ମହାରାଜ ! ଗୁପ୍ତଚର ମୁଖରୁ ବର୍ତ୍ତମାନ ସମ୍ବାଦ ପାଇଲି ଯେ, ଗାଳେଣ୍ଡି ସର୍ଦ୍ଦାର ଭୁଗୁଡ଼ା ଓ ଜଗନ୍ନାଥ ପ୍ରସାଦ ମୁଠାର ସର୍ଦ୍ଦାରମାନଙ୍କ ସହିତ ମିଳି ଗୋଟାଏ ବିରାଟ ବିଦ୍ରୋହର ପରିକଳ୍ପନା କରୁଛନ୍ତି । ନିର୍ବାସିତ କୁମାର ଘନଭଞ୍ଜ ଏହି ବିଦ୍ରୋହର ପରିଚାଳକ,ଆଉ ଧବଳକୋଟର ସାମନ୍ତ ରାଜା ରାମଚନ୍ଦ୍ର ସିଂହ, ଏଥିଲାଗି ତାଙ୍କୁ ତାଙ୍କର ସମସ୍ତ ସେନା ସାହାଯ୍ୟ ଦେଇଛନ୍ତି ।

ଶାଳ । (ଦୋଳିରୁ ଉଠିପଡ଼ି) ନିର୍ବାସିତ ଘନ ଭଞ୍ଜର ପୁଣି ଏତେଦୂର ଅସ୍ପର୍ଦ୍ଧା ଯେ, ସେ ଘୁମୁସର ସିଂହାସନ ବିରୁଦ୍ଧରେ ବିପ୍ଳବ ସୃଷ୍ଟି କରିବାକୁ ଉଦ୍ୟତ ?

ଦନ୍ତୀ । ବିଷୟଟା ଏତେ ସରଳ ଭାବରେ ଗ୍ରହଣ କରନ୍ତୁ ନାହିଁ, ମହାରାଜ ! ମୃତ ପାଟଦେଈଙ୍କର ନବଜାତ ଶିଶୁପୁତ୍ରଙ୍କୁ,ଘୁମୁସରର ନୂତନ ରାଜା ବୋଲି ଘୋଷଣା କରି, ଆପଣଙ୍କ ବିରୁଦ୍ଧରେ ସମଗ୍ର ରାଜ୍ୟର ପ୍ରଜାମାନଙ୍କୁ ଉତ୍ତେଜିତ କରିବାରେ, ସେମାନେ ବଦ୍ଧପରିକର । ସୁତରାଂ, ଅବସ୍ଥା ବଡ଼ ସାଙ୍ଘାତିକ ।

ଶାଳ । ପାଟଦେଈଙ୍କର ନବଜାତ ଶିଶୁପୁତ୍ର !! ତୁ କଣ ସ୍ୱପ୍ନ ଦେଖୁଛୁ ଦନ୍ତୀ ?

ଦନ୍ତୀ । ଆପଣଙ୍କର ସିଂହାସନ ଲାଭ କରିବା ପୂର୍ବରୁ, ଦନ୍ତୀର ସ୍ୱପ୍ନ ଦେଖିବାକୁ ଯଥେଷ୍ଟ ସୁଯୋଗ ଥିଲା, ମହାରାଜ ! କିନ୍ତୁ ବର୍ତ୍ତମାନ, ନିର୍ମମ ବାସ୍ତବତାରେ ସେ ଅତ୍ୟଧିକ ବିଚଳିତ । ଦେବୀ ମାଧବିକା ଯେ ଗର୍ଭାବସ୍ଥାରେ କୁଲାଡ଼ ଦୁର୍ଗ ତ୍ୟାଗ କରି ଯାଇଛନ୍ତି, ଏ କଥା ଏତେ ଚଞ୍ଚଳ ଭୁଲିଗଲେ ଚଳିବ କିପରି ?

ଶାଳ । ଏତେଦୂର ? ଅଚ୍ଛା—ମାଧବିକା ବର୍ତ୍ତମାନ କେଉଁଠାରେ ?

ଦନ୍ତା । ଖୁବ୍ ସମ୍ଭବ, ଗାଲେସ୍ତି ସର୍ଦ୍ଦାରଙ୍କର ତତ୍ତ୍ୱାବଧାନରେ, ତାଙ୍କୁ ଅତି ଗୁପ୍ତ ସ୍ଥାନରେ ରଖାଯାଇଛି । ତାଙ୍କ ଉପରେ ବର୍ତ୍ତମାନ ହସ୍ତକ୍ଷେପ କରିବାର ଉପାୟ କିଛି ନାହିଁ । ତେଣୁ ମୋର ଆଶଙ୍କା ହୁଏ, ଏ ସିଂହାସନ ହୁଏତ, ଆପଣଙ୍କୁ ତ୍ୟାଗ କରିବାକୁ ପଡ଼ିବ ।

ଗାଲ । ଚୁପ୍ କର, ଦନ୍ତା । କୁଳଡ଼ ଦୁର୍ଗ ରକ୍ଷା କରିବା ନିମନ୍ତେ, ଘୁମୁସର ରାଜ୍ୟର ସୈନ୍ୟବାହିନୀ କଣ ଏକାନ୍ତ ଅସମର୍ଥ ?

ଦନ୍ତା । କ୍ଷମା କରିବେ ମହାରାଜ ! କେତେକ ଅପ୍ରିୟ ସତ୍ୟ କହିବାକୁ ବାଧ୍ୟ ହେଉଛି । ଦୁର୍ଗ ରକ୍ଷା କରିବା ଲାଗି ଯଥେଷ୍ଟ ସୈନ୍ୟବାହିନୀ ଅଛନ୍ତି, ସତ, କିନ୍ତୁ ମୋର ଆଦେଶକୁ ଯଦି ସେମାନେ ପାଳନ ନ କରନ୍ତି ?

ଗାଲ । ତୋ ପରି ଅପଦାର୍ଥ ହାତରେ ପଡ଼ି, ସୈନ୍ୟବାହିନୀର ଅବସ୍ଥା ଯେ ଏପରି ଶୋଚନୀୟ ହୋଇ ପାରେ, ଏହା ମୋର ଧାରଣା ନ ଥିଲା ।

ଦନ୍ତା । (ହାସ୍ୟେ) ଏହା ଆପଣଙ୍କର ଅନ୍ୟାୟ ମନ୍ତବ୍ୟ, ମହାରାଜ ! ମୁଁ ପ୍ରଥମରୁ କହିଛି ଏତେ ପୁରୁଣା ମନ୍ତ୍ରୀ ଓ ଅଧ୍ୟକ୍ଷ ଉପରେ ସିଂହାସନର ଭାର ସ୍ଥାପନ କରିବା ଆଦୌ ଉଚିତ ନୁହେଁ । କିନ୍ତୁ ମୋର ମତାମତକୁ, ପାଗଳର ପ୍ରଳାପ ବୋଲି, ଉପେକ୍ଷା କରିଥିଲେ ଆପଣ ବହୁ ପରେ ଉଡ଼ାଇ ଦେଇଥିଲେ । ସୁତରାଂ, ଆଜିର ଏହି ପରିସ୍ଥିତି ନିମନ୍ତେ, ମୁଁ କଦାପି ଦାୟୀ ହୋଇ ନ ପାରେ ।

ଗାଲ । ମହାମନ୍ତ୍ରୀ ବୃନ୍ଦାବନଙ୍କୁ ଏ ସମ୍ବାଦ ଦେଇଥିଲୁ ?

ଦନ୍ତା । ତାଙ୍କୁ ସମ୍ବାଦ ଦେବାରେ କୌଣସି ପ୍ରୟୋଜନ ତ ଦେଖି ପାରୁ ନାହିଁ । ଏ ବିଦ୍ରୋହର ସୂତ୍ରପାତ ଯେ ତାଙ୍କର ଇଙ୍ଗିତରେ, ଏ ବିଶ୍ୱାସ ଯଦି ଆପଣଙ୍କର ନାହିଁ, ତେବେ, ମାଫ୍ କରିବେ, ମହାରାଜ ! ଏ ରାଜ୍ୟର ସିଂହାସନରେ ବସି ରହିବାର କୌଣସି ଯୋଗ୍ୟତା ଆପଣଙ୍କର ନାହିଁ ।

ଶାଳ । (କ୍ରୋଧରେ) ମୋର ବେତନଭୋଗୀ ଭୃତ୍ୟଠାରୁ, ଏପରି ଅସଂଯତ ସମାଲୋଚନା ଶୁଣିବାକୁ ମୁଁ ଆଦୌ ଅଭ୍ୟସ୍ତ ନୁହେଁ, ଦଳାଁ !

ଦଳାଁ । ମୋର ଦୁଃସାହସ ଲାଗି ମୋତେ ମାର୍ଜନା କରନ୍ତୁ, ମହାରାଜ ! ଅନ୍ନଦାତାଙ୍କର ମଙ୍ଗଳ କାମନା ଉଦ୍ଦେଶ୍ୟରେ, ଆତ୍ୟଧିକ ଉତ୍ସାହ ଦେଖାଇବାକୁ ଯାଇ, ମୁଁ ନିଜକୁ ଅସୃତରେ ରଖିପାରି ନାହିଁ ।

ଶାଳ । ଉତ୍ତମ ! ତୁ ବର୍ତ୍ତମାନ ମହାମନ୍ତ୍ରୀଙ୍କୁ ସମ୍ବାଦ ଦେ । ମୁଁ ରାଜମାତାଙ୍କ ସହିତ ମନ୍ତ୍ରଣା କକ୍ଷରେ ତାଙ୍କୁ ଅପେକ୍ଷା କରୁଛି । ମୁଁ ଆଜି ରାତି ମଧ୍ୟରେ ସୁସ୍ପଷ୍ଟରୂପେ ଜାଣିବାକୁ ଚାହେଁ, ସେ ବୃଦ୍ଧ ବୃଦ୍ଧଭାନୁ ବାସ୍ତବିକ ଏ ରାଜ୍ୟର ମହାମନ୍ତ୍ରୀ ହେବାକୁ ଚାହାନ୍ତି, ନା କେବଳ ପ୍ରତାରକ ସାଜି ମହାମନ୍ତ୍ରୀର ଭୂମିକା ଅଭିନୟ କରିବାକୁ ଚାହାନ୍ତି !! ତା ପରେ— ପାଟଦେଈଙ୍କର ଶିଶୁପୁତ୍ର ଆଉ ଯୁବକ ଧନଞ୍ଜୟର ଗୁପ୍ତହତ୍ୟା,—ରାଜା ନୀଳକଣ୍ଠଙ୍କର ରାଜତ୍ୱର ଶେଷ ପୂର୍ଣ୍ଣାହୁତି । (ଦ୍ରୁତ ପ୍ରସ୍ଥାନ)

ଦଳାଁ । ହାୟରେ ଆଶା !! ନିମକହରାମ ନାବିକର ପୁଣି ତୃଣଖଣ୍ଡ ପ୍ରତି ଏତେ ମମତା ? ଏହା ବୁଧାଡାର ପରିହାସ ନା ମୂର୍ଖର ଅଭିନୟ ? (କାନ୍ଦି କାନ୍ଦି ବିପରୀତ ଦିଗେ ପ୍ରସ୍ଥାନ ।)

---

## ପଞ୍ଚମ ଦୃଶ୍ୟ

[ ଗାଲେଶ୍ୱ ଗୁପ୍ତ ଗିରିଦୁର୍ଗର ସମ୍ମୁଖବର୍ତ୍ତୀ ପ୍ରାନ୍ତର । ସମୟ ପୂର୍ବାହ୍ନ । ସୂର୍ଯ୍ୟଙ୍କର ତରୁଣ କିରଣ ରେଖାରେ ସମଗ୍ର ପ୍ରାନ୍ତରଟି ଉଦ୍‌ଭାସିତ । ପ୍ରାନ୍ତର ମଧ୍ୟରେ ଅସଂଖ୍ୟ ଜନତା ଓ ଜନ୍ନ ପାଇକବର୍ଗ । ସେମାନଙ୍କ ମଧ୍ୟରେ ଖଣ୍ଡିଏ ଉଚ୍ଚ ପ୍ରସ୍ତର ଉପରେ ଠିଆ ହୋଇ ରହିଥିଲେ ଉତ୍ତେଜିତ ଘନଭଞ୍ଜ । ତାଙ୍କର ନିକଟରେ ଶିଶୁ ରାଜପୁତ୍ରଙ୍କୁ କୋଳରେ ଧରି ଠିଆ ହୋଇଥିଲେ, ରାଜବଧୂ ବିଧବା ମାଧବିକା । ତାଙ୍କର ନିକଟକୁ ଲାଗି, ଅନ୍ୟ ଖଣ୍ଡେ ପ୍ରସ୍ତର ଉପରେ ଗାଲେଶ୍ୱ ସର୍ଦ୍ଦାର, ଅଙ୍ଗ ସର୍ଦ୍ଦାର ହରିଶରଣ ଓ ସର୍ଦ୍ଦାର ଜଗନ୍ନାଥ ଠିଆ ହୋଇ ରହିଥିଲେ । ସମସ୍ତ ଜନତା ନୀରବ ହୋଇ, ଘନଭଞ୍ଜଙ୍କର ଜ୍ୱାଳାମୟୀ ବାଣୀକୁ ମନ୍ତ୍ରମୁଗ୍ଧ ପ୍ରାୟ ଶୁଣୁଥିଲେ । ]

ଘନ । (ଶିଶୁପୁତ୍ରକୁ ନେଇ) ସମସ୍ତ ଘଟଣା ତ ଆପଣମାନେ ଶୁଣି ସାରିଲେ । ବର୍ତ୍ତମାନ ଦେଖନ୍ତୁ, ଏହି ସେହି ହତଭାଗ୍ୟ ଶିଶୁ—ଆପଣ ମାନଙ୍କର ଯୁବରାଜ ଗଙ୍ଗାଧରଙ୍କର ନାତି, ମୃତ ପାଟଦେଉଙ୍କର ଏକମାତ୍ର ସନ୍ତାନ । ମୁଁ ଜାଣିବାକୁ ଚାହେଁ, ଏହି ଶିଶୁ ରାଜକୁମାରଙ୍କୁ ଆପଣମାନେ ତାଙ୍କର ନ୍ୟାଯ୍ୟ ସ୍ଥାନ ଦେବାକୁ ରାଜି କି ନା ? ଅଧିକ ସ୍ପଷ୍ଟ ଭାବରେ କହିବାକୁ ଗଲେ, ମୁଁ ଆପଣମାନଙ୍କୁ ପଚାରୁଛି—ଆପଣମାନେ ଆପଣ-ମାନଙ୍କର ଦେବୋପମ ଯୁବରାଜଙ୍କର ଏକମାତ୍ର ଜୀବିତ ବଂଶଧରଙ୍କୁ ଦମୁଗଡ ସିଂହାସନରେ ବସାଇବାକୁ ପ୍ରସ୍ତୁତ ନା ଅତ୍ୟାଚାରୀ ନୀଳକଣ୍ଠଙ୍କର ରାଜତ୍ୱକୁ ଅନୁମୋଦନ କରିବାକୁ ପ୍ରସ୍ତୁତ ? କୁହନ୍ତୁ, ମୁଁ କେବଳ ଆପଣ-ମାନଙ୍କର ମତାମତ ଜାଣିବାକୁ ଚାହେଁ ।

ଜନତା । (ନୀରବ ।)

ଘନ । ଆଶ୍ଚର୍ଯ୍ୟ, ମହାରାଜ ଧନଞ୍ଜୟଙ୍କର ନିର୍ମମ ହତ୍ୟା ସମ୍ବାଦ ଶୁଣି ମୁଦ୍ଧା, ଘୁମୁସରର ରାଜଭକ୍ତ ପ୍ରଜା ଯେ ଏପରି ନୀରବ ନିଶ୍ଚେଷ୍ଟ ଭାବରେ ରହିପାରେ, ଏ ଧାରଣା ମୋର ନ ଥିଲା । ଆପଣମାନେ କଣ ଅଜ୍ଞ ନିରୀହ ମେଷ ଶାବକଠାରୁ ମଧ୍ୟ ଅଧମ ହୋଇ ପଡ଼ିଲେ ? ଏତେ ବଡ ଅନ୍ୟାୟ, ଯାହା ପୃଥିବୀରେ କେହି କେବେ କଳ୍ପନା କରିପାରିବ ନାହିଁ, ତାହା କେବଳ ରାଜତ୍ବ ନାମରେ ପାଳି ହୋଇ ଚାଲିଯାଉଥିବ, ଅଥଚ ଆପଣ-ମାନେ ତାର କ୍ଷୀଣ ପ୍ରତିବାଦଟି ଏ ମୁଦ୍ଧା କରିପାରିବେ ନାହିଁ ?

ଜନତା । (ତଥାପି ନୀରବ ।)

ଘନ । ବେଶ୍, ତା ହେଲେ ମୁଁ ବୁଝି ପାରୁଛି, ରାଜା ନୀଳକଣ୍ଠଙ୍କର ରାଜତ୍ବରେ ଆପଣମାନେ ସନ୍ତୁଷ୍ଟ । ତାହାହିଁ ହେଉ । ଆପଣମାନଙ୍କ ଇଚ୍ଛା ବିରୁଦ୍ଧରେ, ଏହି ଶିଶୁ ରାଜକୁମାରଙ୍କୁ ମୁଁ ଘୁମୁସରର ରାଜା ବୋଲି ଘୋଷଣା କରି ନ ପାରେ । କିନ୍ତୁ, ମନେ ରଖିଥିବେ, ଅନ୍ୟାୟ ଭାବରେ ବର୍ବର ନୀଳକଣ୍ଠ, ଆପଣମାନଙ୍କର ପ୍ରଜାବତ୍ସଳ ବୃଦ୍ଧରାଜା ଧନଞ୍ଜୟଙ୍କୁ ବିଷ ପ୍ରୟୋଗ କରି ହତ୍ୟା କରିଛନ୍ତି, ଆପଣମାନଙ୍କର ତ୍ୟାଗୀ ଯୁବରାଜ ଗଙ୍ଗାଧର, ଆଉ ତାଙ୍କର ଏକମାତ୍ର ସ୍ନେହକପୁତ୍ର ଘାଟଦେଉଙ୍କୁ ମଧ୍ୟ ନିର୍ମମ ଭାବରେ ଘାତକଦ୍ୱାରା ହତ୍ୟା କରିଛନ୍ତି । ଆଉ ହୁଏତ, ଖୁବ୍ ନିକଟରେ ଆପଣମାନେ ଶୁଣି ପାରିବେ ଯେ, ଏହି ଶିଶୁ ରାଜପୁତ୍ର ମଧ୍ୟ ନୀଳକଣ୍ଠଙ୍କର ନିର୍ମମ ହତ୍ୟାରୁ ବାଦ୍ ଯାଇ ନାହାନ୍ତି । ଏହାହିଁ ଯଦି ଆପଣମାନଙ୍କର ନିତାନ୍ତ ଅଭିପ୍ରେତ, ତେବେ ଆଉ କାହିଁକି ? ନିଅନ୍ତୁ—ଆପଣମାନଙ୍କ ହସ୍ତରେ ଏହି ପିତୃହୀନ ଶିଶୁର ଭାର ଅର୍ପଣ କରୁଛି । ନେଇ ଯାଆନ୍ତୁ, ଏହି ଶିଶୁର ଜୀବନକୁ ଉପହାର ଦେଇ, ଆପଣମାନେ ରାଜା ନୀଳକଣ୍ଠଙ୍କ-ଠାରୁ ପ୍ରଚୁର ପୁରସ୍କାର ପାଇ ପାରିବେ, ଆଉ ରାଜଭକ୍ତିର ନିଦର୍ଶନ ମଧ୍ୟ ଦେଖାଇ ପାରିବେ ।

ଜନତା । (ସହସ୍ର କଣ୍ଠରେ) ନା—ତା ହୋଇ ପାରିବ ନାହିଁ, ଶିଶୁ ରାଜକୁମାରଙ୍କ ହତ୍ୟା ଆମ୍ଭେମାନେ ସହ୍ୟ କରି ପାରିବୁ ନାହିଁ । ତାଙ୍କୁ ଯେ କୌଣସି ଉପାୟରେ ବଞ୍ଚାଇ ରଖିବାକୁ ହେବ ।

ଧନ । ଉତ୍ତମ—ଆପଣମାନଙ୍କର ଅଭିମତ ମୁଁ ଜାଣି ପାରିଲି । କିନ୍ତୁ କି ଉପାୟରେ ତାଙ୍କୁ ବଞ୍ଚାଇ ରଖିବାକୁ ହେବ ? ବହୁକଷ୍ଟ ସ୍ୱୀକାର କରି ଗାଲେଶ୍ୱ ମୁଠାର ଏହି କଳସର୍ଦ୍ଦାର ଏ ପର୍ଯ୍ୟନ୍ତ ଏ ଶିଶୁର ଜୀବନ ବଞ୍ଚାଇ ରଖି ଆସି ପାରିଛନ୍ତି । କିନ୍ତୁ ସେ ତ ଆଉ ବେଶୀ ଦିନ ଏହିପରି ରାଜକୁମାରଙ୍କୁ ଲୁଚାଇ ରଖି ପାରିବେ ନାହିଁ । ସୁତରାଂ ଆପଣମାନଙ୍କର ସହାୟତା ନ ପାଇଲେ ରାଜକୁମାରଙ୍କର ଜୀବନ ଯେ ନିଶ୍ଚୟ ବିପନ୍ନ ହେବ । ଆଉ, ଗାଲେଶ୍ୱ ମୁଠାର କି ଶକ୍ତି ଅଛି ଯେ, ଯାହା ବଳରେ ସେ ଉଗ୍ରାତ୍ମ ଗାଲକଣ୍ଠଙ୍କର ବିରୁଦ୍ଧରେ ସଗର୍ବରେ ଦଣ୍ଡାୟମାନ ହୋଇ ପାରିବ ?

ଜନତା । ଏହି ଶିଶୁ ରାଜକୁମାରଙ୍କ ନିମନ୍ତେ ଆମ୍ଭେମାନେ ସବୁ ପ୍ରକାର ସାହାଯ୍ୟ ଦେବାକୁ ପ୍ରସ୍ତୁତ । ଏପରି କି, ପ୍ରୟୋଜନ ପଡ଼ିଲେ, ଏଥିଲାଗି ଆମର ଜୀବନ ମୂଲ୍ୟ ଦାନ କରିବାକୁ ଆମ୍ଭେମାନେ କୁଣ୍ଠିତ ହେବୁ ନାହିଁ ।

ଧନ । ଘୁମୁସର ପ୍ରଜାଙ୍କର ଏହି ଅକୃତ୍ରିମ ପ୍ରଭୁଭକ୍ତି ନିମିତ୍ତ, ଶିଶୁ ରାଜକୁମାରଙ୍କ ତରଫରୁ, ମୁଁ ଆପଣମାନଙ୍କୁ ଅଭିନନ୍ଦନ ଜଣାଉଛି । ସୁତରାଂ ଏହି ମୁହୂର୍ତ୍ତରେ, ଆପଣମାନଙ୍କ ସାକ୍ଷାତରେ ଘୁମୁସରର ସୁଯୋଗ୍ୟ ସର୍ଦ୍ଦାରମାନଙ୍କ ସମ୍ମୁଖରେ, ମୁଁ ଘୋଷଣା କରୁଛି ଯେ ଏହି ଶିଶୁ ରାଜକୁମାର, ଆଜିଠାରୁ ଘୁମୁସର ରାଜ୍ୟର ନୂତନ ହୋଇ ରାଜା ରଣଭଞ୍ଜ ନାମରେ ପରିଚିତ ହେବେ । ଆଶା କରେଁ, ଆପଣମାନେ ସମସ୍ତେ ମୋର ଏ ଘୋଷଣାକୁ ଆନ୍ତରିକ ସମର୍ଥନ ଜଣାଇବେ ।

ଜନତା । ଜୟ ଘୁମୁସର ରାଜ ଶିଶୁ ରଣଭଞ୍ଜଙ୍କର ଜୟ ।

ଧନ । ଖାଲି ଏତିକି ନୁହେଁ, ଶୁଣନ୍ତୁ ଆପଣମାନେ—କୁଲଡ଼ ଦୁର୍ଗର ସିଂହାସନରେ ଆମର ନବୀନ ରାଜା ରଣଭଞ୍ଜଙ୍କର ଅଭିଷେକ ନ ହେଲା ପର୍ଯ୍ୟନ୍ତ, ଆପଣମାନଙ୍କର ଏ ଜୟକାରର କୌଣସି ମୂଲ୍ୟ ନାହିଁ । ସୁତରାଂ, ଅଗ୍ରସର ହୁଅନ୍ତୁ ସମସ୍ତେ । ମୁଁ ଆପଣମାନଙ୍କର ନେତୃତ୍ୱ ଗ୍ରହଣ କରୁଛି । ସଙ୍ଗେ ସଙ୍ଗେ ଘୁମୁସର ରାଜ୍ୟର ସର୍ଦ୍ଦାରମାନଙ୍କୁ ମଧ୍ୟ ନିମନ୍ତ୍ରଣ କରୁଛି । ଆସନ୍ତୁ ଆପଣମାନେ, ଆପଣମାନଙ୍କର ସମସ୍ତ ଶକ୍ତି ଓ ସାମର୍ଥ୍ୟ ନେଇ

ଘୁମୁସରର ନୂତନ ରାଜାଙ୍କର ସହାୟତା କରନ୍ତୁ । ପଥମଧ୍ୟରେ ଧରାକୋଟର ସେନାବାହିନୀ ମଧ୍ୟ ଆମ ସହିତ ଯୋଗଦେବେ । ଭୟ କଣ ? ଆସନ୍ତୁ ସମସ୍ତେ, କୁଳାଡ଼ ଦୁର୍ଗ ଅବରୋଧ କରି, ଘୁମୁସର ସିଂହାସନରେ ତାର ନ୍ୟାଯ୍ୟ ଉତ୍ତରାଧିକାରୀଙ୍କର ଅଭିଷେକ ଉତ୍ସବ ସମାଧାନ କରିବା । ଦୁର୍ବୃତ୍ତ ନୀଳକଣ୍ଠଙ୍କୁ ଆପଣମାନେ ଭୟ କରୁଛନ୍ତି ? କିଏ ସେ ? ତାର ବାହୁ-ଦ୍ୱୟରେ କେତେ ଶକ୍ତି ? ଆପଣମାନେ ତ ତାଙ୍କର ଶକ୍ତି ? ଆପଣମାନେ ଇଚ୍ଛା କଲେ, ଏହି ମୁହୂର୍ତ୍ତରେ ତାଙ୍କୁ ସିଂହାସନରୁ ଗଳାଧକ୍କା ଦେଇ ବାହାର କରିଦେଇ ପାରିବେ । ଆପଣମାନଙ୍କର ସମବେତ ଜୟଧ୍ୱନି ଶୁଣିଲା ମାତ୍ରକେ, ଦେଖିବେ, ରାଜ୍ୟର ଶାସନଦଣ୍ଡ ଆପେ ଆପେ ତାଙ୍କ ହାତରୁ ଖସି ପଡ଼ୁଛି । ସୁତରାଂ ଚାଲନ୍ତୁ—ପରସ୍ୱାପହାରୀ ନୀଳକଣ୍ଠଙ୍କର ରାଜତ୍ୱର ଶେଷ ଯେତେ ଶୀଘ୍ର ହୋଇପାରେ, ସେତେ ମଙ୍ଗଳ ।

ଜନତା । ଚାଲନ୍ତୁ, ଆମ୍ଭେମାନେ ସମସ୍ତେ ଆପଣଙ୍କର ସଙ୍ଗେ ସଙ୍ଗେ ଅଗ୍ରସର ହେବୁଁ । ଆମ୍ଭେମାନେ ଅବିଶ୍ୱାସୀ ନୀଳକଣ୍ଠଙ୍କର ରାଜତ୍ୱ ସ୍ୱୀକାର କରିବାକୁ ଚାହୁଁ ନା । ଶିଶୁ ରଣଭଞ୍ଜହିଁ ଆମର ଘୁମୁସରର ରାଜା । ଜୟ ଘୁମୁସର ରାଜ ରଣଭଞ୍ଜଙ୍କର ଜୟ ।

[ ଜନତା କୋଳାହଳ କରି ଉଠିଲେ ଅତି ଉତ୍ସାହରେ । ]

ଗା: ସର୍ଦ୍ଦାର । ଶୁଣ ଭାଇମାନେ, ଆଉ ଗୋଟିଏ କଥା ମୋର କହିବାକୁ ବାକି ଅଛି । ଆମର ରାଜା ବର୍ତ୍ତମାନ ଶିଶୁ । ସେ ତ ବର୍ତ୍ତମାନ ରାଜ୍ୟଶାସନ ଚଳାଇ ପାରିବ ନାହିଁ । ସୁତରାଂ, ସେ ବଡ଼ ହୋଇ ନିଜର ରାଜତ୍ୱ ଚଳାଇବାକୁ ସମର୍ଥ ହେଲା ପର୍ଯ୍ୟନ୍ତ, ତାର ଜଣେ ବିଶ୍ୱସ୍ତ ପ୍ରତିନିଧିରୂପେ କୁମାର ଧନଭଞ୍ଜଙ୍କୁ ମୁଁ ଆଜି ଏଠାରେ ତୁମ୍ଭମାନଙ୍କ ଆଗରେ ମନୋନୀତ କରୁଛି । ଏଥିରେ ତୁମ୍ଭମାନଙ୍କର ମତାମତ କଣ ନିର୍ଭୟରେ ପ୍ରକାଶ କର ।

ଜନତା । ଆମର ଏଥିରେ କୌଣସି ଆପତ୍ତି ନାହିଁ, ସର୍ଦ୍ଦାର ! କୁମାର ଧନଭଞ୍ଜ, ଆମର ଶିଶୁ ରାଜାଙ୍କର ପ୍ରତିନିଧିରୂପେ ରାଜ୍ୟଶାସନ ଗ୍ରହଣ କରି ପାରନ୍ତି । ଏ ପ୍ରସ୍ତାବରେ ଆମେ ସମସ୍ତେ ଏକମତ ।

ଧନ । ଆପଣମାନଙ୍କର ଏହି ସ୍ନେହପୂର୍ଣ୍ଣ ଆଦେଶକୁ ମୁଁ ନତମସ୍ତକରେ ଗ୍ରହଣ କରୁଛି । ଆଜଠାରୁ ଘୁମୁସରର ରାଜା ରଣଭଞ୍ଜଙ୍କର ସମସ୍ତ ଦାୟିତ୍ୱ ବହନ କରି, ଆପଣମାନଙ୍କର ସେବକରୂପେ, ରାଜ ସିଂହାସନର ଉପଯୁକ୍ତ ମର୍ଯ୍ୟାଦା ମୁଁ ରକ୍ଷା କରିବି, ଏହି ସ୍ପଷ୍ଟ ପ୍ରତିଶ୍ରୁତି ମୁଁ ଆପଣମାନଙ୍କୁ ଦେଉଛି । ସୁତରାଂ, ମୃତ୍ୟୁରୁ ଆଉ ବିଳମ୍ବ କରିବା ଉଚିତ ନୁହେଁ । ଏହିଠାରୁ ଆମର ଅଭିଯାନ ଆରମ୍ଭ କରିବା । ଜୟ ରାଜା ରଣଞ୍ଜୟଙ୍କର ଜୟ ।

[ ଅଗ୍ରସର ହେଲେ । ସର୍ବାଗ୍ରେ ଶିଶୁ ବକ୍ଷରେ ମାଧବିକା, ତାଙ୍କ ପଛେ ଧନଭଞ୍ଜ ଓ ଅନ୍ୟାନ୍ୟ ସର୍ଦ୍ଦାରମାନେ ପ୍ରସ୍ଥାନକଲେ । ]

ଜନତା । ଜୟ ରାଜା ରଣଭଞ୍ଜଙ୍କର ଜୟ । (ସମବେତ ଚିତ୍କାର କରି କରି ସର୍ଦ୍ଦାରମାନଙ୍କର ଅନୁସରଣ କଲେ ।)

# ଷଷ୍ଠ ଦୃଶ୍ୟ

[ ଓଡ଼ଗାଁ ରଘୁନାଥଙ୍କର ନବନିର୍ମିତ ମନ୍ଦିର ସଂଲଗ୍ନ ନାଟମନ୍ଦିର । ସମୟ ସନ୍ଧ୍ୟା । ମନ୍ଦିର ମଧ୍ୟରୁ ରଘୁନାଥଙ୍କର ବିଗ୍ରହ ଦୀପାଲୋକରେ ଅତି ସୁସ୍ପଷ୍ଟରୂପେ ପ୍ରତିଭାତ । ବିଗ୍ରହଟି ନାନା ପୁଷ୍ପମାଳାରେ ବିଭୂଷିତ । ନାଟ ମନ୍ଦିରର ଏକ ପାର୍ଶ୍ୱରେ ମାଲୁଣୀ ହାରାବତୀ ନାନାଜାତି ପୁଷ୍ପଗୁଡ଼ିଏ ଏକାଠି କରି, ମାଳା ଗୁନ୍ଥିବାରେ ମନୋନିବେଶ କରି ବସିଛି । ନୂତନ ମନ୍ଦିରର ପ୍ରତିଷ୍ଠା ଉପଲକ୍ଷରେ ପଣ୍ଡା ପଡ଼ିଆରୀମାନେ, ନାଟମନ୍ଦିରକୁ ସଜାଇବାରେ ବ୍ୟସ୍ତ । ନାଟମନ୍ଦିରର ନାନା ସ୍ଥାନରେ ସଜ୍ଜିତ ଦୀପାବଳୀ ସ୍ଥାନଟିକୁ ମନୋରମ କରି ରଖିଥିଲା । କିଛି ସମୟ ଗତହେଲା ପରେ, ମନ୍ଦିର କରଣ ବ୍ୟସ୍ତ ଭାବରେ ଆସି ପ୍ରବେଶ କଲେ । ]

ଶ୍ରୀକରଣ । ପଡ଼ିଆରୀଏ—ରାଜାସାହେବ ବର୍ତ୍ତମାନ ମନ୍ଦିର ମଧ୍ୟକୁ ବିଜେ କରିବେ । ଅଳତିର ସମସ୍ତ ବନ୍ଦୋବସ୍ତ ଆଗରୁ ଶେଷ କରି ରଖିଥାଅ । ବଡ଼ପଣ୍ଡାଙ୍କୁ ସମ୍ବାଦ ଦିଅ, ସେ ନିଜେ ଯେପରି ଏଠାରେ ଉପସ୍ଥିତ ରହିବେ । (ବଡ଼ପଣ୍ଡାଙ୍କର ପ୍ରବେଶ ।)

ବଡ଼ପଣ୍ଡା । ଆପଣ ବ୍ୟସ୍ତ ହେଉନ୍ତୁ ନାହିଁ । ମୁଁ ସମସ୍ତ ବ୍ୟବସ୍ଥା ଠିକ୍ କରି ରଖିଛି । କେବଳ ରାଜାସାହେବଙ୍କର ଉପସ୍ଥିତିରେ, ଅଳତି କାର୍ଯ୍ୟ ଶେଷ ହୋଇଗଲେ,ପ୍ରଜାସାଧାରଣଙ୍କୁ ପ୍ରସାଦ ବିତରଣ ଆରମ୍ଭ କରାଯିବ । ଆଚ୍ଛା, ଶ୍ରୀକରଣେ ! କବି ଉପେନ୍ଦ୍ରଙ୍କର ନିର୍ଦ୍ଦେଶରେ ମନ୍ଦିର ନିର୍ମିତ ହେଲା, ଅଥଚ ସେ ଅଯୋଧ୍ୟା ଯାତ୍ରା କରିଥିବା ବେଳେ, ତାଙ୍କରି ଅନୁପସ୍ଥିତିରେ ମନ୍ଦିର ପ୍ରତିଷ୍ଠା କରିବା ଲାଗି ରାଜାସାହେବ ଯେ କିପରି ହୁକୁମ ଦେଲେ, ତାହା ତ ମୁଁ ବୁଝି ପାରୁ ନାହିଁ ?

ଶ୍ରୀ: କ । କବି ଉପେନ୍ଦ୍ର ଅଯୋଧ୍ୟା ଦର୍ଶନ ଶେଷ କରି, କାଲି ପ୍ରତ୍ୟୁଷରେ ଯେ ନୟାଗଡ଼କୁ ଫେରି ଆସିଛନ୍ତି, ଏ ସମ୍ବାଦ କି ଆପଣ ଏ

ପର୍ଯ୍ୟନ୍ତ ପାଇ ନାହାନ୍ତି, ବଡ଼ ପଣ୍ଡାଏ ? ଆଶ୍ଚର୍ଯ୍ୟ ! ଜେନାମଣିଙ୍କର ଅନୁପସ୍ଥିତିରେ ମନ୍ଦିର ପ୍ରତିଷ୍ଠା କାର୍ଯ୍ୟ କି ସମାଧାନ କରାଯାଇ ପାରେ ?

ବ: ପ । ବାସ୍ତବରେ କି ଅଦ୍ଭୁତ କବି ଏହି ଜେନାମଣି । ଜଣେ ଶ୍ରୀ ରଘୁନାଥ ସନ୍ନ୍ୟାସୀ ବେଶଧରି ଯାହାଙ୍କୁ ତାରକମନ୍ତ୍ର ଦୀକ୍ଷା ଦେଇ ପାରନ୍ତି, ସେ ତ ସାମାନ୍ୟ ଲୋକ ନୁହନ୍ତି, ଶ୍ରୀଚରଣେ । ତାଙ୍କର ବୈଦେହୀଶ ବିଳାସ କାବ୍ୟରୁ, ଦପଦ ରଚନା ମୁଁ ଯେ ଆଜ ପର୍ଯ୍ୟନ୍ତ ଭୁଲିପାରି ନାହିଁ ।

ଶ୍ରୀ: କ । କେଉଁ ଦୁଇ ପଦ ?

ବ: ପ । "ବାବୁ ନାକଣୀର ଯୋଗ୍ୟ ଦାନ ଯୋଷାକୁ
ବନ୍ଧୁର କାନନ କର ଅଲଙ୍ଗନକୁ
ବଇଦେହୀ ଦାସୀ କିଏ ଯେଲ୍ନ ହୋଇବ
ବିଧିରେ ଇନ୍ଦ୍ର ପ୍ରଶଂସା ଭ୍ରମେ ଲଭିବ ।"

ବୁଝିଲେ ଶ୍ରୀଚରଣେ—ଶ୍ରୀରାମଚନ୍ଦ୍ର ଏହି ଚିଠି ଲେଖି ଲକ୍ଷ୍ମଣଙ୍କୁ ଦେଉଛନ୍ତି, ସୂର୍ପଣଖା ହାତରେ । ସେଥିରୁ ସୂର୍ପଣଖା ବୁଝୁଛି ଏକପ୍ରକାର ଅର୍ଥ ଆଉ ଲକ୍ଷ୍ମଣ ବୁଝୁଛନ୍ତି ଆଉ ପ୍ରକାରେ । ଏତକ କି କମ୍ ବାହାଦୁରୀ । ଏ କି ଜଣେ ସାଧାରଣ କବିର ରଚନା ?

ଶ୍ରୀ: କ । ତୁମେ କେବଳ ଏତିକି ଦେଖିଛ ବଡ଼ପଣ୍ଡାଏ ? ତାଙ୍କର ସମସ୍ତ ରଚନା ହିଁ ଅସାଧାରଣ ! (ମାଲ୍ୟଶ୍ରୀକୁ ଦେଖି) ଏହି ଯେ ହାଜିରନ୍ତି ! କହି ପାରିବ, ଜେନାମଣି ଏତେବେଳଯାଏ ଆସି ନାହାନ୍ତି କାହିଁକି ? ତାଙ୍କର ଯେ ସର୍ବପ୍ରଥମେ ଆସିବାର କଥା ?

[ ଠିକ୍ ଏହି ସମୟରେ ଶ୍ୱେତପଟ୍ଟବସ୍ତ୍ର ପରିହିତ ଉପେନ୍ଦ୍ର ତାଳପତ୍ର ପୋଥି ହସ୍ତରେ ଧୀରେ ଧୀରେ ପ୍ରବେଶ କଲେ । ]

ଉପେ । କ୍ଷମା କରିବେ, ମୋର ଟିକିଏ ବିଳମ୍ବ ହୋଇ ଯାଇଛି । ସିଦ୍ଧଗୁମ୍ଫାରୁ ଫେରୁ ଫେରୁ ସନ୍ଧ୍ୟା ହୋଇଗଲା । (ରଘୁନାଥଙ୍କୁ ନମସ୍କାର କରିସାରି) ଆପଣଙ୍କର ରାଜାସାହେବ କେତେବେଳେ ବିଜେ କରିବେ ? ଅଭିଷେକର ସମୟ ଯେ ଉତ୍ତୀର୍ଣ୍ଣ ହୋଇ ଯାଉଛି ?

ଶ୍ରୀ: କ। ଆଉ ବେଶୀ ବିଳମ୍ବ ହେବ ନାହିଁ, ବୋଧହୁଏ। (ଏହି ସମୟରେ ରାଜାଙ୍କର ଆଗମନ ସୂଚକ କାହାଳୀ ଭେରୀ ବାଜିଉଠିଲା।) ଏହି ଯେ ରାଜାସାହେବ ଆସି ପହଞ୍ଚି ଗଲେଣି।

ଉପେ। ହାରବନ୍ଧ—ତୁମର ମାଳଗୁନ୍ଥା ଶେଷ ହୋଇଛି ତ?

ହାର। ଆପଣଙ୍କର ଆଦେଶ ମୁତାବକ ତିନଗୋଟି ମାଳା ଗୁନ୍ଥାହୋଇ ସାରିଛି କବି। ଏହି ନିଅନ୍ତୁ। (ଗୋଟିଏ ରୂପାଥାଳରେ ତିନଗୋଟି ଫୁଲମାଳ ଆଣି, କବିଙ୍କ ପାଖରେ ରଖିଦେଲେ। କବି ସେଗୁଡ଼ିକ ପରୀକ୍ଷା କରି ଦେଖୁଥିବା ସମୟରେ, ନୟାଗଡ଼ ରାଜା ପୁରୁଷୋତ୍ତମ ଓ ଉତ୍କଳ ରାଜକବି କୃପାସିନ୍ଧୁ ପଣ୍ଡିତ ଆସି ପ୍ରବେଶ କଲେ। ତାଙ୍କର ପଶ୍ଚାତ୍‌ରେ ରାଜ ଅନୁଚର ବର୍ଗ।)

ପୁରୁ। ଏହି ଯେ କବୀନ୍ଦ୍ର। ଆଜି ମୋର ଖୁବ୍ ଆନନ୍ଦର ଦିନ ଯେ, ଏ ଦେଶର କବିଶ୍ରେଷ୍ଠଙ୍କର ସାମାନ୍ୟ ଅନୁରୋଧ ରକ୍ଷା କରି, ଶ୍ରୀ ରଘୁନାଥଙ୍କର ମନ୍ଦିର ପ୍ରତିଷ୍ଠା କାର୍ଯ୍ୟ ମୁଁ ଯଥା ସମୟରେ ଶେଷ କରି ପାରିଛି। ମୋର ବିଶ୍ୱାସ, ଓଡ଼ଗାଁର ଏହି ରଘୁନାଥ ମନ୍ଦିର,ତୁମର ସ୍ମୃତିକୁ ବକ୍ଷରେ ଧାରଣ କରି, ଏ ଦେଶର ଇତିହାସରେ ଚିରଦିନ ଲାଗି ଏକ ସାରସ୍ୱତ ତୀର୍ଥ ରୂପରେ ପରିଗଣିତ ହୋଇ ପାରିବ।

ଉପେ। ଏ ସବୁ କେବଳ ଆପଣଙ୍କର ମହାନୁଭବତାର ଫଳ, ମାନ୍ଧାତା! କବି ଉପେନ୍ଦ୍ରର କୃତିତ୍ୱ ଏଥିରେ କିଛି ନାହିଁ।

ବ: ପ। ଏଥର ଅଳତି ଆରମ୍ଭ କରାଯାଉଛି, ପ୍ରଭୁ?

ଉପେ। (ଫୁଲମାଳ ଥାଳକୁ ଦେଇ) ଅଳତି ପୂର୍ବରୁ ଏହି ଫୁଲମାଳ-ଗୁଡ଼ିକୁ ଶ୍ରୀ ରଘୁନାଥଙ୍କର ଶ୍ରୀଅଙ୍ଗରେ ପିନ୍ଧାଇ ଦିଅନ୍ତୁ, ବଡ଼ପଣ୍ଡାଏ।

[ ବଡ଼ପଣ୍ଡା ଫୁଲମାଳ ନେଇ ବିଗ୍ରହଗୁଡ଼ିକୁ ପିନ୍ଧାଇ ଦେଲେ। ତା ପରେ ଅଳତି ଆରମ୍ଭ ହେଲା। ଅଳତି ଶେଷ ହେବା ପରେ, କେବଳ ଉପେନ୍ଦ୍ରଙ୍କୁ ଛଡ଼ା ଅନ୍ୟ ସମସ୍ତେ ଦେବତାଙ୍କ ଉଦ୍ଦେଶ୍ୟରେ ପ୍ରଣିପାତ କଲେ। ଉପେନ୍ଦ୍ର, ଏକ ପାର୍ଶ୍ୱରେ ଠିଆ ହୋଇଥାନ୍ତି ଏକଦୃଷ୍ଟିରେ ରଘୁନାଥଙ୍କୁ ଚାହିଁ। ନେତ୍ରରୁ ଧାର ଧାର ହୋଇ ଅଶ୍ରୁ ଗଡ଼ି ପଡୁଥାଏ। ]

ପୁରୁ । କବି ସମ୍ରାଟ ! ଏକ ଦୃଷ୍ଟିରେ ସିଂହାସନଆଡ଼େ ଚାହିଁ କଣ ଦେଖୁଛ ? ସେ ଯେ ତୁମର ରଘୁନାଥ ! ଜୀବନ୍ତ ରଘୁନାଥଙ୍କୁ ଦେଖିସାରିବା ପରେ, ତୁମର ପ୍ରାଣରେ କଣ ତୃପ୍ତି ଆସି ନାହିଁ ?

ଉପେ । (ଅଶ୍ରୁଜଡ଼ିତ କଣ୍ଠରେ) ତୃପ୍ତି କି ଏତେ ଶୀଘ୍ର ଆସିପାରେ, ମାନ୍ଧାତା ? ସେ ଯେ ମୋର ଜୀବନ ସର୍ବସ୍ୱ । (ଅଶ୍ରୁ ପୋଛିଲେ ।)

ରୂପଜି । ଅଦ୍ଭୁତ କବି ! ଏତେଦୂର ଭକ୍ତବତ୍ସଳ !!

ଉପେ । (ଅଶ୍ରୁ ପୋଛି ଗାଇ ଉଠିଲେ ।)

ବହିତ ଲୀଳା ବେହିତ, ବେହିତ ମୂରତି
ବେଗେ ଦର ଦୈତ୍ୟ ଦର ଦାନେ ଦେଲ ରତି ॥
ବହ ଅମନ୍ଦ ମନ୍ଦର କୂର୍ମ ନମୋ ନମ,
ବାରିଧି ଅମୃତ ମନ୍ଥୁ ଅମୃତ ଜନମ ॥
ବିପକ୍ଷେ ଦେବାରି ବାରି ପରଶିଲ ସୁଧା,
ବିଶ୍ୱ ମୋହିତ ମୋହିନୀ ରୂପରେ ବିଶୁଧା ॥
ବରାହବର ବରାହ ବର ସୁପବିତ୍ର
ବଳ୍ଗିତ ମହୀର ହିରଣ୍ୟାକ୍ଷକୁ ଖଣ୍ଡିତ ॥
ବପୁ ବନ୍ତ ହରି ନରି ପ୍ରହ୍ଲାଦ ପୁଣ୍ୟକୁ
ବିଦାରିଲ କଷି ପରି କରି ହିରଣ୍ୟକୁ ॥
ବାମନ ମନ ମୋହନ ହୋଇ କୃଦାନରେ,
ବଳୀନ୍ଦ୍ର ବଳକୁ ଚାପି ଅଧୋଭୁବନରେ ॥
ବିଭୁ ଭୃଗୁବଂଶ ପରି ପରଶୁ ଧାରଣ,
ବାହୁଜ ବାହୁ ସହସ୍ର ଦାରଣ କାରଣ ॥
ବଂଶକର କରଣୀକି ନାହିଁ ସରି ରକ୍ଷ,
ବନତି ଉନ୍ନତି ସ୍ଥାନେ ଅମ୍ଭେ ପ୍ରଭୁ ରକ୍ଷ ॥

[ଗାଇସାରି ଦେବତାଙ୍କ ଉଦ୍ଦେଶ୍ୟରେ ପ୍ରଣିପାତ କଲେ ।]

ରୂପଜି । ଚମତ୍କାର ରଚନା !! ପୁଣି ପ୍ରାନ୍ତ ଦୁଇ ଅକ୍ଷରର ଅନୁପ୍ରାସ ଓ ମଧ୍ୟେ ମଧ୍ୟେ ଯମକର ବିଳାସ । ଏହା କି ଆପଣଙ୍କର ସୃଷ୍ଟି, କବି ?

ଉପେ । (ରୂପଙ୍କୁ ଦେଖି) ହଁ ! ଏ ମୋର ବୈଦେହୀଶ ବିଳାସ ମହାକାବ୍ୟର, ଦ୍ୱିତୀୟ ଛନ୍ଦରେ ଦେବତାମାନଙ୍କର ବିଷ୍ଣୁସ୍ତବ—ବିଷ୍ଣୁଙ୍କ ଅବତାର ବର୍ଣ୍ଣନା । କିନ୍ତୁ—ଆପଣ କିଏ ? ମୁଁ ତ ଆପଣଙ୍କୁ ଚିହ୍ନି ପାରୁ ନାହିଁ, ଭଦ୍ର ?

ପୁରୁ । ପରିଚୟ ଜଣାଇବାକୁ ମୁଁ ଭୁଲିଯାଇଛି, କବି । ଆଗନ୍ତୁକ ଗଜପତି ସମ୍ରାଟ ଶ୍ରୀ ଶ୍ରୀ ଶ୍ରୀ ଦିବ୍ୟସିଂହ ଦେବଙ୍କ ଦରବାରର ରାଜକବି ରୂପତି ପଣ୍ଡିତ । ବୈଷ୍ଣବ ଧର୍ମ ସମ୍ବନ୍ଧରେ, "ପ୍ରେମ ପଞ୍ଚାମୃତ" କାବ୍ୟ ତାଙ୍କର ଏକମାତ୍ର ସର୍ବଶ୍ରେଷ୍ଠ ସରଳ ରଚନା । ଅଯୋଧ୍ୟାବାସୀ ସାରସ୍ୱତ ବ୍ରାହ୍ମଣ ସେ । ଗଜପତିଙ୍କର ପ୍ରସାଦରୁ, ସେ ଆଜି କଳିଙ୍ଗ ସାମ୍ରାଜ୍ୟର ଅଧିବାସୀ ।

ଉପେ । (ହସି) ଉପେନ୍ଦ୍ରର ଅଭିବାଦନ ଗ୍ରହଣ କରନ୍ତୁ, କବି !

ରୂପତି । କବି ସମ୍ରାଟ ! ମୋତେ ଅଭିବାଦନ କରି ଲଜ୍ଜା ଦିଅନ୍ତୁ ନାହିଁ । ଆପଣଙ୍କର ଗଗନସ୍ପର୍ଶୀ କବିପ୍ରତିଭା ଯେ ରୂପତି ପଣ୍ଡିତର ନମସ୍ୟ । ସୁତରାଂ, ଗଜପତିଙ୍କର ଦରବାର ପକ୍ଷରୁ ଘୁମୁସରର ଯଶସ୍ୱୀ ଭଞ୍ଜକବିଙ୍କୁ ମୁଁ ଆଜି ସାଦର ଅଭିନନ୍ଦନ ଜଣାଉଛି । କେବଳ ସେତିକି ନୁହେଁ, ଉତ୍କଳ ଗଜପତିଙ୍କର ଏହି ବାର୍ତ୍ତା ଆପଣଙ୍କ ନିକଟକୁ ବହନ କରି ଆଣିବାରେ ମଧ୍ୟ, ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଛି ।

ଉପେ । କିନ୍ତୁ ଦରିଦ୍ର କବି ମୁଁ —ଗଜପତିଙ୍କର ଏହି ଅଯାଚିତ ସ୍ନେହର କୌଣସି ପ୍ରତିଦାନ ତ ମୁଁ ଦେଇ ପାରିବି ନାହିଁ, ପଣ୍ଡିତ ମହାଶୟ !

ରୂପତି । ଗଜପତି ଆପଣଙ୍କଠାରୁ କୌଣସି ପ୍ରତିଦାନର ପ୍ରତ୍ୟାଶା ରଖି ନାହାନ୍ତି, କବୀନ୍ଦ୍ର ! ବରଂ ଏ ଦେଶର ସାହିତ୍ୟକୁ ଯେଉଁ ଅତୁଳନୀୟ ଦାନ ଆପଣ ଏ ବୟସରୁ ଦେଇ ପାରିଛନ୍ତି, ତାର ପ୍ରତିଦାନ ସ୍ୱରୂପେ ଏ ଦେଶର କବିସମ୍ରାଟଙ୍କୁ ସର୍ବଶ୍ରେଷ୍ଠ ସମ୍ମାନ ଦେବାଲାଗି, ସ୍ୱୟଂ ଗଜପତି ଦୁଇ ଗୃହଦିନ ମଧ୍ୟରେ ଆପଣଙ୍କର ଅତିଥି ହେବେ । ଆଜି ସେଥିପାଇଁ ବନ୍ଦୋବସ୍ତ କରିବାର ସମସ୍ତ ଦାୟିତ୍ୱ ନେଇ, ରୂପତି ପଣ୍ଡିତ ଆଜି ନୟାଗଡ଼ ରାଜାଙ୍କର ସାହାଯ୍ୟପ୍ରାର୍ଥୀ ।

ଉପେ । ଜଗନ୍ନାଥଙ୍କର ଚଳନ୍ତି ପ୍ରତିମା ଗଜପତିଙ୍କଠାରୁ ଏଡ଼େ ବଡ଼ ସମ୍ମାନ ଯେ ମୋର ପ୍ରାପ୍ୟ, ଏହା ତ ମୁଁ ବିଶ୍ୱାସ କରିପାରୁ ନାହିଁ, ମାନ୍ଧାତା !

ପୁରୁ । ସେ କଥାର ମୀମାଂସା ସ୍ୱୟଂ ଗଜପତି କରିବେ । କିନ୍ତୁ କବି ! ତତ୍‌ପୂର୍ବରୁ ମୋର ଗୋଟିଏ ସାମାନ୍ୟ ଦାନ ତୁମ୍ଭଙ୍କୁ ଆଜ ଗ୍ରହଣ କରିବାକୁ ହେବ । ଶ୍ରୀଚରଣେ ! (ଶ୍ରୀଚରଣ ଗୋଟିଏ ଥାଳରେ ଖଣ୍ଡେ ବନାରସୀ ଉତ୍ତରୀ ଆଣି ରାଜାଙ୍କୁ ଦେଲେ ।) ଅସ କେନାମଣି ! ତୁମର କାବ୍ୟ କବିତା ରଚନାରେ, ଯେଉଁ ଅଦ୍ଭୁତ ବୀରତ୍ୱ ତୁମେ ଦେଖାଇ ପାରିଛ, ସେଥିଲାଗି ନୟାଗଡ଼ ରାଜ୍ୟପକ୍ଷରୁ, କହେ ମାନ୍ଧାତା, ଆଜ ଏହି ମନ୍ଦିର ପ୍ରତିଷ୍ଠା ଦିବସରେ, ତୁମର ଗୁରୁଦେବ ଶ୍ରୀ ରଘୁନାଥଙ୍କୁ ସାକ୍ଷୀ ରଖି, ତୁମ୍ଭଙ୍କୁ ଏହି ଶିରୋପା ସହିତ ବୀରବର ଉପାଧି ଦାନ କରୁଛି । ନୟାଗଡ଼ ରାଜ୍ୟର ଏହି ସାମାନ୍ୟ ପୂଜା ଗ୍ରହଣ କର କବି ! ( ମୁଣ୍ଡରେ ଶିରୋପା ବାନ୍ଧିଦେଲେ ଓ ବଡ଼ପଣ୍ଡା ବିଗ୍ରହଙ୍କ ଅଙ୍ଗରୁ ଗୋଟିଏ ଫୁଲମାଳ ଆଣି ଉପେନ୍ଦ୍ରଙ୍କୁ ପିନ୍ଧାଇ ଦେଲେ । )

ଉପେ । (ନତ ମସ୍ତକରେ) ନୟାଗଡ଼ ରାଜାଙ୍କର ଏହି ଅକୃତ୍ରିମ ଦାନକୁ ଗ୍ରହଣ କରି, ମୁଁ ନିଜକୁ ଭାଗ୍ୟବାନ ମନେ କରୁଛି, ମାନ୍ଧାତା !

କୃଷ୍ଣ । ଯଥାର୍ଥରେ କବି, ଆପଣଙ୍କର ରଚନାର ଶୈଳୀ ଅତି ଚମତ୍କାର । ଆପଣଙ୍କର ପ୍ରାୟ ସମସ୍ତ କାବ୍ୟ କବିତା ମୁଁ ପାଠ କରିଛି । ବାସ୍ତବିକ, ତାହା ଅତି ଅସାଧାରଣ । କିନ୍ତୁ ମୋର ମନେ ହୁଏ, ଭାଷାର ଆଡ଼ମ୍ବର ଯୋଗୁଁ, ଆପଣଙ୍କର ଲେଖା ସ୍ଥାନେ ସ୍ଥାନେ କ୍ଲିଷ୍ଟ ହୋଇ ପଡ଼ିଛି । ତା ପରେ ଅତ୍ୟଧିକ ସଂସ୍କୃତ ଭାଷାର ପ୍ରୟୋଗକୁ, ମୁଁ ଅନ୍ତତଃ ସମର୍ଥନ କରିପାରେ ନା । କାରଣ ଏପରି ରଚନା ହୁଏତ କାବ୍ୟ ରସିକମାନଙ୍କର ଆଦରର ବସ୍ତୁ ହୋଇପାରେ, କିନ୍ତୁ ସର୍ବସାଧାରଣଙ୍କର ଗ୍ରହଣଯୋଗ୍ୟ ହେବା ଦୁଷ୍କର ହୋଇ ଉଠେ । ମୋର ଧାରଣା —

ପାଠ ବସନେ ଗୁଞ୍ଜିଫଳ, ସେ ଯେ ନୁହଁଇ ବହୁମୂଲ ।
ଶରୀ କନାରେ ମୋତିବର, ମୂଲ୍ୟ ଯେ ନ ତୁଟେ ତାହାର ।
ଦୂର ଭୂଷାହିଁ ରସମୟ, ସେ ନାରିକେଳ ଫଳ ପ୍ରାୟ,
କ୍ଳେଶ ହୁଅଇ ରସଭୋଗ, ସବୁଙ୍କୁ ନୁହେଁ ଉପଭୋଗ ।

ଉପେ । (ହସି) ଠିକ୍ କଥା ପଣ୍ଡିତ ମହାଶୟ ! ଧର୍ମର, ଦାର୍ଶନିକ ଗୂଢ଼ତତ୍ତ୍ୱ ସବୁକୁ, ଲୋକସାଧାରଣରେ ପ୍ରଚାର କରିବା ଉଦ୍ଦେଶ୍ୟ ଥିଲେ, ଧର୍ମ ପ୍ରଚାରକ କବିଙ୍କ ପକ୍ଷରେ, ସରଳଭାଷା ପ୍ରୟୋଗ କରିବା ନିତାନ୍ତ ପ୍ରୟୋଜନ । ଭକ୍ତ କବି ଜଗନ୍ନାଥ ଦାସଙ୍କର ରଚନା ଏହି ଆଦର୍ଶ ଉପରେ ଗଠିତ । କିନ୍ତୁ ମୋର ଲକ୍ଷ୍ୟ ସ୍ୱତନ୍ତ୍ର । ଧର୍ମ ପ୍ରଚାର କରିବାର ଦୁର୍ଦ୍ଧର୍ଷ ସ୍ପର୍ଦ୍ଧା ମୋର ନାହିଁ । କିନ୍ତୁ ରସମୟ କାବ୍ୟସାହିତ୍ୟ ସୃଷ୍ଟି କରି, ଭାଷାକୁ ଜୀବନ୍ତ ଓ ସମୃଦ୍ଧ କରିବାହିଁ ମୋର ଲକ୍ଷ୍ୟ । ସୁତରାଂ ଜାଣିଶୁଣି, ଭୁବନେଶ୍ୱରର କାରୁଶିଳ୍ପ ପରି, ଭାଷାକୁ ମୋର କଳାଶିଳ୍ପର ଅଭିଜାତ୍ୟ ଦେଇଛି ।

ରୂପଧି । ଅବଶ୍ୟ, ସେ ହିସାବରେ ଆପଣଙ୍କର ବହୁମୁଖୀ ସାହିତ୍ୟ ସୃଷ୍ଟି ଏ ଦେଶରେ ଏକ ଅତୁଲ୍ୟ ଗୌରବ । ବାସ୍ତବିକ, ଏତେ ଅଳ୍ପ ବୟସରେ ଏପରି ଅପ୍ରତିଦ୍ୱନ୍ଦ୍ୱୀ କବି ବିଶ୍ୱସାହିତ୍ୟରେ ଖୁବ୍ କମ୍ ଜନ୍ମଲାଭ କରନ୍ତି ।

ପୂର୍ଣ୍ଣ । କୋନାମଣି ! ରୂପଧି ପଣ୍ଡିତଙ୍କଠାରୁ ଶୁଣିଲି, ତୁମେ ପୁଣି ଜଣେ ଦ୍ୱାଦଶାବଧାନୀ, ଆଜି ଗଜପତି ସମ୍ରାଟ କେବଳ ତୁମର ସେହି ଦ୍ୱାଦଶାବଧାନୀ ପ୍ରତିଭା ପରୀକ୍ଷା କରି, କବିସମ୍ରାଟ ଭାବରେ ତୁମକୁ ଦେଶର ସର୍ବଶ୍ରେଷ୍ଠ ସମ୍ମାନ ଦେବେ ବୋଲି କଟକାଗଡ଼ ଆଗମନ କରୁଛନ୍ତି ।

ଉପେ । ହୋଇପାରେ, ତଦ୍ୱାରା ଗୁରୁଦେବ ଜଗନ୍ନାଥଙ୍କର ଇଚ୍ଛାହିଁ ପୂର୍ଣ୍ଣହେବ । କେବଳ, ତାଙ୍କର କୃପା ଲାଭକରି, ତାଙ୍କର ମନ୍ତ୍ରରେ ସିଦ୍ଧିଲାଭ କରି ପାରିଛି, ଏହି ଏତିକି ମାତ୍ର ମୋର ଗର୍ବ । ଏହା ବ୍ୟତୀତ ଅନ୍ୟ କିଛି ତ ମୋର କହିବାକୁ ନାହିଁ ।

ରୂପଧି । ରାତିର ପ୍ରଥମ ପ୍ରହର ଶେଷ ହେବାକୁ ଚାଲିଛି, କବି ! ଆପଣ କଣ ବର୍ତ୍ତମାନ ମାଳସାହିକୁ ଫେରିଯିବେ ?

ଉପେ । ନା, ପଣ୍ଡିତ ମହାଶୟ ! ମୋତେ ଆଜିଠାରୁ ମାଳସାହି ସହିତ ସମସ୍ତ ଲୌକିକ ସମ୍ପର୍କ ତ୍ୟାଗ କରିବାକୁ ହେବ । ଏଣିକି, ସଂସାର ତ୍ୟାଗୀ ଉପେନ୍ଦ୍ରର ଏକମାତ୍ର ଆଶ୍ରୟସ୍ଥଳ, ସିଦ୍ଧଗୁମ୍ଫା ।

ପୁରୁ । ହଠାତ୍ ଏପରି ସିଦ୍ଧାନ୍ତ କରିବାର ଉଦ୍ଦେଶ୍ୟ ?

ଉପେ । ଉଦ୍ଦେଶ୍ୟ ଅବଶ୍ୟ କିଛି ନାହିଁ । ତେବେ, ଅଯୋଧ୍ୟାରୁ ଫେରି ଆସିବା ପରଠାରୁ, କେଜାଣି କାହିଁକି, ନିଃସଙ୍ଗ ଜୀବନ ଯାପନ କରି, ସାଂସାରିକ ବାତାବରଣଠାରୁ ଦୂରରେ ରହିବାକୁ, ମୁଁ ଯେପରି ଗୋଟାଏ ପ୍ରେରଣା ପାଉଛି । ସୁତରାଂ ଆଜିଠାରୁ, ସିଦ୍ଧଗୁମ୍ଫା ହିଁ ମୋର ଏକମାତ୍ର ଆଶ୍ରମ । ମୋର ବିଶ୍ୱାସ, ମୋର ଜୀବନର ଅବଶିଷ୍ଟ ସାହିତ୍ୟ ସାଧନାକୁ, ମୁଁ ସେହିଠାରେ ନିର୍ବିଘ୍ନରେ ଶେଷ କରି ପାରିବି ।

ରୂପଧ । କିନ୍ତୁ ଆମ୍ଭମାନଙ୍କୁ ଉପେକ୍ଷା କରି, ଆମଠାରୁ ଦୂରରେ ରହି, ଆପଣ କଣ ମାନସିକ ଶାନ୍ତି ପାଇ ପାରିବେ ?

ଉପେ । ପଣ୍ଡିତ ମହାଶୟ ! ଘୁମୁସର ରାଜବଂଶରେ ଜନ୍ମ ମୋର । ସୁତରାଂ, ଐଶ୍ୱର୍ଯ୍ୟର ନାନା ସମ୍ଭାର ମଧ୍ୟରେ ନିଜର ଜୀବନକୁ ଉପଭୋଗ କରିବାର ପ୍ରଚୁର ସୁବିଧା ମୁଁ ପାଇ ପାରିଥିଲି । ଅଉ ତାରି ଫଳରେ, ଆଜି ଅନେକ କିଛି ତିକ୍ତ ଅଭିଜ୍ଞତା ମୁଁ ଅର୍ଜନ କରି ପାରିଛି, ଯାହାର ତୀବ୍ର ପ୍ରତିକ୍ରିୟା, ପ୍ରତିମୁହୂର୍ତ୍ତରେ ମୋର କବି ଜୀବନ ଉପରେ କରୁଛି ଏକ ନିର୍ମ୍ମମ କଷାଘାତ । ତେଣୁ, ପାର୍ଥିବ ଜଞ୍ଜାଳର ସମସ୍ତ ସଂଶ୍ରବ ତ୍ୟାଗ କରିବା ଲାଗି, ଲୋକାଳୟଠାରୁ ଦୂରରେ ନିଜକୁ ଲୁଚାଇ ରଖିବାକୁ ମୋର ଏକାନ୍ତ ଇଚ୍ଛା ।

ରୂପଧ । ତା ହେଲେ, ଆପଣଙ୍କର ସାହିତ୍ୟର ଭବିଷ୍ୟତ୍ ? ତାକୁ ମୁଦ୍ଧା କଣ ଆମ୍ଭମାନଙ୍କଠାରୁ ବିଚ୍ଛିନ୍ନ କରିନେବାକୁ ଚାହାନ୍ତି ?

ଉପେ । (ହସି) ତାହା କି ସମ୍ଭବ ହୋଇ ପାରେ, ପଣ୍ଡିତ ମହାଶୟ ? ମୋର କାବ୍ୟ କବିତା ଉପରେ ମୋ ଦେଶର ଦାବୀ ଯେ ଅଖଣ୍ଡ, ଏ କଥାକୁ ତ ମୁଁ ଅସ୍ୱୀକାର କରି ପାରିବି ନାହିଁ । ସୁତରାଂ ଶାନ୍ତରସାସ୍ପଦ ସିଦ୍ଧଗୁମ୍ଫାର ବିଜନ ବନଭୂମି ମଧ୍ୟରେ ଥାଇ, ମୋର ଯେ କୌଣସି ସାହିତ୍ୟ ସୃଷ୍ଟିକୁ ମୋର ଦେଶ ନିକଟରୁ ମୁଁ ଯେ ଲୁଚାଇ ରଖି ପାରିବି, ଏପରି ଏକ ସ୍ୱାର୍ଥପର କଳ୍ପନା ମୋ ପକ୍ଷରେ ଏକାବେଳକେ ଅସମ୍ଭବ ।

ମୋର ଅମୃଣ୍ଢଦ୍ଧି ଲାଗି, ମୋର ଜୀବନର ଗତିବିଧି ନିୟନ୍ତ୍ରଣ କରିବାକୁ ମୋର ପୂର୍ଣ୍ଣ ଅଧିକାର ଅଛି, କିନ୍ତୁ ତାହା ବୋଲି, ମୋର ସାହିତ୍ୟକୁ, ମୋର ଦେଶ ଓ ମୋର ଜାତିଠାରୁ ବିଚ୍ଛିନ୍ନ କରି ରଖି, ନିଜକୁ ପ୍ରବଞ୍ଚନା କରିବାର ସ୍ପର୍ଦ୍ଧା ମୋର ନାହିଁ । ବର୍ତ୍ତମାନ, ମୋତେ ବିଦାୟ ଦିଅନ୍ତୁ, ମାଉସୀ ! ପରେ ଦେଖାହେବ ନିଶ୍ଚୟ । ସିଦ୍ଧଗୁମ୍ଫାରେ ରହିଲେ ମୁଁ ତା, ଓଡ଼ଗାଁର ଏହି ମନ୍ଦିର ସହିତ, ମୋର ଯୋଗସୂତ୍ର ଚିରଦିନ ଅଚ୍ଛେଦ୍ୟ । (ରଘୁନାଥଙ୍କୁ ନମସ୍କାର କରି, ଧୀରେ ଧୀରେ ସେ ସ୍ଥାନରୁ ଚାଲିଗଲେ ।)

ପୁରୁ । ହାଉଷି—ଜୈନାମଣିଙ୍କର ଏହି ଭାବାନ୍ତର ଜାତ ହେବାର କୌଣସି କାରଣ ତୁମେ ଜାଣ ?

ହାଉ । ମୁଁ କିଛି କହି ପାରିବି ନାହିଁ, ସ୍ୱାମୀ ! ତେବେ, ଅଯୋଧ୍ୟା ଦର୍ଶନରୁ ଫେରି ଆସିବା ପରଠାରୁ ତାଙ୍କର ଏପରି ଅସ୍ୱାଭାବିକ ଗାମ୍ଭୀର୍ଯ୍ୟ ଦେଖି, ମୁଁ କୌଣସି ପ୍ରଶ୍ନ ପଚାରିବାକୁ ସାହସ କରିପାରି ନାହିଁ ।

ଭୂପତି । ଏଥିରେ ବିସ୍ମିତ ହେବାର କିଛି କାରଣ ନାହିଁ, ରାଜା-ସାହେବ ! ଜଗତର ପ୍ରତିଭାଶାଳୀ ମହାକବିମାନଙ୍କର ଜୀବନ, ଏହିପରି ରହସ୍ୟର ଘନ କୁହେଳିକାରେ ଆଚ୍ଛନ୍ନ । ବିଶେଷତଃ, କବୀନ୍ଦ୍ର ଉପେନ୍ଦ୍ର, ତାରକ ମନ୍ତ୍ରସିଦ୍ଧ ଯୋଗୀ । ସୁତରାଂ ତାଙ୍କର ପ୍ରାଣ କେତେବେଳେ ଯେ କେଉଁ ଅପାର୍ଥିବ ଭାବରେ ବିଭୋର ହୋଇ ପଡ଼ିବ, ତାହାର ଧାରଣା କରିବା, ଆମ୍ଭମାନଙ୍କ ପକ୍ଷରେ ଅସମ୍ଭବ । ସେ ଯେ ଏ ଦେଶରେ ରହିବାକୁ ମନସ୍ଥ କରିଛନ୍ତି, ଏହି ଏତିକି ହିଁ ଆମ୍ଭମାନଙ୍କର ପରମ ସୌଭାଗ୍ୟ ।

ପୁରୁ । ତା ହେଲେ, ଦେଖନ୍ତୁ, ରାଜପତିଙ୍କୁ ସିଦ୍ଧଗୁମ୍ଫାକୁ ନେବାର ଆୟୋଜନ କରିବାକୁ ପଡ଼ିବ ।

ଭୂପତି । ତାହା ବ୍ୟତୀତ, ଅନ୍ୟ ଉପାୟ ତ ମୁଁ କିଛି ଦେଖିପାରୁ ନାହିଁ । (କହୁଁ କହୁଁ ପୁରୁଷୋତ୍ତମ ଓ ଭୂପତି ପଣ୍ଡିତ ଉଭୟେ ପ୍ରସ୍ଥାନ କଲେ ଓ ତାଙ୍କ ପରେ ଅନ୍ୟମାନେ ପ୍ରସ୍ଥାନ କଲେ ।)

---

## ସପ୍ତମ ଦୃଶ୍ୟ

[ କୁଲଡ଼ ଦୁର୍ଗାଭ୍ୟନ୍ତରସ୍ଥ ପ୍ରାଙ୍ଗଣର ଏକାଂଶ । ସମୟ—ଅପରାହ୍ଣ । ସେହି ପ୍ରାଙ୍ଗଣର ଏକ ମର୍ମର ବେଦୀ ନିକଟରେ, ଉତ୍ତେଜିତ ଭାବରେ ଠିଆ ହୋଇ ରହିଥିଲେ ନୀଳକଣ୍ଠ । ତାଙ୍କର ପଶ୍ଚାଦ୍ଦେଶରେ ଭୟତ୍ରସ୍ତ ହୋଇ ଠିଆ ହୋଇଥିଲେ, ରାଜକୁମାରୀ ଚମ୍ପା ଓ ଅନ୍ୟ କେତେକ ପରିଚାରିକା । ରାଜମାତା ମଣ୍ଡାଦେବୀ, ନୀଳକଣ୍ଠଙ୍କ ସମ୍ମୁଖରେ ଦ୍ରୁତ ପଦଚାରଣା କରୁଥିଲେ, ଅତି ଅସ୍ଥିରଭାବେ । ଅପରାହ୍ଣର ମଳିନ ସୂର୍ଯ୍ୟକିରଣ ତାଙ୍କର ମୁଖ ଉପରେ ଭାସି ଉଠୁଥାଏ । କିନ୍ତୁ ସେ ମୁଖରେ ପ୍ରସନ୍ନତାର ଏକାନ୍ତ ଅଭାବ । ସେମାନଙ୍କର ପଛଅଡ଼େ ଦୁର୍ଗମଧ୍ୟସ୍ଥିତ କୁଲଡ଼ ରାଜପ୍ରାସାଦ-ଗୁଡ଼ିକ ନୀରବ ଗାମ୍ଭୀର୍ଯ୍ୟରେ ପଡ଼ି ରହିଥିଲା ପରି ବୋଧ ହେଉଥାଏ । ମଧ୍ୟେ ମଧ୍ୟେ, ଦୂରରୁ ବିଦ୍ରୋହୀମାନଙ୍କର ସମ୍ମିଳିତ କଳ କୋଳାହଳ ସହିତ ଭାସି ଆସୁଥିଲା "ଜୟ ରାଜା ରଣଭଞ୍ଜଙ୍କର ଜୟ" ଧ୍ୱନି । ସମୟେ ସମୟେ କମାଣର ଗୁରୁ ଗମ୍ଭୀର ଗର୍ଜନ ମଧ୍ୟ, ସେ ଜୟଧ୍ୱନିକୁ ଆହୁରି ଅଧିକ ଭୟାବହ କରି ଦେଉଥିଲା । ]

ମଣ୍ଡା । ସେନାପତି ଦନ୍ତା କାହିଁ, ନୀଳକଣ୍ଠ ? ଏଠାରେ ତାର ଉପସ୍ଥିତି ଯେ ଏକାନ୍ତ ପ୍ରୟୋଜନ ।

ନୀଳ । କଣ କରିବି, ମା ! ବିଶ୍ୱାସଘାତକ ମନ୍ତ୍ରୀ ବୃଷଭାନୁଙ୍କୁ ବନ୍ଦୀ ନ କଲେ, ଅବସ୍ଥାକୁ ଆୟତ୍ତରେ ଆଣିବା ଅସମ୍ଭବ । ତେଣୁ ସେହି ସଇତାନର ଅନୁସନ୍ଧାନରେ,ଦନ୍ତାକୁ ମୁଁ ଦୁର୍ଗପ୍ରାଚୀର ନିକଟକୁ ପଠାଇଛି ।

ମନ୍ତ୍ରୀ । ବାସ୍ତବକ, ମୁଁ ଆଶ୍ଚର୍ଯ୍ୟ ହେଉଛି ନୀଳକଣ୍ଠ ଯେ,ବିଦ୍ରୋହୀମାନେ ଦୁର୍ଗ ଅବରୋଧ କରିବା ପୂର୍ବରୁ ଆମର ସୈନ୍ୟବାହିନୀ ସେମାନଙ୍କର ପ୍ରତିରୋଧ କଲେନାହିଁ କାହିଁକି ! ବୃଷଭାନୁର ଷଡ଼ଯନ୍ତ୍ର କି ଏ ସବୁର ମୂଳ କାରଣ ? (କୋଳାହଳ ଶୁଣି) ଏ କଣ ! କୋଳାହଳ ଯେ କ୍ରମେ ନିକଟବର୍ତ୍ତୀ ହେଉଥିବା ଜଣାଯାଉଛି !! ଦୁର୍ଗରକ୍ଷୀବାହିନୀ କଣ ଦୁର୍ଗରକ୍ଷା କରିବାକୁ ଏକାନ୍ତ ଅସମର୍ଥ ?

ନୀଳ । ସମର୍ଥ ଅସମର୍ଥର ପ୍ରଶ୍ନ ତ କିଛି ଏଠାରେ ନାହିଁ, ମା । ସମସ୍ତେ ଯେ ଆଜି ଗୋଟାଏ ବିଶ୍ୱାସଘାତକର ଦଳ । ଦୁର୍ଗରକ୍ଷୀବାହିନୀ ତ ମୋର ଆୟତ୍ତରେ ନାହାନ୍ତି । ସୁତରାଂ, ଦୁର୍ଗରକ୍ଷା କରିବ କିଏ ? (କ୍ରୋଧେ) ଓଃ—ସଇତାନ୍ ବୃଷଭାନୁ ! ବର୍ତ୍ତମାନ ଥରେ ଯଦି ମୁଁ ତୁମକୁ ମୋର କବଳରେ ପାଇ ପାରନ୍ତି !! (ଅସ୍ଥିର ଭାବେ ଭ୍ରମଣ କଲେ । ଜଣେ ସୈନିକର ପ୍ରବେଶ) କି ସମ୍ବାଦ ସୈନିକ ?

ସୈନି । ଆଉ ରକ୍ଷା ନାହିଁ, ମହାରାଜ ! ଜୟଲକ୍ଷ୍ମୀ ଆମର ବିପକ୍ଷରେ । କନ୍ଧ ପାଇକମାନଙ୍କର ବିଷାକ୍ତ ତୀର ସମ୍ମୁଖରେ, ଆମର ଦୁର୍ଗରକ୍ଷୀ ସେନା ଯେ ପ୍ରାଚୀର ଉପରେ ସ୍ଥିର ଭାବରେ ରହିପାରୁ ନାହାନ୍ତି । ଯୁଦ୍ଧ କରିବେ କିପରି ? ତା ପରେ, ବିଦ୍ରୋହୀମାନଙ୍କର ଆକ୍ରମଣରେ ଆମର ଅର୍ଦ୍ଧାଧିକ ସେନା ନିହତ । ବର୍ତ୍ତମାନ ଉପାୟ ?

ମନ୍ତ୍ରୀ । ଉପାୟ ? ଯାଅ ମୂର୍ଖ ! ଦୁର୍ଗରକ୍ଷୀବାହିନୀର ଜଣେ ମାତ୍ର ସୈନିକ ଜୀବିତ ଥିବା ପର୍ଯ୍ୟନ୍ତ, ବିପ୍ଳବୀମାନଙ୍କ ଉପରେ ନିର୍ମ୍ମମ ଭାବରେ ଅବିରାମ ଗୁଳି ବର୍ଷଣ କର, ଯାଅ । (ସୈନିକର ପ୍ରସ୍ଥାନ ।)

ନୀଳ । କିନ୍ତୁ ମା—ବୃଥା ଚେଷ୍ଟା ! ଘରେ ବାହାରେ ଉଭୟ ସ୍ଥାନରେ ଯେ ମୋର ଶତ୍ରୁ । ଏ ଉଭୟ ଶତ୍ରୁକୁ ଏକ ସମୟରେ ଦମନ କରିବା ଯେ ଅସମ୍ଭବ । ଦୁର୍ଗ ପ୍ରାଚୀର ଉପରୁ ମୁଁ ନିରୀକ୍ଷଣ କରି ଦେଖି ପାରୁଛି— ବିପ୍ଳବୀମାନଙ୍କର ଅଗଣିତ ସମାବେଶ । ପୁଣି ମାରାତ୍ମକ ଅସ୍ତ୍ର ଶସ୍ତ୍ରରେ ସଜ୍ଜିତ ସେମାନେ । ସାମାନ୍ୟ ଏକ ସହସ୍ର ମାତ୍ର ଦୁର୍ଗରକ୍ଷୀ ସେନାଙ୍କର

କେତେ ଶକ୍ତ ଯେ,ସେମାନେ ଏହି ବଗିଙ୍କ ଆକ୍ରମଣର ସମ୍ମୁଖୀନ ହେବେ ? (ଦଳୀର ପ୍ରବେଶ ।) କି ସମ୍ବାଦ ଦଳୀ ? ବର୍ବର ବୃନ୍ଦାବନର କୌଣସି ସନ୍ଧାନ ମିଳିଲା ?

ଦଳୀ । ବୃନ୍ଦାବନଙ୍କର ଅପ୍ରତିହତ ସାମାନ୍ୟ ଶକ୍ତ ସୁଦ୍ଧା, ଦୁର୍ଗ ମଧ୍ୟରେ ଦେଖି ପାରିଲି ନାହିଁ, ମହାରାଜ ! କିନ୍ତୁ ଏଣେ, ଅଚିରେ ଦୁର୍ଗର ପତନ ଯେ ଅବଶ୍ୟମ୍ଭାବୀ । ବର୍ତ୍ତମାନ ଆତ୍ମରକ୍ଷାର କୌଣସି ଉପାୟ ନିର୍ଦ୍ଧାରଣ କରନ୍ତୁ । ଦୁର୍ଗର କୌଣସି ଗୁପ୍ତ ପଥ ତ ମୋତେ ଜଣା ନାହିଁ । କଣ କରାଯିବ, ରାଣୀମା ?

[ ନିକଟରୁ କୋଳାହଳ ଶୁଣାଗଲା, ଜୟ ରାଜା ରଣଭଞ୍ଜଙ୍କର ଜୟ ।]

ମଣ୍ଡା । ଏ କଅଣ ? କୋଳାହଳ ଏତେ ନିକଟରେ ଶୁଣା ଯାଉଛି ଯେ ? ପୁଣି ରଣଭଞ୍ଜଙ୍କର ଜୟ !! କିଏ ଏହି ରଣଭଞ୍ଜ, ଦଳୀ ?

ଦଳୀ । ପାଟଦେଇ ଶତ୍ରୁଘ୍ନଙ୍କର ଶିଶୁପୁତ୍ର, ରାଣୀମା ।

ମଣ୍ଡା । ସେ କି ଏ ପର୍ଯ୍ୟନ୍ତ ଜୀବିତ ?

ଦଳୀ । କଣ କହିବି, ରାଣୀମା ! ବିଧବା ରାଜବଧୂ ମାଧବିକା, ଏହି ଶିଶୁ ପୁତ୍ରକୁ କୋଳରେ ଧରି ସାକ୍ଷାତ୍ ରଣରଙ୍ଗିଣୀ ମୂର୍ତ୍ତିରେ, ବିଦ୍ରୋହୀମାନଙ୍କୁ ତେଜି ଅପୂର୍ବ ଉତ୍ତେଜନା ଦେବାରେ ଲାଗିଛନ୍ତି, ସେଥିରେ ବନ୍ଧ ପାଇକମାନେ ଉନ୍ମତ୍ତ ହୋଇ ଉଠିଛନ୍ତି । ଦୁର୍ଗଦ୍ୱାରକୁ ଚୂର୍ଣ୍ଣିଭୂତ କରି ଦୁର୍ଗପ୍ରବେଶ କରିବାହିଁ ସେମାନଙ୍କର ଲକ୍ଷ୍ୟ । ମୋର ମନେ ହୁଏ, ସେମାନଙ୍କର ଶାଣିତ ଦୃଷ୍ଟି ପଡ଼ୁଥିରେ ପଡ଼ିଲେ, ମହାରାଜାଙ୍କର ଜୀବନ ହୁଏତ ସଙ୍କଟାପନ୍ନ ହୋଇ ଉଠିବ ।

[ ଜୟଧ୍ୱନି ଅତିଶୟ ନିକଟରେ ଶୁଣାଗଲା । ]

ମଣ୍ଡା । ଏ କଣ ଦଳୀ ? ଏ ଜୟଧ୍ୱନି ଯେ ଦୁର୍ଗ ମଧ୍ୟରେ ଶୁଣା-ଯାଉଛି । ତେବେ କଣ, ବିଦ୍ରୋହୀମାନେ ଦୁର୍ଗ ପ୍ରବେଶ କରି ସାରିଲେଣି ?

[ ଜନୈକ ସୈନିକର ଦ୍ରୁତ ପ୍ରବେଶ । ]

ସୈନ୍ୟ । ମହାରାଜ, ଶୀଘ୍ର ପଳାୟନ କରି ଆତ୍ମରକ୍ଷା କରନ୍ତୁ । ଦୁର୍ଗ ଦ୍ୱାର ସଂପୂର୍ଣ୍ଣରୂପେ ବିଧ୍ୱସ୍ତ ହୋଇ ସାରିଛି । ବିଦ୍ରୋହୀ ସର୍ଦ୍ଦାର ତାଙ୍କର ସେନାବାହିନୀ ସହିତ ଦୁର୍ଗମଧ୍ୟକୁ ମାଡ଼ି ଆସୁଛନ୍ତି । ଆଉ ରକ୍ଷା ନାହିଁ ! (ଦ୍ରୁତ ପଳାୟନ କଲା ।)

ନୀଳ । ବର୍ତ୍ତମାନ ଉପାୟ, ଦନ୍ତା ? କେଉଁ ପଥରେ ପଳାୟନ କରିବା ? ଦୁର୍ଗର ଚତୁର୍ଦ୍ଦିଗ ଯେ ଆକ୍ରାନ୍ତ । ମା, ଏ ବିପଦରୁ ଆପଣଙ୍କୁ କିପରି ରକ୍ଷା କରିବି, ମୁଁ ତ କିଛି ଠିକ୍ କରିପାରୁ ନାହିଁ ।

ମଣ୍ଡା । ମୋ ଲାଗି ଚିନ୍ତା କରିବାର କୌଣସି ପ୍ରୟୋଜନ ନାହିଁ, ରାଜା ! ଦୁମୁସରର ରାଜମାତା, ଭକ୍ଷୁକ ଧନଭଞ୍ଜ ହାତରେ ବନ୍ଦୀ ହେବା ପୂର୍ବରୁ, ତାଙ୍କର ମୁକ୍ତିର ପଥ ସେ ଖୋଜି ନେଇ ସାରିଥିବେ ।

ଚମ୍ପା । (ଭୟରେ) ତା ହେଲେ, ଆମ୍ଭମାନଙ୍କର କଣ ହେବ, ରାଣୀମା ? ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ଆପଣଙ୍କ ଛଡ଼ା ଯେ ଆମର ଅନ୍ୟ ଗତି ନାହିଁ ?

ନୀଳ । ଥରେ ଶେଷ ଚେଷ୍ଟା କରି ଦେଖିବା ଚାଲ, ଦନ୍ତା ! ଯଦି କେଉଁଠାରେ ପଳାୟନର କୌଣସି ଗୁପ୍ତ ପଥ ମିଳେ ।

[ ଅଗ୍ରସର ହେଲେ । ଠିକ୍ ଏହି ସମୟରେ, ତାଙ୍କର ସମ୍ମୁଖ ଦିଗରୁ ପ୍ରବେଶ କଲେ ଧନଭଞ୍ଜ ଓ ଅସ୍ତ୍ରଧାରୀ ସୈନିକମାନେ । ଅନ୍ୟ ଦିଗରୁ ପ୍ରବେଶ କଲେ, ଗାଲେଶ୍ୱ ସର୍ଦ୍ଦାର ଓ ତାଙ୍କର କନ୍ଧ ପାଇକମାନେ । ଧନଭଞ୍ଜଙ୍କର ଇଙ୍ଗିତରେ ସୈନ୍ୟ ଓ ପାଇକମାନେ, ନୀଳକଣ୍ଠ, ଦନ୍ତା ଓ ମଣ୍ଡାଦେବୀ ପ୍ରଭୃତିଙ୍କୁ ଚାରି ପାଖରୁ ଘେରି ପକାଇଲେ । ]

ଧନ । ବୃଥା ଚେଷ୍ଟା, ମହାରାଜ ! ପଳାୟନର ସମସ୍ତ ପଥ ଆଜି ରୁଦ୍ଧ । କଣ କରିବି, ବଡ଼ ଅସମୟରେ ଆସି, ଆପଣଙ୍କ ଚିଲ୍କାଲବ୍ଧ ରାଜତ୍ୱର ସୁଖସ୍ୱପ୍ନରେ ବାଧା ଦେବାକୁ ବାଧ୍ୟ ହେଲି ! କ୍ଷମା କରିବେ ।

ନୀଳ । ବିଶ୍ୱାସଘାତ ଭକ୍ଷୁକ ! ତୁମର ଏଠାକୁ ଆସିବାର ଉଦ୍ଦେଶ୍ୟ ?

ଧନ । (ହାସ୍ୟ କରି) ଉଦ୍ଦେଶ୍ୟ ? ମହାନୁଭବ ବୃଦ୍ଧରାଜା ଧନଞ୍ଜୟଙ୍କ ହତ୍ୟାରେ, ତୁମେ ଯେଉଁ ରୁଧିରକ୍ତ ରାଜତ୍ୱର ଆରମ୍ଭ କରିଥିଲ, ସେହି ରାଜତ୍ୱକୁ ମୁଁ ଏହି ମୁହୂର୍ତ୍ତରେ ସେହିପରି ଘୃଣ୍ୟ ଏ ଚକ୍ରାନ୍ତ ହତ୍ୟାରେ ଶେଷ କରିଦେବାକୁ ଚାହେଁ । ଏହି ଏତିକି ମାତ୍ର ଉଦ୍ଦେଶ୍ୟ । ଏହା ନିୟତିର ନିର୍ଦ୍ଦେଶ, ନୀଳକଣ୍ଠ ! ମୁଁ କଣ କରିବି, ନାଗର୍ । ସୈନିକଗଣ, ଯାଅ, ସମସ୍ତଙ୍କୁ ବନ୍ଦୀ କର । ଏ ଯେ ରାଣୀମା—ମହିମାମୟୀ ରାଜମାତା ! କ୍ଷମା କରିବେ, କର୍ତ୍ତବ୍ୟ ଅନୁରୋଧରେ ଆଜି ଏହି ଅପ୍ରୀୟ କାର୍ଯ୍ୟ କରିବାକୁ ବାଧ ହେଉଛି ।

ମଣ୍ଡା । ଧନ୍ୟବାଦ ! କିନ୍ତୁ ରାଜମାତାଙ୍କୁ ତୁମେ ବନ୍ଦୀ କରି ପାରିବ, ଧନଭଞ୍ଜ ? ଏ ସ୍ପର୍ଦ୍ଧା ତୁମର ଅଛି ?

ଧନ । ବହୁତ ଦୂରକୁ ଅଗ୍ରସର ହୋଇ ସାରିଛି, ରାଣୀମା ! ସୁତରାଂ, ଏହି ସାମାନ୍ୟ କାର୍ଯ୍ୟଟା ଆଉ ବାକୀ ରହିଯିବ କାହିଁକି ? ଯାଅ ସୈନିକ, ବନ୍ଦୀ କର ।

[ ସୈନିକ ବନ୍ଦୀ କରିବାକୁ ଯିବାବେଳକୁ, ମଣ୍ଡାଦେବୀ ନିଜର ହୀରକ ଅଙ୍ଗୁରୀୟକୁ ଶୋଷି ନେଲେ । ]

ମଣ୍ଡା । (ହସି) ହା—ହା—ହା ଦେଖିଲ ଧନଭଞ୍ଜ ? ବୃଥା ଚେଷ୍ଟା ତୁମର । (ଜଡ଼ିତ କଣ୍ଠରେ) କୁଳଙ୍ଗ ଦୁର୍ଗର ବାସିନ୍ଦାଙ୍କୁ ଏତେ ସହଜରେ ଆୟତ୍ତରେ ଆଣି ପାରିବା, ତୁମ ପକ୍ଷରେ ଅସମ୍ଭବ । ମଣ୍ଡାଦେବୀ ତୁମପରି ଭିକ୍ଷୁକଙ୍କୁ କେବଳ ପଦାଘାତ କରି, ନିଜର ମର୍ଯ୍ୟାଦା କିପରି ରକ୍ଷାକରେ, ଦେଖିଲ ? ବଡ଼ ଆଶାରେ ନିରାଶ ହେଲ, ଧନଭଞ୍ଜ ! ନୁହେଁ ? ? ମୁଁ ଚାଲିଲି, ନୀଳକଣ୍ଠ ! ଏଥର ମୋତେ ବନ୍ଦୀ କର, ଭିକ୍ଷୁକ-ହାଃ-ହାଃ-ହାଃ ।
(କହୁଁ କହୁଁ ତଳେ ପଡ଼ିଲେ ଓ ସୈନିକମାନେ ତାଙ୍କର ମୃତଦେହକୁ ତଳେ ଶୁଆଇ ଦେଲେ ଓ ନୀଳକଣ୍ଠଙ୍କୁ ସଙ୍ଗେ ସଙ୍ଗେ ବନ୍ଦୀ କଲେ ।)
ଗାଃ ସର୍ଦ୍ଦାର । ରାଣୀ କଣ ମରିଗଲେ, ରାଜକୁମାର ?

ଘନ । ହଁ ସର୍ଦ୍ଦାର ! ସ୍ୱାରକ ଅଙ୍ଗୁଷ୍ଠପୂତ ଶୋଣିତ ନେଇ. ସେହି ବିଷର ଛୁରିକାଘାତରେ ସେ ତାଙ୍କର ଜୀବନ ଶେଷ କରି ଦେଇଛନ୍ତି । ରାଜା ଧନଞ୍ଜୟଙ୍କର ହତ୍ୟାର ଉପଯୁକ୍ତ ପ୍ରାୟଶ୍ଚିତ୍ତ । ଏଥିରେ ଆକ୍ଷେପ କରିବାର କିଛି ନାହିଁ । ଯାଅ, ସୈନିକ, ବର୍ତ୍ତମାନ ଅନ୍ୟମାନଙ୍କୁ ବନ୍ଦୀ କର ।

ଗାଳ । ବିଶ୍ୱାସଘାତକ କିଏ ସର୍ଦ୍ଦାର ! ଦେଶର ରାଜା ବିରୁଦ୍ଧରେ ଏହି ବିଦ୍ରୋହ ସୃଷ୍ଟି କରିବା ବୋଧହୁଏ, ତୁମ କନ୍ଧଜାତିର ରାଜଭକ୍ତିର ନିଦର୍ଶନ, ନୁହେଁ ?

ଗା: ସର୍ଦ୍ଦାର । ବିଦ୍ରୋହ ତ ମୁଁ କରି ନାହିଁ, କୁମାର ! ବରଂ, ରାଜା ବିରୁଦ୍ଧରେ ବିଦ୍ରୋହ କରିଛ ତୁ । ତେଣୁ, ସେହି ବିଦ୍ରୋହ ଦମନ କରିବାକୁ ଆସିଅଛୁଁ ଆମେ । ଏ ସିଂହାସନରେ ତୋର କୌଣସି ଦାବୀ ନାହିଁ । ଆମ ସ୍ୱର୍ଗତ ରାଜାଙ୍କର ନାତି ଶିଶୁ ରଣଭଞ୍ଜ,କେବଳ ଏ ରାଜ୍ୟର ରାଜା । ତାରି ସିଂହାସନ ଆଜି ତାରି ହାତରେ ସମର୍ପଣ କରି ଦେଇ ଯିବା ଲାଗି, ଆମର ଏ ଚେଷ୍ଟା, ଅନ୍ୟାୟ ବିଦ୍ରୋହ ନୁହେଁ । ଏଥିଲାଗି ଗାଳେଶ୍ୱ ସର୍ଦ୍ଦାର ଆଉ ତାର ଜାତିକୁ ବିଶ୍ୱାସଘାତକ ବୋଲି କେବେ କହିବୁ ନାହିଁ,କୁମାର ! କନ୍ଧଜାତି ସବୁ ଗାଳି ସହିପାରେ, କିନ୍ତୁ ଏ ଗାଳି ଶୁଣିଲେ, ତାର ଦେହଜାତର ରକ୍ତ ଗରମ ହୋଇ ଉଠେ, ସାବଧାନ !

ଘନ । ଯାଅ ସୈନିକ, ଶୀଘ୍ର ବାକୀ ସମସ୍ତଙ୍କୁ ବନ୍ଦୀ କର ।

ଦଣ୍ଡୀ । କିନ୍ତୁ, ମୁଁ ତ କୌଣସି ସିଂହାସନର ଦାବୀ କେବେ କରି ନାହିଁ, କୁମାର ! ସୁତରାଂ, ମୋତେ ବନ୍ଦୀ କରି ତୁମର କି ଲାଭ ?

ଘନ । ଚୁପ୍ କର । ଲାଭ କ୍ଷତିର ହିସାବ ଦେଇ କାର୍ଯ୍ୟ କରିବା ନିମିତ୍ତ, ମୁଁ ଏତେ ପରିଶ୍ରମ କରି କୁଳାଡ଼ ଦୁର୍ଗ ମଧ୍ୟକୁ ପ୍ରବେଶ କରି ନାହିଁ । ମୋ ବିରୁଦ୍ଧରେ ଅଭିଯୋଗ କରି ସାକ୍ଷ୍ୟ ଦେବା କଥା, ତୋର ଆଜି ମନେ ପଡ଼େ ? ସୁତରାଂ, ମୋର ଏତେବଡ଼ ହିତାକାଂକ୍ଷୀ ବନ୍ଧୁଙ୍କୁ ମୁଁ କି କେମିତି ଭୁଲିପାରେ ? ଯାଅ ସୈନିକ ! ଘୁମୁସର ରାଜ୍ୟର ସୁଯୋଗ୍ୟ ସେନାପତିଙ୍କୁ ତାଙ୍କର ସମୁଚିତ ଅଭ୍ୟର୍ଥନା ଦାନକର । (ସୈନିକ ବନ୍ଦୀ

କର) ଅଉ, ତା ସଙ୍ଗେ ସଙ୍ଗେ ସେହି ରାକ୍ଷୁଣୀ ଚମ୍ପାକାଙ୍କୁ ମଧ୍ୟ ବନ୍ଦୀ କର,ସୈନିକ ! (ଚମ୍ପାକୁ ବନ୍ଦୀ କରାଗଲା ପରେ ଅନ୍ୟ ପରିଚାରିକାମାନଙ୍କୁ) ଯାଅ, ତୁମ୍ଭେମାନେ ମୁକ୍ତ । ଘନଭଞ୍ଜ ତୁମ୍ଭମାନଙ୍କର କୌଣସି ଅନିଷ୍ଟ କରିବ ନାହିଁ । ପାଁଚଦେଈଙ୍କର ଶିଶୁପୁତ୍ର ରଣଭଞ୍ଜ, ଏ ରାଜ୍ୟର ବର୍ତ୍ତମାନ ନବୀନ ରାଜା । ସୁତରାଂ,ତାଙ୍କର ପରିଚାରିକାରୂପେ,ତୁମ୍ଭେମାନେ ନିଶ୍ଚିନ୍ତରେ କୁଳଡ଼ ଦୁର୍ଗ ମଧ୍ୟରେ ରହିପାର । ଯାଅ, କାଲି ପ୍ରଭାତରେ, ରଣଭଞ୍ଜଙ୍କର ସିଂହାସନ ଆରୋହଣ ଲାଗି, ସମସ୍ତ ଉତ୍ସବର ଆୟୋଜନ କର ।

ପରିଚାରିକାଗଣ । ଜୟ ନବୀନ ରାଜା ରଣଭଞ୍ଜଙ୍କର ଜୟ । (ସେମାନେ, ଆନନ୍ଦରେ ଘନଭଞ୍ଜଙ୍କୁ ଅଭିବାଦନ କରି ଦୁର୍ଗ ମଧ୍ୟରୁ ଚାଲିଗଲେ ।)

ଚମ୍ପା । ମୋତେ କ୍ଷମା କରନ୍ତୁ, ରାଜକୁମାର !

ଘନ । (ହସି) ଅନୁନୟ କରିବାର ସ୍ଥାନ ଏ ନୁହେଁ,ଚମ୍ପା ! ଅନ୍ନଦାତା ଧନଞ୍ଜୟ ଭଞ୍ଜଙ୍କ ଖାଦ୍ୟରେ ବିଷ ପ୍ରୟୋଗ କଲାବେଳେ, କ୍ଷମା ମାଗିବାର କଳ୍ପନା ତ ତୁମର ନ ଥିଲା । ସୁତରାଂ ଆଜି କାହିଁକି ? ଯାଅ ସୈନିକ— ଏହି ଦୁଇଜଣଙ୍କୁ ଏହି ମୁହୂର୍ତ୍ତରେ ଦୁର୍ଗର ବାହାରକୁ ନେଇ, ଜନ୍ତୁଙ୍କ ଜନତାର ସମ୍ମୁଖରେ ହତ୍ୟା କର । ଏମାନଙ୍କର ହତ୍ୟାରେ, ହୁଏତ ସେମାନଙ୍କର କ୍ରୋଧ କିଛିତ ଶାନ୍ତ ହୋଇପାରେ, ଯାଅ ।

ଦନ୍ତା । ଆମ୍ଭମାନଙ୍କୁ ଏତେ ନିର୍ଦ୍ଦୟ ଭାବରେ ହତ୍ୟା କରିବେ, କୁମାର ?

ଘନ । ହତ୍ୟା କରିବାରେ ପୁଣି ଦୟା ଦେଖାଇବାକୁ ପଡ଼େ, ଏ କଥା ତ ମୋତେ ଜଣା ନ ଥିଲା । ମନ୍ଦ ନୁହେଁ—ଆସନ୍ନ ମୃତ୍ୟୁର ସମ୍ମୁଖରେ, ତୁମର ଏହି ଅପୂର୍ବ ଅଭିବ୍ୟକ୍ତି ଲାଗି ତୁମ୍ଭଙ୍କୁ ଧନ୍ୟବାଦ । ଯୁବରାଜ ଗଙ୍ଗାଧରଙ୍କର ହତ୍ୟାଟା ତାହେଲେ ନିଶ୍ଚୟ ସଦୟ ହତ୍ୟା ହୋଇଥିବ, ନୁହେଁ ? (ସୈନିକକୁ) ନେଇଯାଅ ଏମାନଙ୍କୁ—ଶୀଘ୍ର ହତ୍ୟା କରି ଏମାନଙ୍କର ମୁଣ୍ଡଦୁଇଟିକୁ ରାଜମାତା ମାଧବୀଙ୍କାଙ୍କୁ ଉପହାର ଦେବାକୁ ହେବ—ଯାଅ—ବିଳମ୍ବ କରନା—

[ ସୈନିକମାନେ ବନ୍ଦୀ ଦନ୍ତା ଓ ଚମ୍ପାକୁ ନେଇଗଲେ । ]

ଧନ । ତାର ପର—ଭୂତପୂର୍ବ ମହାରାଜ ନୀଳକଣ୍ଠ ! ଆପଣ ଶୁଣି ସୁଖୀ ହେବେ ଯେ, ମୋର ଏଠାକୁ ଆସିବାର ବହୁପୂର୍ବରୁ, ଆପଣଙ୍କର ଷଣ୍ଢସ୍ତ୍ରୀ ପଦନତସ୍ତ ରାଜନର୍ତ୍ତକୀ ମଞ୍ଜରୀଜୀଙ୍କୁ ତାଙ୍କର ଅନ୍ତଃସ୍ଥାପତ୍ତେ ଏହି ପୃଥିବୀରୁ ବିଦାୟ କରି ଦିଆଯାଇଛି । ସୁତରାଂ, ଆପଣ ବର୍ତ୍ତମାନ ପ୍ରସ୍ତୁତ ହେଉନ୍ତୁ—ହୁଏତ ସ୍ୱର୍ଗରେ, ମଞ୍ଜରୀଜୀ ଆପଣଙ୍କ ଲାଗି, ପୁଣି ଗୋଟାଏ ନୂତନ ସିଂହାସନ ପ୍ରସ୍ତୁତ କରି ରଖି, ଆପଣଙ୍କର ପଥ ଚାହିଁ, ଅପେକ୍ଷା କରି ବସି ରହିଥିବେ ।

ନୀଳ । (ଜଡ଼ିତ କଣ୍ଠରେ) ଧନଭଞ୍ଜ !—ମୋତେ କ୍ଷମା କର । ମୁଁ ଆଜି ଯଥାର୍ଥରେ ଅନୁତପ୍ତ ।

ଧନ । (ବ୍ୟଙ୍ଗ ହାସ୍ୟସହ) ବଡ଼ ଦୁଃଖିତ ମହାରାଜ, ଆପଣଙ୍କର ଅନୁତାପଟା ବଡ଼ ବିଳମ୍ବରେ ଆସିଛି । ସୁତରାଂ, ଆଜି ଏହାର କୌଣସି ମୂଲ୍ୟ ନାହିଁ । ଶୀଘ୍ର ପ୍ରସ୍ତୁତ ହୁଅନ୍ତୁ, ଯମପୁରର ଶାନ୍ତିଲାଗି ଆପଣଙ୍କ ଭଳି ଗୋଟାଏ ରାଜବଳିର ଆଜି ନିତାନ୍ତ ପ୍ରୟୋଜନ ।

ନୀଳ । କିନ୍ତୁ ମୋର ଗୋଟିଏ ଅନୁରୋଧ—ଧନଭଞ୍ଜ ! ରାଜପୁତ୍ର ମୁଁ—ମୋତେ ବନ୍ୟପଶୁ ପରି ହତ୍ୟା କର ନାହିଁ । ଅନ୍ତତଃ ଖଣ୍ଡେ ତରବାରି ମୋତେ ଦାନ କରି,ମୋର ଆତ୍ମହତ୍ୟାର ପଥ ସୁଗମ କରିଦିଅ ।

ଧନ । ତରବାରିର ବ୍ୟବହାର କି ଆପଣ ଜାଣନ୍ତି, ମହାରାଜ ? ଆପଣଙ୍କର ସାରା ଜୀବନଟା ଯେ କେବଳ ମିଥ୍ୟାଷଡ଼ଯନ୍ତ୍ର ସୃଷ୍ଟି କରିବାରେ ଅତିବାହିତ ହୋଇଛି ! ତା ପର—ଆତ୍ମହତ୍ୟା !! ଏ ଦୁଃସାହସ ଆଜି ଆପଣଙ୍କର ଆସିଲା ବା କିପରି ? (ଗମ୍ଭୀର ହୋଇ) ଶୁଣ ନୀଳକଣ୍ଠ ! ତୁମର ବର୍ବରତା ଲାଗି, ତୁମ ପ୍ରତି କୌଣସି ସହାନୁଭୂତି ଦେଖାଇବାକୁ ମୁଁ ପ୍ରସ୍ତୁତ ନୁହେଁ ।

ନୀଳ । ତା ହେଲେ, ମୋତେ ହତ୍ୟା କରିବା କି ତୁମର ଏକାନ୍ତ ଅଭିପ୍ରେତ ?

ଘନ । ଠିକ୍ ହତ୍ୟା ନୁହେଁ, ତା ଅପେକ୍ଷା ଅଧିକ କଠୋର ଶାସ୍ତିର କଳ୍ପନା ମୁଁ କରୁଛି, ଯାହାର ବାସ୍ତବତା ତୁମ ପକ୍ଷରେ, ମରଣଠାରୁ ଅଧିକ ଭୟାବହ, ଅଧିକ ମର୍ମନ୍ତୁଦ ହୋଇ ପଡ଼ିବ । ସହି ପାରିବ ସେ ଶାସ୍ତି, ନୀଳକଣ୍ଠ ?

ନୀଳ । ବନ୍ଦୀପ୍ରତି ବ୍ୟବହାର ବିଜେତାର ବିଚାର୍ଯ୍ୟ, ମୋର ନୁହେଁ । ସୁତରାଂ, ମୋତେ ଏ ପ୍ରଶ୍ନ କାହିଁକି ? ଶୁଣ ଘନଭଞ୍ଜ । ନୀଳକଣ୍ଠର ପରାଜୟ—ହୁଏତ ବିଧାତାର ନିର୍ଦ୍ଦେଶ । ତଥାପି—ତୁମେ ବିଶ୍ୱାସ କର ବା ନ କର, ମୁଁ ଆଜି ଯଥେଷ୍ଟ ଅନୁତପ୍ତ । ବଞ୍ଚି ରହିବାର ଆକାଂକ୍ଷା ଆଉ ଆଜି ମୋର ନାହିଁ । ସୁତରାଂ, ଯେତେ ଶୀଘ୍ର ପାର, ତୁମର କଠୋରତମ ଶାସ୍ତି ମୋତେ ପ୍ରଦାନ କର—ମୋର କୌଣସି ଦୁଃଖ ନାହିଁ ।

ଘନ । ସୈନିକ—ବନ୍ଦୀଙ୍କୁ ମୋ ନିକଟକୁ ନେଇ ଆସ । (ସୈନିକ ବନ୍ଦୀ ନୀଳକଣ୍ଠଙ୍କୁ ଘନଭଞ୍ଜଙ୍କ ପାଖକୁ ନେଇ ଆସିଲା ଓ ଘନଭଞ୍ଜ ନୀଳକଣ୍ଠଙ୍କୁ ବନ୍ଧନମୁକ୍ତ କରିଦେଲେ । ) ଯାଅ, ତୁମେ ମୁକ୍ତ, ନୀଳକଣ୍ଠ । ଘୁମୁସର ଗୌରବ କବିସମ୍ରାଟ ଉପେନ୍ଦ୍ରଙ୍କର ପିତା ତୁମେ, ସୁତରାଂ ତୁମ ପକ୍ଷରେ ଏହି ଶାସ୍ତି ହିଁ ଉପଯୁକ୍ତ ।

ନୀଳ । ଓଃ—ଏ ଯେ ତୁଷାନଳଠାରୁ ଅଧିକ ଯନ୍ତ୍ରଣାପ୍ରଦ ।।

ଘନ । ଯାଅ ନୀଳକଣ୍ଠ, ମୁକ୍ତ ତୁମେ । ଏଠାରେ ଆଉ ଅପେକ୍ଷା କର ନା । ଏହି ମୁହୂର୍ତ୍ତରେ ଏହି ଏକ ବସ୍ତ୍ରରେ, କୁଳାଡ଼ ଦୁର୍ଗ ତ୍ୟାଗ କରି, ଘୁମୁସର ରାଜ୍ୟ ସୀମା ପାର ହୋଇ ଯାଅ । ଏ ରାଜ୍ୟରେ ତୁମର ସ୍ଥାନ ନାହିଁ । ଗାଲେଶ୍ୱ ସର୍ଦ୍ଦାର—ଦେଖ—ଏ ଆଦେଶ ଯେପରି ଶୀଘ୍ର ପାଳିତ ହୁଏ । ଆଉ, ବିଦ୍ରୋହୀ ଜନତାଙ୍କୁ ଜଣାଇ ଦେବ ଯେ, ନୀଳକଣ୍ଠ ବର୍ତ୍ତମାନ ରାଜ୍ୟଚ୍ୟୁତ । ସେ ଚିରଦିନ ଲାଗି ଘୁମୁସର ତ୍ୟାଗ କରି ଯାଉଛନ୍ତି । ସୁତରାଂ,କେହି ଯେପରି ତାଙ୍କ ଉପରେ କୌଣସି ଅତ୍ୟାଚାର ନ କରନ୍ତି, ଏହା ସେମାନଙ୍କର ନବୀନ ରାଜା ରଣଭଞ୍ଜଙ୍କର ଆଦେଶ ।

ଗାଃ ସର୍ଦ୍ଦାର । ରାଜକୁମାର ଘନଭଞ୍ଜ । ତୁ ଏତେ ମହତ୍ ବୋଲି ମୋର ଧାରଣା ନଥିଲା । ଆଜ ମୋର ପୁରା ବିଶ୍ୱାସ ହେଉଛି ଯେ, ଶିଶୁ ରାଜା ରଣଭଞ୍ଜର ପ୍ରତିନିଧିରୂପେ,ଏ ରାଜ୍ୟର ମର୍ଯ୍ୟାଦା ତୁ ଠିକ୍‌ରୂପେ ରଖି ପାରିବୁ । ଚାଲ—ରାଜକୁମାର ! (ସର୍ଦ୍ଦାର ନୀଳକଣ୍ଠଙ୍କୁ ନେଇ ଯିବାକୁ ଉଦ୍ୟତ ହେଲେ ।)

ଘନ । ହଁ, ଯିବା ପୂର୍ବରୁ ଶୁଣିଯାଅ ନୀଳକଣ୍ଠ ! ଯୋଗୀରାଜ ଅଶ୍ୱତ୍ଥାମାଙ୍କର ଭବିଷ୍ୟଦ୍‌ବାଣୀ ଏତେ ଦିନ ସଫଳ ହୋଇ ପାରିଛି । ଏ ରାଜ୍ୟର ଶିଶୁ ରାଜା ରଣଭଞ୍ଜଙ୍କର ପ୍ରତିନିଧିରୂପେ, ତୁମର ନିର୍ବାସିତ କୁମାର ଘନଅ ଅଜି ଦୁମୁସରର ଭାଗ୍ୟବିଧାତା । ଏହି ମୁକୁଟକୁ ସଙ୍ଗରେ ବହନ କରି ନେଇଯାଅ ।

[ ଅଧୋବଦନରେ ପାଗଳ ପରିବେଷ୍ଟିତ ହୋଇ, ନୀଳକଣ୍ଠ ଗାଲେସ ସର୍ଦ୍ଦାରଙ୍କ ସହିତ ପ୍ରସ୍ଥାନ କଲେ । ସେମାନଙ୍କର ଚାଲିଗଲା ପରେ, ଅନ୍ୟାନ୍ୟ ସୈନିକମାନଙ୍କ ସହିତ, ଘନଭଞ୍ଜ ସିଂହଦ୍ୱାର ପାରି, ଦୁର୍ଗ ପ୍ରାଙ୍ଗଣ ଅତିକ୍ରମ କରି, ଦୁର୍ଗ ମଧ୍ୟକୁ ପ୍ରବେଶ କଲେ । ]

---

# ଶେଷ ଦୃଶ୍ୟ

[ ଚତୁର୍ଥ ଅଙ୍କ ପ୍ରଥମ ଦୃଶ୍ୟ ବର୍ଣ୍ଣିତ ବୁଗୁଡ଼ା ସିଦ୍ଧଗୁମ୍ଫାର ସମ୍ମୁଖଭାଗ । ଗୁମ୍ଫାର ଦ୍ୱାରଦେଶରେ, ଖଣ୍ଡିଏ ମୃଗଚର୍ମ ଆସନ ଉପରେ, ପଦ୍ମାସନରେ ବସିଛନ୍ତି, କବି ଉପେନ୍ଦ୍ର । ପରିଧାନ କଷାୟ ବସ୍ତ୍ର, ବକ୍ଷ ଉପରେ ଖଣ୍ଡେ ଉତ୍ତରୀୟ ଧୀର ପବନରେ ମୃଦୁ ଆନ୍ଦୋଳିତ ହେଉଥିଲା । ସମୟ-ପୂର୍ବାହ୍ଣ । ଉପେନ୍ଦ୍ର ହାତରେ ଧରିଥିଲେ, ଗୋଟିଏ ଲେଖନୀ ଆଉ ଗୋଟିଏ ତାଳପତ୍ର ପୋଥି । ତାଙ୍କର ସମ୍ମୁଖରେ, ଶିଳାବନ୍ଧୁର ଭୂମି ଉପରେ, ବାରଜଣ ପଣ୍ଡିତ ବାରଟି ଲେଖନୀ ଓ ତାଳପତ୍ର ପୋଥି ଧରି, ବଭିନ୍ନ ସ୍ଥାନରେ ଉପବିଷ୍ଟ । ଗୁମ୍ଫାର ବାମ ପାର୍ଶ୍ୱରେ, ପ୍ରସ୍ତର ଚତ୍ୱର ଉପରେ ବସିଥିଲେ ଗଜପତି ସମ୍ରାଟ ଦିବ୍ୟସିଂହ ଦେବ । ତାଙ୍କର ପାର୍ଶ୍ୱରେ ବସିଥିଲେ ରାଜକବି ଭୂପତି ପଣ୍ଡିତ ଓ ନୟାଗଡ଼ର ରାଜା ପୁରୁଷୋତ୍ତମ ମାନ୍ଧାତା । ସେମାନଙ୍କର ପଶ୍ଚାତରେ ସଶସ୍ତ୍ର ପରିଚାରକବର୍ଗ ଠିଆ ହୋଇ ରହିଥିଲେ । ଉପେନ୍ଦ୍ରଙ୍କର ଭୃତ୍ୟ ମାଧବ ଗୁମ୍ଫାଦ୍ୱାରର ଏକ ପାର୍ଶ୍ୱରେ ବସି, ନୀରବରେ ସମସ୍ତ ଦେଖୁଥିଲା । ଅଦୂରବର୍ତ୍ତୀ କୌଣସି ଗିରିନିର୍ଝରିଣୀର କୁଳୁ କୁଳୁ ସଙ୍ଗୀତ ଧ୍ୱନିରେ ସ୍ଥାନଟି ମୁଖରିତ ହେଉଥିଲା । ]

ଦିବ୍ୟ । ବାସ୍ତବିକ, ବୀରବର ଉପେନ୍ଦ୍ର ! ମୋର ପରମ ସୌଭାଗ୍ୟ ଯେ, ମୋ ଦେଶରେ ତୁମପରି ଜଣେ ଅଦ୍ୱିତୀୟ ପ୍ରତିଭାଶାଳୀ କବିଙ୍କର ଜନ୍ମ ସମ୍ଭବ ହୋଇ ପାରିଛି । କିନ୍ତୁ ତା ସଙ୍ଗେ ସଙ୍ଗେ ମୁଁ ଯଥେଷ୍ଟ ଲଜ୍ଜିତ ଯେ, ମୋ ଦେଶର କବିଶେଖରଙ୍କୁ ମୁଁ ଏ ପର୍ଯ୍ୟନ୍ତ ଉପଯୁକ୍ତ ସମ୍ମାନ ଦେଇ ପାରି ନାହିଁ ।

ଉପେ । ମହାନୁଭବ ସମ୍ରାଟ୍ ! ଆପଣଙ୍କର ଅତୁଳନୀୟ ଉଦାରତାରେ ମୁଁ ଆଜି ମୁଗ୍ଧ । ମୋତେ ସମ୍ମାନ ଦେବା କଥା କହୁଛନ୍ତି ? କିନ୍ତୁ ଆଗଙ୍ଗ ଗୋଦାବରୀ ବିସ୍ତୃତ କଳିଙ୍ଗ ସାମ୍ରାଜ୍ୟର କର୍ଣ୍ଣଧାର ବୀର ଶ୍ରୀ ଗଜପତି ସମ୍ରାଟ, ତାଙ୍କର ଅମୂଲ୍ୟ ରତ୍ନ ସିଂହାସନରୁ ଅବତରଣ କରି, ଆଜି ଯେ ସିଦ୍ଧଗୁମ୍ଫାର ଏହି ଶିଳାବନ୍ଧୁର ଦ୍ୱାରରେ ଉପସ୍ଥିତ, ଏହା କି ଉପେନ୍ଦ୍ର ପ୍ରତି କମ୍ ସମ୍ମାନ, ସମ୍ରାଟ୍ ? ନୀଳାଚଳନାଥଙ୍କର ଚଳନ୍ତି ପ୍ରତିମାଙ୍କୁ ଅତିଥିରୂପେ ପାଇ ପୂଜା କରିବାର ସୌଭାଗ୍ୟ ଖୁବ୍ କମ୍ ଲୋକଙ୍କର ଭାଗ୍ୟରେ ଘଟେ, ଏ କଥା ତ ମୁଁ ଭୁଲିପାରିବ ନାହିଁ, ସମ୍ରାଟ୍ ! ସୁତରାଂ, ଏହା କେବଳ ମୋର ସମ୍ମାନ ନୁହେଁ, ମୋର ଗର୍ବ, ମୋର ଗୌରବ ।

ଦିବ୍ୟ । କବିବର—ମୋର ଗୋଟାଏ ସାମାନ୍ୟ ଅନୁରୋଧ ଆଜି ରକ୍ଷା କରି ପାରିବ ?

ଉପେ । ଅନୁରୋଧ ନୁହେଁ, ସମ୍ରାଟ୍ ! ଆଦେଶ କରନ୍ତୁ ।

ଦିବ୍ୟ । କବୀନ୍ଦ୍ର ! ମୋର ଆଶା, ଯେଉଁ ପ୍ରତିଭାର ସମୁଜ୍ଜ୍ୱଳ ଦୀପ୍ତିରେ ମୋର ସମଗ୍ର ଦେଶ ଆଜି ଉଦ୍ଭାସିତ, ସେହି ପ୍ରତିଭାର ଗୋଟାଏ ଜ୍ୱଳନ୍ତ ନିଦର୍ଶନ ଥରେ ସ୍ୱଚକ୍ଷୁରେ ଦେଖି, ଜଗତର ସମସ୍ତ ସଭ୍ୟଜାତି ନିକଟରେ, ମୁଁ ଜଳଦଗମ୍ଭୀର ସ୍ୱରରେ ପ୍ରଚାର କରିବାକୁ ଚାହେଁ ଯେ, ମୋ ଦେଶର କବି ଉପେନ୍ଦ୍ର ଗୋଟାଏ ବିରାଟ ବସ୍ତୁ,..ଆଉ ତାର ପ୍ରତିଭା ନିରୁପମା । ମୋତେ ଏ ସୁଯୋଗ ଆଜି ଦାନ କର, କବି !

ଉପେ । ଆପଣଙ୍କର ଆଦେଶ ଶିରୋଧାର୍ଯ୍ୟ ! କହନ୍ତୁ, କି ନିଦର୍ଶନ ଦେଖିବାକୁ ଆପଣ ଆଗ୍ରହୀ ?

ଦିବ୍ୟ । ତୁମର ସମସ୍ତ କାବ୍ୟ ରଚନା ମୋର ଦୃଷ୍ଟିପଥକୁ ଆସିଛି, କବିବର ! ଆଉ ସେ ସବୁ ମୂଲ୍ୟବାନ କଳାସୃଷ୍ଟି ଦେଖି, ମୁଁ ମୁଗ୍ଧ, ଚକିତ, ସ୍ତମ୍ଭୀଭୂତ । କିନ୍ତୁ ମୁଁ ଶୁଣିଛି, ତାରକମନ୍ତ୍ରସିଦ୍ଧ ଦ୍ୱାଦଶାବଧାନୀ ଯୋଗୀ ତୁମେ—ଏକାଧାରରେ କବି ଓ ସାଧକ । ମୁଁ ତୁମର ସେହି ଦ୍ୱାଦଶାବଧାନୀ ପ୍ରତିଭା ଦେଖିବାକୁ ଆଜି ଏକାନ୍ତ ବ୍ୟାକୁଳ ! ଏହା

ତୁମର ପରୀକ୍ଷା ନୁହେଁ, କବୀନ୍ଦ୍ର ! ତୁମର ଗଳ୍ପରୁ ଏ ପର୍ଯ୍ୟନ୍ତ ଏହି ଦୁର୍ଲ୍ଲଭ ପ୍ରତିଭାର ବିଶ୍ଳେଷଣ ଅନ୍ୟ କେଉଁଠାରେ ଦେଖିପାରୁ ନାହିଁ । ସେହି ଅଭିଜ୍ଞତା ଲାଭ କରିବା ଉଦ୍ଦେଶ୍ୟରେ, ଦେଶର ବିଭିନ୍ନ ସ୍ଥାନରୁ ଏହି ବାରଜଣ ପଣ୍ଡିତଙ୍କୁ ମୁଁ ନିମନ୍ତ୍ରଣ କରି ଆଣିଛି । ମୋର ବିନୀତ ଅନୁରୋଧ, ଏହି ବାରଜଣ ପଣ୍ଡିତଙ୍କର ବିଭିନ୍ନ ବାରଗୋଟି ପ୍ରଶ୍ନର ଉତ୍ତର, ଏକ ସମୟରେ ସ୍ୱଚ୍ଛନ୍ଦ ଚିତ୍ତରେ ଦାନ କରି ମୋର କୌତୁହଳର ମର୍ଯ୍ୟାଦା ରକ୍ଷା କରିବ ।

ଉପେ । ଉତ୍ତମ, ସମ୍ରାଟ୍ । ଗୁରୁଦେବ ଶ୍ରୀ ରଘୁନାଥଙ୍କର ଇଚ୍ଛା ପୂର୍ଣ୍ଣ ହେଉ । ଜୟ ମା—ବାଗ୍‌ଦେବୀ ! ପଣ୍ଡିତ ମହାଶୟଗଣ ! ଆପଣମାନେ ବର୍ତ୍ତମାନ ପ୍ରଶ୍ନ ପଚାରି ପାରନ୍ତି ।

୧ ମ ପ । ଯମକ ପରିପୂର୍ଣ୍ଣ ଗୋଟିଏ ଚଉତିଶାର ଆଦ୍ୟ ଦୁଇ ଅକ୍ଷରକୁ ଅବଲମ୍ବନ କରି ରଚନାଟିଏ କରନ୍ତୁ, କବି !

୨ୟ ପ । ମଧୁବାନୁପ୍ରାସରେ କୌଣସି ଗୋଟିଏ କାବ୍ୟର ମଙ୍ଗଳାଚରଣ ରଚନା କରି ଦିଅନ୍ତୁ, କବି !

୩ୟ ପ । କବିବର, ଏମିତି ଗୋଟିଏ ଶ୍ଲୋକ ରଚନା କରନ୍ତୁ, ଯହିଁରେ ପ୍ରତ୍ୟେକ ପଦରେ ବିଷ୍ଣୁ ଓ ଶିବ ଉଭୟଙ୍କର ପ୍ରଶସ୍ତି ବର୍ଣ୍ଣିତ ହୋଇଥିବ !

୪ର୍ଥ ପ । କୌଣସି ଗୋଟିଏ ଶୁଦ୍ଧ ବାକ୍ୟ ଲାଗି ରାମଚନ୍ଦ୍ରଙ୍କର ପ୍ରଶସ୍ତି ଥାଇ, ଦୁଇଟି ପଦ ରଚନା କରି ଦିଅନ୍ତୁ ।

୫ମ ପ । କବୀନ୍ଦ୍ର ! ଅବନୀ ନିୟମରେ ବର୍ଷାଋତୁର ବର୍ଣ୍ଣନାଟିଏ ମୋର ପ୍ରୟୋଜନ ।

୬ଷ୍ଠ ପ । ଶ୍ରୀକୃଷ୍ଣଙ୍କର ନିକୁଞ୍ଜବିହାର ବର୍ଣ୍ଣନାଟିଏ ପାଇବାକୁ, ମୋର ଏକାନ୍ତ ବାସନା, କବିବର !

୭ମ ପ । ଆପଣଙ୍କର ରଚନାରେ ଶୃଙ୍ଗାର ରସର ଆଧିକ୍ୟ ଦେଖାଯାଏ କାହିଁକି ? ଏହାର ଉତ୍ତର ମାତ୍ର ମୋର ପ୍ରୟୋଜନ, କବି !

୮ମ ପ । କୌଣସି ଅଲଙ୍କାରିକ କାବ୍ୟର, କ କାର ନିୟମରେ କିଛି ରଚନା କରନ୍ତୁ, କବି !

୯ମ ପ । ସେହି ଅଲଙ୍କାରିକ କାବ୍ୟର ଖ କାର ନିୟମରେ କିଛି ରଚନା ମୋର ପ୍ରୟୋଜନ ।

୧୦ମ ପ । ଗୋଟିଏ ରସପୂର୍ଣ୍ଣ ଛନ୍ଦ, ସଙ୍ଗୀତ ରଚନା କରି ଦିଅନ୍ତୁ, କବିବର !

୧୧ଶ ପ । କେଳିସଦନ ପ୍ରତ୍ୟାବୃତ୍ତ କୌଣସି ନାୟିକାକୁ ଅବଲମ୍ବନ କରି ଗୋଟିଏ ଛନ୍ଦ, ଚଉତିଶାର ପ୍ରଥମ ଦୁଇ ପଦ ରଚନା ମୋତେ ଦାନ କରନ୍ତୁ, କବି !

୧୨ଶ ପ । ଅପାଙ୍ଗଶୂନ୍ୟ ବାଣୀରେ, ପ୍ରେମିକା ନିକଟରୁ ଖଣ୍ଡେ ପ୍ରେମ ପତ୍ରର ବର୍ଣ୍ଣନା କରନ୍ତୁ । ଅଭି ସେହି ରଚନାର ପ୍ରତ୍ୟେକ ଧାଡ଼ିର ଅନ୍ତିମରେ କ,ଖ,ଗ,ଘ,ଙ,ଚ, ଏହି ଛଅଟିଯାକ ଅକ୍ଷରର ବ୍ୟବହାର ହୋଇଥିବ ।

ଉପେ । ସମ୍ରାଟ ! ପ୍ରତ୍ୟେକ ପଣ୍ଡିତଙ୍କୁ ମୋର ଅନୁରୋଧ, ସେ ଯେପରି ସଙ୍ଗେ ସଙ୍ଗେ ମୋର ରଚନାଗୁଡ଼ିକ ଲିପିବଦ୍ଧ କରି ରଖିବେ ଏବଂ ପ୍ରଶ୍ନର ଉତ୍ତର ପାଇ ସାରିବା ପରେ, ସେହି ଅସମ୍ପୂର୍ଣ୍ଣ ରଚନାର ପୋଥିଗୁଡ଼ିକ, ମୋତେ ପ୍ରତ୍ୟର୍ପଣ କରିବେ । କାରଣ, ମୋର ଆଶା, କେବଳ ଗଜପତି ସମ୍ରାଟଙ୍କର ସ୍ମୃତିକୁ ଚିରସ୍ମରଣୀୟ କରି ରଖିବା ପାଇଁ, ମୋର ଅନ୍ତିମ ଏହି ଅସମାପ୍ତ ରଚନାଗୁଡ଼ିକୁ, ମୁଁ ଗୋଟିଏ ଗୋଟିଏ ସ୍ୱତନ୍ତ୍ର କାବ୍ୟ କବିତାରେ ପୂର୍ଣ୍ଣ ରୂପ ଦାନକରି, ଶାନ୍ତି କରି ରଖିବ ।

ଦିବ୍ୟ । ଆଶା କରେଁ, କବୀନ୍ଦ୍ରଙ୍କର ଏହି ବାସନା ପୂର୍ଣ୍ଣ କରିବାକୁ, ପଣ୍ଡିତମାନଙ୍କର କୌଣସି ଆପତ୍ତି ନ ଥିବ ।

ପଣ୍ଡିତମାନେ । (ସମସ୍ୱରରେ) କବିଙ୍କର ଇଚ୍ଛା ପୂର୍ଣ୍ଣ ହେବ, ସମ୍ରାଟ !

ଉପେ । ପ୍ରଥମ ପଣ୍ଡିତଙ୍କର ପ୍ରଶ୍ନର ଉତ୍ତର ଗ୍ରହଣ କରନ୍ତୁ । ଯମକଯୁକ୍ତ ଚଉତିଶା । (ଧୀରେ ଧୀରେ ଶନ୍ତାକରି ଉପେନ୍ଦ୍ର ରଚନା କରିଯିବାକୁ

ଲାଗିଲେ ଓ ପଣ୍ଡିତମାନେ ତାହା ଲେଖିବାରେ ଲାଗିଲେ । ପ୍ରତ୍ୟେକ ପଣ୍ଡିତ, ତାଙ୍କର ପ୍ରଶ୍ନର ଉତ୍ତରକୁ ପୋଥିରେ ଲେଖିସାରି, ପୋଥିଟିକୁ ଉପେନ୍ଦ୍ରଙ୍କ ନିକଟରେ ରଖି ଦେଉଥିଲେ । )

କୁଞ୍ଜବନେ କଳାନିଧି କଳାନିଧି କଳାନିଧି କଳା ଶ୍ରୀହର,
କହନ୍ତି ସକଳ କଳକଣ୍ଠୀ ପାଶେ କଳକଣ୍ଠୀ ପ୍ରୀତି ସୁସ୍ୱର,
କୋକିଳ, କା କରୁଥିବ ସମାମଣି
କୁସୁମ ଶାୟକ ସାୟକ ସାୟକ ସାୟକ ବନ୍ଧୁ ଥିବ ଠାଣି ।୧।
ଖଞ୍ଜନ ନୟନା କଟକ କଟକ କଟକ କଟକ ଶୋଭନା,
ଖେଦକ ଦେଇବ ହାଟକ ହାଟକ ହାଟକ ସୁମନ ମୋହନା,
କୋକିଳ, ଝିଟି ମଣ୍ଡନା ଖଞ୍ଜାନନା,
ଖଞ୍ଜି ଥିଲା ପ୍ରୀତି କଟକ କଟକ କଟକ ସୁସ୍ତନା ଗମନା ।୨।

ଏହାହିଁ ଯମକ ସମ୍ପୂର୍ଣ୍ଣ ଚଉତିଶାର ଆଦ୍ୟ ଦୁଇ ଅକ୍ଷରର ରଚନା । ଏ ରଚନା ସମାପ୍ତ ହେଲେ, ଏହାର ନାମ ରହିବ ଯମକରାଜ ଚଉତିଶା । ଦ୍ୱିତୀୟ ପଣ୍ଡିତଙ୍କ ପ୍ରଶ୍ନର ଉତ୍ତର ଗ୍ରହଣ କରନ୍ତୁ । ସପୂର୍ବାନୁପ୍ରାସରେ କାବ୍ୟର ମଙ୍ଗଳାଚରଣ ।

ସିନ୍ଧୁତଟେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ରାଜ,
ସାଧୁଜନେ ଅଛ ତହିଁ ବହୁତ ଆଶ୍ଚର୍ଯ୍ୟ ॥
ସେ ଭୂମି ପ୍ରବେଶେ ବ୍ରହ୍ମହତ୍ୟା ପାପ ହରେ,
ସାକ୍ଷାତ ହୋଇଛୁ ଏ କପାଳ ମୋଚନରେ ॥
ସ୍ୱପଚ କରୁ ବ୍ରାହ୍ମଣ ତହିଁ ଖାଏ ଅନ୍ନ,
ଶଏଜନ୍ମ ପାପ ଗଲା ଭାବି ତୋଷମନ ॥
ସର୍ବଦାରେ ମୁକତି ପସରା ବସିଥାଇ,
ଘାରେ ପାପ ନର ବୈକୁଣ୍ଠକେ କିଣି ନେଇ ॥
ସମିଧ ଶରୀର କୃତ କଷ୍ଟୁ ନଶେ ତହିଁ,
ସୁଦର୍ଶନେ ଐଶ୍ୱର୍ଯ୍ୟ ଅପବର୍ଗ ଦେଇ ॥
ସଙ୍କର୍ଷଣ ଆପଣେ ବେନି ପାଶେ ବସେ,
ସ୍ନେହ ବଡ଼ ଭଗ୍ନୀଠାରେ ମଧ୍ୟେ ସେ ବସନ୍ତେ ॥

ଏହି କାବ୍ୟ ରଚନା ସମାପ୍ତ ହେଲେ, ଏହାର ନାମ ଦେବ 'ସୁଭଦ୍ରା ପରିଣୟ'। ତୃତୀୟ ପଣ୍ଡିତଙ୍କର ପ୍ରଶ୍ନର ଉତ୍ତର ଦେଉଛି, ହରିହର ବର୍ଣ୍ଣନାତ୍ମକ ସ୍ତୁତି।

ଜୟ ମକର କୁଣ୍ଡଳ,    କୁଣ୍ଡଳ କୁଣ୍ଡଳୀ,
ଘନସାର ଶ୍ୟାମ,    ଘନ ସାର କାନ୍ତି ଝଳ,
ଜୟ ନୂପୁର ମୋହନ    ନୂପୁର ଦହନ,
ଖଗ ପୁଙ୍ଗବ ବାହନ,    ପୁଙ୍ଗବ ବାହନ ॥
କମଳ ଦଳ ଲୋଚନ,    ଜୟ ନୀଲୋଚନ,
ମାର ଯାର କୁମାର,    କୁମାର ଯା ନନ୍ଦନ ॥
ଜୟ ପାଣ୍ଡବ ପକ୍ଷକ,    ତାଣ୍ଡବ ପଣ୍ଡିତ,
ଚନ୍ଦ୍ର ମୁକୁଟ ଧର,    ଚନ୍ଦ୍ର ମୁକୁଟ ସେ ତ ॥

ଏହି ବର୍ଣ୍ଣନା ଥାଇ, ଗୋଟିଏ କାଳ୍ପନିକ କାବ୍ୟ ରଚନା କରିବି, ଆଉ ତାର ନାମ ଦେବି, ରସକଲ୍ଲୋଳ। ଚତୁର୍ଥ ପଣ୍ଡିତଙ୍କର ଉତ୍ତର ଦେଉଛି—ରାମଚନ୍ଦ୍ରଙ୍କର ପ୍ରଶସ୍ତି ଦୁଇ ପଦ।

ଜୟ ଜୟ ରାମଚନ୍ଦ୍ର,    ଅସୁର-କଷ୍ଟ-ପାପନ୍ଦ,
ସୀତା-ହୃଦୟ-ଚନ୍ଦନ, ଜଗଦ୍‌ବନ୍ଦନ,
ନବୀନ ନୀରଦ ଶ୍ୟାମ    କାମକାନ୍ତ ଅଭିରାମ,
ଭକତ ମୁକତି ଧାମ, ଅନନ୍ତରୂପମ ॥

ଏହି ପ୍ରଶସ୍ତି ଥାଇ ଯେଉଁ କ୍ଷୁଦ୍ର କାଳ୍ପନିକ କାବ୍ୟ ରଚନା କରିବି, ତାର ନାମ ଦେବି—ସୁବର୍ଣ୍ଣରେଖା। ପଞ୍ଚମ ପଣ୍ଡିତଙ୍କର ପ୍ରଶ୍ନର ଉତ୍ତର ଏହି—ଅବନା ଯମକରେ ବର୍ଷା ବର୍ଣ୍ଣନା।

ପ୍ରକଟ ଘନ ସମୟ    ଘନ ପଟଳ ଉଦୟ
ଧନ୍ୟ ରସ ଜନ୍ୟ ସ୍ଥଳ ଦରଶନର,
ଗତ ପଣ୍ଡ ମଣ୍ଡଳର    ନଟନ ଅତଳପର
ତପ ଅନ୍ତକ ଅନଙ୍ଗ ମଙ୍ଗଳକର
ଏ ତାର ସମ୍ଭବ ସଉଧ,
ନଗ ଧବ ତଳ ତ୍ୟକ୍ତ ଗମନ ଉର୍ଦ୍ଧ୍ୱ ॥

ଏହି ବର୍ଣ୍ଣନା ସ୍ଥାନ ପାଇବ ମୋର ଗୋଟିଏ ପୌରାଣିକ କାବ୍ୟରେ, ସେ କାବ୍ୟଟିକୁ ମଧ୍ୟ ଅବନା ନିୟମରେ ରଚନା କରି ତାର ନାମ ରଖିବି, ଅବନା ରସତରଙ୍ଗ । ଷଷ୍ଠ ପଣ୍ଡିତଙ୍କର ପ୍ରଶ୍ନର ଉତ୍ତର ଦେଉଛି—ସେ ବୃନ୍ଦାବନ—ଶ୍ରୀକୃଷ୍ଣଙ୍କର ନିକୁଞ୍ଜ ବିହାର ବର୍ଣ୍ଣନା ।

ନୀଳମଣି ଇନ୍ଦୀବର ଘନ ତମାଳ ସୁନ୍ଦର
ଯୁବା ବୃନ୍ଦ ପୁରନ୍ଦର ନଟ ନାଗର,
କନକ ପଦ୍ମ କେଶର କୁଙ୍କୁମ କାନ୍ତି ଅମର
ନାଗରୀ ଚିତ୍ତ ଚତୁର ରସସାଗର,
ବେଢ଼ିଥିଲେ ନିକୁଞ୍ଜ ବନ
ସୁନ୍ଦରୀ ପୁରନ୍ଦରୀରେ ନେଇ ପବନ ॥

ଏହି ବର୍ଣ୍ଣନାକୁ ଅବଲମ୍ବନ କରି ଯେଉଁ ରଚନା ହେବ, ତାର ନାମ ରଖିବି—ଦଶପୋଇ । ସପ୍ତମ ପଣ୍ଡିତଙ୍କର ପ୍ରଶ୍ନ—ମୋର ରଚନାରେ ଶୃଙ୍ଗାର ରସର ପ୍ରାଚୁର୍ଯ୍ୟ କାହିଁକି । ତାର ଉତ୍ତର—ଶୃଙ୍ଗାରୀଚେତ୍ କବିଃ, କାବ୍ୟେ ଜାତଂ ରସମୟଂ ଜଗତ୍ । ଅଧିକ ପୁଣି—ଶୃଙ୍ଗାର ଏବ ମଧୁରଃ ପର ପ୍ରହ୍ଲାଦ କାରକଃ, ତନ୍ମୟଃ କାବ୍ୟ ମାଶ୍ରିତ୍ୟ ମାଧୁର୍ଯ୍ୟଂହି ପ୍ରତୀୟତେ ।

ଅଷ୍ଟମ ପଣ୍ଡିତଙ୍କର ପ୍ରଶ୍ନର ଉତ୍ତର ଦେଉଛି—କୌଣସି ଆଲଙ୍କାରିକ କାବ୍ୟର କ କାର ନିୟମରେ ପ୍ରଥମ ପଦ—

କମଳା କମଳାସନ ସନକ ବନ୍ଦନ,
କମଳ କମଳଧର କଳିତ ବଦନ,
କଳାପ କଳାପ ଦୈତ୍ୟ କଳାପସୂଦନ,
କଳଶୀକ କଳଶୀକ ଭସ୍ମ ବିଚ୍ଛେଦନ ॥

କ ଠାରୁ କ୍ଷ ପର୍ଯ୍ୟନ୍ତ ୩୪ଟି ଛନ୍ଦର ଏହି ଯେଉଁ ଆଲଙ୍କାରିକ କାବ୍ୟ ରଚନା କଲେ, ତାର ନାମ ଦେବି ଛନ୍ଦଭୂଷଣ । ନବମ ପଣ୍ଡିତଙ୍କର ପ୍ରଶ୍ନର ଉତ୍ତର—ଉପରୋକ୍ତ କାବ୍ୟର, ଖ କାର ନିୟମରେ ପ୍ରଥମ ପଦ—

ଖିଳ ବ୍ରହ୍ମାଣ୍ଡ ନାଥ ପ୍ରକାଶ ଜାଣି,
ଖେଦ କଲେ ବୃତ୍ତିକ ଅସୁର ମଣି,
ଖରେ ପୂତନା ରାଇ ଦେଲା ଆଦେଶ,
ଖର୍ବଟ ନଗ୍ରେ ଯେତେ ଶିଶୁ ଭୂ ନାଶ ॥

ଦଶମ ପଣ୍ଡିତଙ୍କର ପ୍ରଶ୍ନର ଉତ୍ତର ଦେଉଛି—ଗୋଟିଏ ରସପୂର୍ଣ୍ଣ ସଙ୍ଗୀତ—

ନଠ ନାଗର ହେ, ଏ ଗୀତ କାହୁଁ ଶିଖିଲ,
ଚନ୍ଦ୍ରକୁମୁଦ ପରାୟେ ପ୍ରୀତି କର, ବେଳକୁ ଭୁସ୍ମର ହେଲ ॥
ଜଣା ନ ଥିଲା ତ ଏମନ୍ତ କରିବ, ବୋଲି ହେ ନାଗରବର,
ଅମ୍ବୁଜ ଅଧରୁ ସୁଧା ଚଖାଇଣ, କଲ କୁଳଶ ପ୍ରହାର ॥

ଏହି ସଙ୍ଗୀତଟି ସ୍ଥାନ ପାଇବ ମୋର ସଙ୍ଗୀତ ସଂଗ୍ରହରେ ଏବଂ ସେହି ସଂଗ୍ରହର ନାମ ରଖିବ ଲାବଣ୍ୟନିଧି । ଏକାଦଶ ପଣ୍ଡିତଙ୍କର ପ୍ରଶ୍ନ—କେଳି ପ୍ରତ୍ୟାବୃତ୍ତା ନାୟିକା ସମ୍ବନ୍ଧରେ ଚଉତିଶାର ଦୁଇ ପଦ—

କେଳି ସଦନୁ ବାହୁଡ଼ି ପଥ ହୁଡ଼ି ଅସିବାବେଳେ ସୁକେଶୀ
କୋକିଳଭାଷୀଙ୍କୁ ଭାଷିଲା ଏମନ୍ତ ହେଉଁ ପରିହାସୀ ହସି
ଗୋ ସୁନ୍ଦରି, କହ କହ ମହାଶୋଭ,
କରୁଛ ବକ୍ଷର କେଉଁ ମୁକୁତାରୁ, ଭ୍ରମର ହେତଙ୍କା ଲଭ ॥
ଖିତପତି ରଣ ପରାଜୟ ଜୁର ପରାୟେ ନୂପୁର ବାଜେ,
ଖସି ପଡିବାରୁ ନିତମ୍ବ ଉପରୁ ଭଲା ଏ ବସନ ସାଜେ,
ଗୋ ସୁନ୍ଦରି, ଖେଦ ପାଇ ଯୁଦ୍ଧ ବଶେ
ଖସି ଯାଉଅଛି ଯୋଦ୍ଧା ମସ୍ତକର ଉଷ୍ଣୀଷ ଏମନ୍ତ ଦଶେ ॥

ଏହି କ୍ଷୁଦ୍ର ଚଉତିଶାର ନାମ ରଖିବ କେଳି-ବାହୁଡ଼ା ଚଉତିଶା । ଦ୍ୱାଦଶ ପଣ୍ଡିତ ବୃନ୍ଦାନ୍ତ—ଆଷାଢ଼ ଶୁକ୍ଳ ବାଣୀରେ—ଖଣ୍ଡେ ପ୍ରେମ ପତ୍ର, ଯାହାର ପ୍ରତି ପଦର ପ୍ରଥମ ଅକ୍ଷର ଥିବ କ ଖ ଗ ଘ ଙ ଚ—

କନକ ଶମ୍ଭୁକୁ ତୋ ଶତ ଥାଉ,
ଖଞ୍ଜନନେତ୍ରୀ ଛାମୁକୁ ଶଠାଉ,
ଗୋର ତୋ ଶ୍ରୀମୁଖ ଦେଖିଲା ଦିନୁ,
ଘଡ଼ିଏ ପାଶୋର ନ ଯାଏ ମନୁ,
ଙଣ୍ଟେ ଏହି ଧ୍ୟାନ,
ଚନ୍ଦ୍ରମା ବଦନ ନ କର ଭିନ ॥

ଏହି ଶତାବ୍ଦୀକୁ ପରିପୂର୍ଣ୍ଣ କରିସାରି, ମୋର ସଙ୍ଗୀତ ସଂଗ୍ରହ ଲାବଣ୍ୟବତୀରେ ସ୍ଥାନ ଦେବି । ଆଶା କରେଁ—ପଣ୍ଡିତ ମହାଶୟଗଣ ବର୍ତ୍ତମାନ ମୋର ଉତ୍ତରରେ ସନ୍ତୁଷ୍ଟ । ସମ୍ରାଟ—ମୋର ବିଶ୍ୱାସ, ଉପେନ୍ଦ୍ର ଆପଣଙ୍କର ମର୍ଯ୍ୟାଦା ରକ୍ଷା କରି ପାରିବାରେ ସମର୍ଥ ହୋଇ ପାରିଛି । ଗୁରୁଦେବ ଶ୍ରୀ ରଘୁନାଥଙ୍କର ଜୟ ହେଉ ।

ରୂପଚି । ଆଶ୍ଚର୍ଯ୍ୟ, ଏପରି ଅଦ୍ଭୁତ ପ୍ରତିଭାର ଅଧିକ୍ଷ ବିଷୟ କେବଳ ପ୍ରାଚୀନ ଶାସ୍ତ୍ର ପୁରାଣମାନଙ୍କରେ ପାଠ କରିଥିଲି, ସମ୍ରାଟ ! ସ୍ୱଚକ୍ଷୁରେ ଦେଖିବାର ସୌଭାଗ୍ୟ ମୋର ନ ଥିଲା । ଧନ୍ୟ ଉପେନ୍ଦ୍ର ! ଧନ୍ୟ ତୁମର ସାଧନା !

ପୂରୁ । ଧନ୍ୟ କେନାମଣି ! ଏ ଜଗତରେ ଏପରି ପ୍ରତିଭାର ସମ୍ଭବ ହୋଇପାରେ, ଏହା ଯେ ମୁଁ ଏ ପର୍ଯ୍ୟନ୍ତ ବିଶ୍ୱାସ କରିପାରୁ ନାହିଁ । କି ଅଲୌକିକ ଶକ୍ତି ତୁମର !!

ଦିବ୍ୟ । ରାଜାସାହେବ, ପଣ୍ଡିତ ମହାଶୟଗଣ, ଆଜିର ଏହି ଘଟଣା ପ୍ରତ୍ୟକ୍ଷ କରି ସାରି, ମୁଁ ଅତ୍ୟଧିକ ବାହୁଲ୍ୟରେ ଏକାବେଳକେ ନିର୍ବାକ ହୋଇ ପଡ଼ିଥିଲି । ମୁଁ ଭାବି ପାରୁ ନାହିଁ, କେଉଁ ପ୍ରକାରେ, କି ଅଭିନନ୍ଦନ କରି ଏହି ବିରାଟ ପ୍ରତିଭାର ମର୍ଯ୍ୟାଦା ବୃଦ୍ଧି କରାଇବି । ଏ ରତ୍ନ ଯେ ଗଜପତି ସମ୍ରାଟଙ୍କର ମସ୍ତକରେ ସ୍ଥାନ ପାଇବା ଉଚିତ । କଳିଙ୍ଗ ଗୌରବ କବି ସମ୍ରାଟ ! ଦରିଦ୍ର ଗଜପତିର ଅଭିବାଦନ ଗ୍ରହଣ କର । (ନମସ୍କାର କରିବାକୁ ଉଦ୍ୟତ ହେଲାବେଳେ, ଉପେନ୍ଦ୍ର ଉଠିଆସି ବାଧା ଦେଲେ ।)

ଉପେ । ମୋତେ ଅପରାଧୀ କରନ୍ତୁ ନାହିଁ, ସମ୍ରାଟ ! ଆପଣ ଯେ ସାର୍ଦ୍ଧ ଏକ କୋଟି ମାନବର ହୃଦୟ ଦେବତା ! ଆପଣଙ୍କର ଉନ୍ନତ ଶିର କେବଳ ଯେ ନୀଳାଚଳନାଥଙ୍କଠାରେ ପ୍ରଣତ ହେବାର ଯୋଗ୍ୟ । ଦରିଦ୍ର କବି ପ୍ରତି ଏ ଅନ୍ୟାୟ କାହିଁକି ?

ଦିବ୍ୟ । କବିବର । ମୋର ଏକାନ୍ତ ଆଶା ଯେ, ତୁମେ କଳିଙ୍ଗ ରାଜ ଦରବାରର କବିସମ୍ରାଟରୂପେ ସର୍ବୋଚ୍ଚ ଆସନ ଗ୍ରହଣ କରି, ସାମ୍ରାଜ୍ୟର

ଗୌରବ ବର୍ଦ୍ଧନ କରିବ । ତା ନହେଲେ, ମୋର ବିଶ୍ୱାସ କଳିଙ୍ଗ ରାଜ-ସଭାର ପାଣ୍ଡିତ୍ୟ, ସମଗ୍ର ଭାରତବର୍ଷର ଲୋକମୁଖରେ ପ୍ରଚାରିତ ହୋଇ ପାରିବ ।

ଉପେ । କ୍ଷମା କରିବେ, ସମ୍ରାଟ ! କୌଣସି ରାଜ ଦରବାରର ପ୍ରତ୍ୟକ୍ଷ ସଂସର୍ଗରେ ରହିବାକୁ, ମୋର ସାହସର ଏକାନ୍ତ ଅଭାବ । କୁଳାଗାର ଶ୍ରୀ ରଘୁନାଥ—ମୋର ଏକମାତ୍ର ରାଜା । ତାଙ୍କର ନାଟ ମନ୍ଦିରହିଁ ମୋର ଏକମାତ୍ର ରାଜସଭା । ଉପେନ୍ଦ୍ରର ଯାହା କିଛି ସାହିତ୍ୟ ସାଧନା, ଯାହା କିଛି ପ୍ରତିଷ୍ଠା, ତାହା ସେହି ରାଜରାଜେଶ୍ୱରଙ୍କର ରାଜ ଦରବାରରେ । ଏହା ବ୍ୟତୀତ ଅନ୍ୟ ପାର୍ଥିବ ରାଜସଭାର ଚାକଚକ୍ୟ, ଉପେନ୍ଦ୍ର ସହ୍ୟ କରିପାରିବ ନାହିଁ, ସମ୍ରାଟ ।

ଦେବ୍ୟ । ତୁମରି ଇଚ୍ଛା ପୂର୍ଣ୍ଣ ହେଉ, କବିବର ! ତୁମର ଶାନ୍ତିମୟ ଜୀବନ ଉପରେ ଗଜପତି କୌଣସି ଅନାବଶ୍ୟକ ହସ୍ତକ୍ଷେପ କରିବାକୁ ଉଚିତ ମନେକରେ ନା । ତଥାପି, ମୋର ଗୋଟିଏ ସାମାନ୍ୟ ଦାନ ଗ୍ରହଣ କରି ମୋତେ କୃତାର୍ଥ କର, କବି !

ଉପେ । (ଆସି ଗଜପତିଙ୍କର ସମ୍ମୁଖରେ ଠିଆ ହେଲେ ) ଆଦେଶ ସମ୍ରାଟ ?

ଦେବ୍ୟ । (ଠିଆ ହୋଇ) ଘୁମୁସର ଗୌରବ ଉପେନ୍ଦ୍ରଭଞ୍ଜ ! କବି କାଳିଦାସଙ୍କର ଚରିତ୍ରହୀନତା ଲୋକମୁଖରେ କଥିତ ହେବାର ଶୁଣାଯାଏ, କିନ୍ତୁ ତୁମର ଅନାବିଳ ଜୀବନ ସମ୍ପର୍କରେ ଏ ପର୍ଯ୍ୟନ୍ତ ସେପରି କୌଣସି ଅଭିଯୋଗ ଶୁଣାଯାଇ ନାହିଁ । ଉପମାରେ ଦ୍ୱିତୀୟ କାଳିଦାସ, ଭାବ ଗାମ୍ଭୀର୍ଯ୍ୟରେ ଦ୍ୱିତୀୟ ଭବଭୂତି ତୁମେ । ତୁମର କାବ୍ୟକଳା ଅମର, ବିଶ୍ୱ ସାହିତ୍ୟର ନମସ୍ୟ । ତେଣୁ ତୁମର ଗଜପତି ସମ୍ରାଟ, ସମଗ୍ର କଳିଙ୍ଗ ସାମ୍ରାଜ୍ୟ ପକ୍ଷରୁ ତୁମ୍ଭଙ୍କୁ ଆଜି ଏ ଦେଶର ଅପ୍ରତିଦ୍ୱନ୍ଦୀ କବିସମ୍ରାଟ ଉପାଧିରେ ଭୂଷିତ କରୁଛି । (ଇଙ୍ଗିତ କରିବାରୁ, ରାଜପରିଚାରକ ଗୋଟିଏ ସୁନାଥାଳିରେ ବହୁମୂଲ୍ୟ ଉତ୍ତରୀୟ ଓ ଫୁଲମାଳ ଆଣି ଉପସ୍ଥିତ ହେଲା, ଗଜପତିଙ୍କ ନିକଟରେ) ଆଉ ସେହି ଉପାଧିର ସର୍ବଶ୍ରେଷ୍ଠ ପ୍ରମାଣପତ୍ର-ସ୍ୱରୂପେ ନୀଳାଚଳନାଥଙ୍କର ଅଙ୍ଗବସ୍ତ୍ର ଏହି ବହୁମୂଲ୍ୟ ଉତ୍ତରୀୟ

ଅଜଠାରୁ ତୁମର ଶିରୋଭୂଷଣ ହେଉ । ତାଙ୍କର ଆଶୀଷ-ପୂତ ଏହି ପବିତ୍ର ଫୁଲମାଳ, ତୁମର ଯୋଗ୍ୟ ପୁରସ୍କାର । (ଉପେନ୍ଦ୍ର ନତଜାନୁ ହୋଇ ଉପହାର ଗ୍ରହଣ କଲେ ଓ ନିଜେ ଗଜପତି ଉପେନ୍ଦ୍ରଙ୍କର ମସ୍ତକରେ ଶିରୋପା ବାନ୍ଧି ଦେଇ, ତାଙ୍କ ଗଳାରେ ଫୁଲମାଳ ଦେଇ, ତାଙ୍କୁ ଆଲିଙ୍ଗନ କଲେ )

ପଣ୍ଡିତଗଣ ସହିତ ସମସ୍ତେ । (ଉଠି ଠିଆ ହୋଇ) ଜୟ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଜୟ !

[ ସହସା ମଳିନ ଜୀର୍ଣ୍ଣବେଶରେ ନୀଳକଣ୍ଠଙ୍କର ପ୍ରବେଶ । ]

ନୀଳ । ଦୁର୍ଭାଗ୍ୟ ମୋର ଯେ, ଏ ଆନନ୍ଦକୁ ପରିପୂର୍ଣ୍ଣରୂପେ ଉପଭୋଗ କରି, ଏ ବିପୁଳ ଜୟଧ୍ୱନିରେ ଯୋଗଦେବାକୁ, ହତଭାଗ୍ୟ ନୀଳକଣ୍ଠ ଆଜି ଏକାନ୍ତ ଅସମର୍ଥ ।

[ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଏକ ପାର୍ଶ୍ୱରେ ଠିଆ ହୋଇ ରହିଲେ]

ଉପେ । (ଆଶ୍ଚର୍ଯ୍ୟେ) କିଏ,ପିତା !! (ନମସ୍କାର କରି) ଆପଣ ଏଠାରେ ? ଏ ବେଶରେ କାହିଁକି ? ଏତେ ଶୀଘ୍ର ଘୁମୁସର ସିଂହାସନର ମାୟା ତ୍ୟାଗ କରି ଆସିଲେ କିପରି ?

ନୀଳ । କେନାପତି ! ରାଜତ୍ୱର ଗର୍ବ ଆଉ ମୋର ନାହିଁ । ମୁଁ ଆଜି ରାଜପଥର ଭିକ୍ଷୁକ, ସାମାନ୍ୟ ମନୁଷ୍ୟ ମାତ୍ର ।

ଉପେ । ଆଶ୍ଚର୍ଯ୍ୟ ! ଏତେଶୀଘ୍ର ଆପଣଙ୍କର ରାଜତ୍ୱର ମୋହନିଶା ତୁଟିଗଲା ?

ନୀଳ । ମୋତେ ଆଉ ଲଜ୍ଜା ଦିଅନା, ଉପେନ୍ଦ୍ର !

ଦିବ୍ୟ । କିଏ ତୁମେ ଭଦ୍ର ?

ନୀଳ । ପରିଚୟ ଦେବାକୁ ଲଜ୍ଜାରେ ମୋର ମସ୍ତକ ନତ ହୋଇ ଯାଉଛି ଗଜପତି ! ଆପଣଙ୍କର କବିସମ୍ରାଟ ଉପେନ୍ଦ୍ରର ହତଭାଗ୍ୟ ପିତା ମୁଁ —ନୀଳକଣ୍ଠ ଭଞ୍ଜ ! ମୋର ପ୍ରଣାମ ଗ୍ରହଣ କରନ୍ତୁ, ସମ୍ରାଟ ! ଘୁମୁସର ସିଂହାସନ ଲାଭ କରିବା ଲାଗି, ସମସ୍ତ ବିବେକର କଣ୍ଠରୋଧ କରି କେବଳ ନିର୍ମମ ହତ୍ୟାର ଲେଖରେ ନିଜର ରାଜଦଣ୍ଡକୁ ରକ୍ତାକ୍ତକରି ରଖିଥିଲି, ଭାବିଥିଲି କେବଳ ରକ୍ତଚକ୍ଷୁ ଦେଖାଇ ରାଜତ୍ୱଟାକୁ ପୂର୍ଣ୍ଣରୂପେ ଉପଭୋଗ କରି ପାରିବି ।

କିନ୍ତୁ, ନିୟତିର ଇଚ୍ଛା ବଳବତୀ ! ସୁତରାଂ, ସେହି ରାଜଦ୍ୱାରର ଅନ୍ତରାଳରେ ଗଢ଼ିଉଠିଲା ଏକ ବିରାଟ ପ୍ରତାରଣାଯୋଗ୍ୟ ଷଡ଼ଯନ୍ତ୍ର, ଆଉ ତାହାର ପରିଣାମରୂପେ, ନୀଳକଣ୍ଠ ଆଜି ରାଜ୍ୟଚ୍ୟୁତ, ଅପଦସ୍ତ । ଦରିଦ୍ର ଭିକାରୀଠାରୁ ଅଧମ ।

ଦିବ୍ୟ । ବାସ୍ତବିକ ତୁମେ ହତଭାଗ୍ୟ ! ତା ନ ହେଲେ, ଉପେନ୍ଦ୍ରଙ୍କ ପରି ଦୁର୍ଲ୍ଲଭ ପୁତ୍ରରତ୍ନର ଅଧିକାରୀ ହୋଇ, ତୁମେ ଖୁର୍ଦ୍ଧା ରାଜ୍ୟର ସେ ଠାଏ ନଗଣ୍ୟ ସିଂହାସନ ଲାଗି ଏତେ ଲାଳାୟିତ ହୋଇ ନ ଥାନ୍ତ । ହାୟ୍ ନୀଳକଣ୍ଠ ! ସିଂହାସନଟା କଣ ଏ ଦୁନିଆରେ ସର୍ବଶ୍ରେଷ୍ଠ ସମ୍ପତ୍ତି ? ଗଜପତି ସମ୍ରାଟଙ୍କ ନିକଟରେ ସିଂହାସନର ମୂଲ୍ୟ ବେଶୀ ହୋଇଥିଲେ, ସେ ଆଜି ଏହି ସିଦ୍ଧଗୁମ୍ଫାର ପ୍ରସ୍ତର ଚଉତରା ଉପରେ ବସି, ଦେଶର ଏହି ଅମୂଲ୍ୟ ରତ୍ନକୁ ଅଭିନନ୍ଦନ ଜଣାଉ ନ ଥାନ୍ତେ ।

ନୀଳ । ମୋତେ କ୍ଷମା କରନ୍ତୁ, ସମ୍ରାଟ । ଢେଙ୍କାମଣି, ମୁଁ ଆଜି ଯଥେଷ୍ଟ ଅନୁତପ୍ତ । ତେଣୁ ମୁଁ ତୁମ ନିକଟରେ ଆଶ୍ରୟପ୍ରାର୍ଥୀ । ତୁମର ପାଦତଳରେ ମୋର ଶେଷ ଜୀବନଟାକୁ କୌଣସିରୂପେ ଚଳାଇ ନେବାକୁ ମୋର ଏକାନ୍ତ ବାସନା । ମୋର ସେ ଆଶା ପୂର୍ଣ୍ଣକର, ବତ୍ସ !

ଉପେ । ରାଜଐଶ୍ୱର୍ଯ୍ୟର ସ୍ୱପ୍ନରେ ଆପଣ ଏତେଦିନ ପର୍ଯ୍ୟନ୍ତ ବିଭୋର ଥିଲେ, ପିତା ! ସୁତରାଂ, ସିଦ୍ଧଗୁମ୍ଫାର କଠୋର ଜୀବନ ଆପଣଙ୍କର ସହ୍ୟ ହେବ ନାହିଁ । ନୟାଗଡ଼ ମାଳସାଗ୍ରାମ ମଧ୍ୟରେ ମୋର ଯେଉଁ କୁଟୀର ମୁଁ ନିର୍ମାଣ କରିଛି, ସେହିଠାକୁ ଆପଣ ଯାଆନ୍ତୁ । ସେହିଠାରେ ଆପଣ ନିଶ୍ଚିନ୍ତରେ ବିଶ୍ରାମ ଲାଭ କରି ପାରିବେ । (ମାଧବକୁ ଲକ୍ଷ୍ୟ କରି) ଯାଅ, ମାଧବ ! ମୋର ଚିର ବିଶ୍ୱସ୍ତ ଅନୁଚର ତୁ । ଆଜିଠାରୁ ପିତାଙ୍କ ସେବାର ଭାର ମୁଁ ତୋହରି ଉପରେ ଅର୍ପଣ କଲି । ଆଉ, ମୋର ବିଶ୍ୱାସ, ନୟାଗଡ଼ ରାଜା ବନ୍ଧୁ ମାନ୍ଧାତା, ମୋତେ ଏ ବିଷୟରେ ଯଥେଷ୍ଟ ସାହାଯ୍ୟ କରିବାକୁ କୁଣ୍ଠିତ ହେବେ ନାହିଁ ।

ପୁରୁ । ବିଦ୍ରସମ୍ରାଟଙ୍କର ପିତା ଆଜିଠାରୁ ନୟାଗଡ଼ ରାଜ୍ୟର ପୂଜ୍ୟ ଅତିଥି ହେଲେ, ଏ ପ୍ରତିଶ୍ରୁତି ମୁଁ ତୁମ୍ଭଙ୍କୁ ଦେଉଛି, ଢେଙ୍କାମଣି !

ଉପେ । ତା ହେଲେ, ମୁଁ ବର୍ତ୍ତମାନ ସମ୍ପୂର୍ଣ୍ଣ ନିଶ୍ଚିନ୍ତ ।

[ସହସା ଘନଭଞ୍ଜ, ମହାମନ୍ତ୍ରୀ ବୃଷଭାନୁ ଓ ଘୁମୁସର ରାଜ୍ୟର କେତେକ ପ୍ରଜା ପ୍ରବେଶ କଲେ । ବୃଷଭାନୁ ଶିଶୁରାଜା ରଣଭଞ୍ଜଙ୍କୁ ନିଜ କୋଳରେ ଧାରଣ କରିଥିଲେ । ]

ଘନ । କିନ୍ତୁ, ତାହା ତ ହୋଇ ପାରିବ ନାହିଁ, କବିଶେଖର ! (ସମ୍ରାଟଙ୍କୁ) ମୋର ଅଭିବାଦନ ଗ୍ରହଣ କରନ୍ତୁ, ସମ୍ରାଟ ! (ଉପେନ୍ଦ୍ରଙ୍କ ପ୍ରତି) ଘୁମୁସରର ନବୀନ ରାଜା ରଣଭଞ୍ଜ, ତାଙ୍କର ପ୍ରତିନିଧି ଘନଭଞ୍ଜ, ଆଉ ଏହି ଘୁମୁସରର ଜନତା ଏମାନେ ତ ନିଶ୍ଚିନ୍ତ ରହିପାରୁ ନାହାନ୍ତି ? ତୁମ୍ଭଙ୍କୁ ଘୁମୁସର ରାଜ୍ୟକୁ ଫେରାଇ ନେବା ଲାଗି, ଏମାନେ ଯେ ବ୍ୟାକୁଳ ନିମନ୍ତ୍ରଣ ଘେନି ଆସିଛନ୍ତି, ଜେମାମଣି ?

ଉପେ । (ଆନନ୍ଦରେ) ପିତୃବ୍ୟ, ମୋର ନମସ୍କାର ଗ୍ରହଣ କରନ୍ତୁ । କିନ୍ତୁ କିଏ ଏହି ନବୀନ ରାଜା ରଣଭଞ୍ଜ ? କାହାନ୍ତି ସେ ?

ବୃଷ । ଏହି ଦେଖନ୍ତୁ, ଜେମାମଣି ! ଘୁମୁସରର ନବୀନ ରାଜା—ଏହି ଶିଶୁ ରଣଭଞ୍ଜ । ହତଭାଗ୍ୟ ପାଟଦେଇଙ୍କର ଏକମାତ୍ର ଜୀବନ ସର୍ବସ୍ୱ ।

ଉପେ । (ଆଗ୍ରହରେ ଦଉଡ଼ି ଯାଇ) ପାଟଦେଇଙ୍କର ପୁତ୍ର !! (ମସ୍ତକ ଚୁମ୍ବନ କରି) ଦୀର୍ଘଜୀବୀ ହୁଅ, ବତ୍ସ ! (ପୁଣି ଧୀରେ ପୂର୍ବସ୍ଥାନକୁ ଫେରି-ଆସି, ଅଶ୍ରୁ ପୋଛି) ମାତୃଭୂମିର ନବୀନ ମହାରାଜ ! ଆପଣଙ୍କ ଦୀନ ପ୍ରଜାର ଅଭିବାଦନ ଗ୍ରହଣ କରନ୍ତୁ ! (ଶିଶୁକୁ ଲକ୍ଷ୍ୟ କରି ମସ୍ତକ ନତ କଲେ । )

ଘନ । ଜେମାମଣି ! ତୁମର ଜନ୍ମଭୂମିର ଆହ୍ୱାନ—ତୁମର ନବୀନ ମହାରାଜାଙ୍କର ଆହ୍ୱାନ—ତୁମେ ଘୁମୁସରକୁ ଫେରିଚାଲ ।

ଉପେ । କିନ୍ତୁ ମୁଁ ତ ଆଉ ଫେରି ଯାଇ ପାରିବି ନାହିଁ, ପିତୃବ୍ୟ ! ସିଂହଭୂମିର ଏହି ଜନତା ମଧ୍ୟରେ, ମୋର ଜୀବନର ଅବଶିଷ୍ଟ ସମୟ କଟାଇବି, ଏହାହିଁ ମୋର ଗୁରୁଦେବ ଶ୍ରୀ ରଘୁନାଥଙ୍କର ନିର୍ଦ୍ଦେଶ । ସୁତରାଂ, ଅକାରଣରେ ମୋ ଲାଗି ଅଧୀର ହୁଅନ୍ତୁ ନାହିଁ ।

ଘୁମୁସର ପ୍ରଜା । (ସମସ୍ୱରରେ) ଆମେ ଅନୁନୟ କରୁଛୁ, ଆମର କୁଳଡ଼ ଦୁର୍ଗକୁ ଫେରି ଚାଲନ୍ତୁ, ଜେମାମଣି !

ଉପେ । ଭକ୍ତମାନେ ! କେବଳ କୁଳଡ଼ା ଦୁର୍ଗଟି କି ତୁମର ? ପିଛଗୁମ୍ଫାର ଏ ବିଜନ ବନଭୂମି କି ତୁମର ନୁହେଁ ? ଗଙ୍ଗାକୂଳଠାରୁ ଗୋଦାବରୀ ପର୍ଯ୍ୟନ୍ତ ସମସ୍ତ ରାଜ୍ୟ ପରି ତୁମର । ତେବେ ଆଜି କାହିଁକି ? ମୁଁ ଯେଉଁଠାରେ ଥିଲେ ସୁଦ୍ଧା, ମୁଁ ଯେ ତୁମ୍ଭମାନଙ୍କର, ତୁମ୍ଭେମାନେ ଯେ ମୋର । ଦୁଃଖ କରନା, ଭକ୍ତମାନେ, ଫେରିଯାଅ । ଏହି ସ୍ଥାନରେ ରହି ମୋର ଜୀବନକୁ ମୁଁ ଶାନ୍ତିମୟ କରି ପାରିବି ।

ପୁରୁ । କିନ୍ତୁ କବି ସମ୍ରାଟ, ତୁମର ଦେଶ ଯେ ତୁମଠାରୁ ବହୁତ କିଛି ଦାବୀ କରିବାକୁ ଚାହେଁ ?

ଉପେ । ମୋର ଜୀବନର ଯାହା କିଛି ମୂଲ୍ୟବାନ ସଞ୍ଚୟ ମୁଁ ଏ ପର୍ଯ୍ୟନ୍ତ କରି ପାରିଛି, ତାହା ଯେ କେବଳ ମୋର ଦେଶର ଦାବୀ ପୂରଣ କରିବାକୁ, ଏ କଥା କି ଆପଣଙ୍କୁ ଅଜ୍ଞାତ, ମାନ୍ଧାତା ? ଲକ୍ଷ୍ମୀ କୃପଣ ପରି, ମୋର ସମସ୍ତ ସଞ୍ଚୟକୁ ମୁଁ ତ ଜଗତର ଦୃଷ୍ଟି ଅନ୍ତରାଳରେ ରଖିପାରି ନାହିଁ । ଯାହା କିଛି ମୋର ସମ୍ପତ୍ତି, ତାହା ଅକାତର ଭାବରେ ମୋର ଦେଶ, ମୋର ଜାତି ହାତରେ ମୁଁ ଯେ ଦାନ କରି ଦେଇ ସାରିଛି । ଚଉତିଶା, ଚଉପଦୀ, ବୋଲି, ଦୋହା, ପୋଇ, ଛାନ୍ଦ, ବଙ୍କ, ତଗ-ସଙ୍ଗୀତ, ପୌରାଣିକ କାବ୍ୟ, କାଳ୍ପନିକ କାବ୍ୟ, ଆଲଙ୍କାରିକ କାବ୍ୟ ସ୍ତୁତି ପ୍ରଭୃତି ବହୁବିଧ ରଚନା ମୋର ଜାତି ହାତରେ ତ ମୁଁ ସମର୍ପଣ କରି ଦେଇ ସାରିଛି । ମୋର ନିଜସ୍ୱ ସମ୍ପତ୍ତି ବୋଲି ମୋର ତ ଆଉ କିଛି ନାହିଁ । କେବଳ ଅବଶିଷ୍ଟ ରହିଛି ଏହି ପୋଥି ଖଣ୍ଡିକ । (ଆସନ ନିକଟରୁ ଉଠାଇ ଆଣିଲେ ଖଣ୍ଡେ ପୋଥି) ଏହି ଏତିକି ମାତ୍ର ସମ୍ବଳ, ଆଜି ମୋ ଦେଶର ମଉଡ଼ମଣି ବୀର ଶ୍ରୀ ଗଜପତି ସମ୍ରାଟଙ୍କର ପୂଜା ଅର୍ଘ୍ୟ ଲାଗି ଉଦ୍ଦିଷ୍ଟ । ଗ୍ରହଣ କରନ୍ତୁ, ସମ୍ରାଟ, ଦରିଦ୍ର କବି ଉପେନ୍ଦ୍ରର ଏହି ସାମାନ୍ୟ ଅଭିନନ୍ଦନ । ( ପୋଥିଟି ସମ୍ରାଟଙ୍କୁ ଦେଲେ । )

ଦିବ୍ୟ । ଏ ପୁଣି କି ପୋଥି, କବିବର ?

ଉପେ । ଏହା ମୋର ସର୍ବଶ୍ରେଷ୍ଠ ଆଲଙ୍କାରିକ କାବ୍ୟ—ଚିତ୍ରକାବ୍ୟ ବନ୍ଧୋଦୟ । ନାନା ବନ୍ଧର ଚିତ୍ର ମଧ୍ୟରେ, ନାନା ଛନ୍ଦ ଓ ନାନା ରୀତିକୁ ଅବଲମ୍ବନ କରି କବିତାର ସୁଚ୍ଛନ୍ଦ ସମାବେଶ ଏଥିରେ କରି

ପାରିବ । ମୋର ସମଗ୍ର ସାହିତ୍ୟ ସର୍ଷ୍ଟିରେ ଏହା ଏକ ଅଭିନବ ଆବିଷ୍କାର, ସମ୍ରାଟ ! ତେଣୁ ତାହା ଆପଣଙ୍କୁ ସମର୍ପଣ କରି ମୋର କୃତଜ୍ଞତା ଜ୍ଞାପନ କରୁଛି ମାତ୍ର ।

ଦିବ୍ୟ । (ପୋଥି ଖୋଲି ଦେଖି) ଆଶ୍ଚର୍ଯ୍ୟ, ଏ ଯେ ଅପୂର୍ବ ଶବ୍ଦ ସମନ୍ୱିତ ରଚନା !! କବିସମ୍ରାଟ, ତୁମର ଦେଶର ସାହିତ୍ୟକୁ ଏହା କି ତୁମର ଶେଷ ଦାନ ?

ଉପେ । ଏ ପ୍ରଶ୍ନର କୌଣସି ନିର୍ଭରଯୋଗ୍ୟ ଉତ୍ତର ମୁଁ ତ ଦେଇ ପାରିବ ନାହିଁ, ସମ୍ରାଟ ! ତେବେ, ଉପେନ୍ଦ୍ରର ଲେଖନୀ ଯେତେବେଳେ ଯାହା ସୃଷ୍ଟି କରିବ, ସେ ସମସ୍ତ ମୋର ଦେଶର । କାରଣ ଦେଶର ସାହିତ୍ୟକୁ ଅବହେଳା କରି ପାରିଲେ ପରେ, ଉପେନ୍ଦ୍ରର ସ୍ୱତନ୍ତ୍ର ଅସ୍ତିତ୍ୱ ଆଉ କିଛି ନଥିବ । (ଟିକିଏ ରହି) ମୋର ଔଦ୍ଧତ୍ୟ ମାର୍ଜନା କରି, ଆପଣମାନେ ମୋତେ ବିଦାୟ ଦିଅନ୍ତୁ । ମୋର ମଧ୍ୟାହ୍ନ ଆହ୍ନିକର ସମୟ ପ୍ରାୟ ସମାଗତ । ନମସ୍କାର ! (ସମସ୍ତଙ୍କୁ ନମସ୍କାର କରି ଯାଉଁ ଯାଉଁ ପୁଣି ଫେରି) ହଁ, ମିବାପୂର୍ବରୁ, ମୋର ଦେଶବାସୀଙ୍କ ଠାରେ ମୋର ବିନୀତ ନିବେଦନ ଯେ, ସେମାନେ କେବେ ଉପେନ୍ଦ୍ରର ସନ୍ଧାନରେ ଏଠାକୁ ଆସି ସିଦ୍ଧଗୁମ୍ଫାର ନିର୍ଜନତାକୁ ଆଜି ଯେପରି ଅଯଥା କଳି କୋଳାହଳରେ ମୁଖରିତ ନ କରନ୍ତି । ପ୍ରୟୋଜନବେଳେ, ମୋର ସମସ୍ତ ସନ୍ଧାନ ମିଳିବ, ଓଡ଼ଗାଁର ଶ୍ରୀ ରଘୁନାଥଙ୍କ ମନ୍ଦିରରେ, ନମସ୍କାର ।

[ଏତିକି କହି ଉପେନ୍ଦ୍ର ଧୀରେ ଧୀରେ ସିଦ୍ଧଗୁମ୍ଫାର ଚିହ୍ନିତ ମଧ୍ୟକୁ ପ୍ରବେଶ କଲେ । ଅନ୍ୟ ସମସ୍ତେ ବ୍ୟାକୁଳ ଭାବରେ ସେହି ଦିଗକୁ ଚାହିଁ ରହିଥାନ୍ତି । କ୍ରମେ କ୍ରମେ ଉପେନ୍ଦ୍ର, ସେହି ଗୁମ୍ଫା ମଧ୍ୟରେ ଅଦୃଶ୍ୟ ହୋଇଗଲେ । ଦେଶ ଜାଣିବାକୁ ଚେଷ୍ଟା କରୁ, ଯୋଗୀ ଉପେନ୍ଦ୍ର, ବର୍ତ୍ତମାନ ସୁଦ୍ଧା ଜୀବିତ କି ମୃତ । ]

—ଯବନିକା ପତନ—

—ଶେଷ—

ମୁଦ୍ରାକର—ଶ୍ରୀ ତ୍ରିଲୋଚନ ଦାଶ, ଜନବନ୍ଧୁ ପ୍ରେସ, କଟକ—୧୯୫୫